ଓଁ

# ସାରସ୍ୱତ ଗୌରବ



ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି

# ସାରସ୍ୱତ ଗୌରବ

( ପ୍ରଥମ ଭାଗ )

ପ୍ରଫେସର ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି

( ଭରଦ୍ୱାଜ )



ଓଡ଼ିଶା ବୁକ୍ ଷ୍ଟୋର

ସାରସ୍ୱତ ଗୌରବ ( ପ୍ରଥମ ଭାଗ )

ଲେଖକ :

ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି

ନାଗେଶ୍ୱର ଟାଙ୍ଗୀ, ଭୁବନେଶ୍ୱର-୨

ପ୍ରକାଶକ :

ଗୋବିନ୍ଦଚରଣ ପାତ୍ର

ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ—୭୫୩୦୦୨

ପ୍ରଥମ ସଂସ୍କରଣ—୧୯୮୨

ମୁଦ୍ରଣ :

ନନ୍ଦକିଶୋର ପ୍ରେସ, କଟକ-୨

ମୂଲ୍ୟ—ପନ୍ଦର ଟଙ୍କା ମାତ୍ର

**SARASWATA GAURABA**

by :

*Dr. Janaki Ballava Mahanty*

Published by :

Govind Charan Patra

*Orissa Book Store*

Binodbehari, Cuttack-753002

Frist Edition—1982

Printed at :

*Nandakishore Press*

Cuttack-753002

**Price Rs. 15-00**

# ସୂଚୀ





# ହୋମର

ୟୁରୋପର ସମସ୍ତ ପ୍ରାଚୀନ ସାହିତ୍ୟ ଗ୍ରୀକ୍ ଭାଷା ଓ ସାହିତ୍ୟରୁ ଜନ୍ମଲାଭ କରିଅଛି । ପୃଥିବୀର ପ୍ରାଚୀନତମ ସାହିତ୍ୟ ମଧ୍ୟରୁ ଏହା ଅନ୍ୟତମ । ହୋମରଙ୍କୁ ଗ୍ରୀକ୍ କାବ୍ୟର ଜନ୍ମଦାତା କୁହାଯାଏ ।

ସେ ନିର୍ଦ୍ଦିଷ୍ଟଭାବେ କେଉଁ ଦେଶରେ ଓ କେଉଁ ସମୟରେ ଜନ୍ମଗ୍ରହଣ କରିଥିଲେ ତାହା ନିର୍ଦ୍ଧାରିତ ହୋଇପାରିନାହିଁ । ସେ ଇଲିଆଡ଼ ( Iliad ) ଓ ଓଡ଼ିସି ( Odyssey ) ନାମକ ଦୁଇଟି ମହାକାବ୍ୟର ରଚୟିତା ବୋଲି ପରଂପରାକ୍ରମେ ଗୃହୀତ ହୋଇ ଆସୁଅଛନ୍ତି । ଆନୁମାନିକ ଭାବେ ତାହାଙ୍କ ଆବିର୍ଭାବ କାଳ ଖ୍ରୀ. ପୂ. ୮୫୦ ବୋଲି ଧରାଯାଇଛି । ଟ୍ରୋଜାନ ଯୁଦ୍ଧ କିମ୍ବଦନ୍ତୀକୁ ଭିତ୍ତିକରି ଏହି ମହାକାବ୍ୟଟି ରଚିତ । ଏହାକୁ ୟୁରୋପୀୟ ସାହିତ୍ୟର ପ୍ରାଚୀନତମ ଗ୍ରନ୍ଥ ଭାବେ ଗ୍ରହଣ କରାଯାଏ ।

ଇଲିଆଡ଼ ଓ ଓଡ଼ିସିରୁ କବି ହୋମରଙ୍କ ବିଷୟରେ ପ୍ରତ୍ୟକ୍ଷ ଭାବରେ କିଛି ଜଣାଯାଏ ନାହିଁ । କବି ବ୍ୟକ୍ତି ନିରପେକ୍ଷ ଭାବେ ଏହାର ବିଷୟ ବସ୍ତୁ ଉପସ୍ଥାପିତ କରି ଅଛନ୍ତି । ହୋମରଙ୍କ ପରବର୍ତ୍ତୀ ଶତାବ୍ଦୀର ବହୁ କବିଙ୍କ ରଚନାରୁ ଏହି ଦୁଇଟି କୃତି ହୋମରଙ୍କର ବୋଲି ଜଣାଯାଏ । ଆୟୋନିଆ ରାଜ୍ୟର ଏକ ନଗରରେ ବାସ କରୁଥିବା ହୋମର ନାମକ ଜଣେ କବିଙ୍କଦ୍ୱାରା ଏହି ଦୁଇଟି ମହାକାବ୍ୟ ରଚିତ ହେବା ବିଷୟ ତାହାଙ୍କ ପରବର୍ତ୍ତୀ ପ୍ରାୟ ସମସ୍ତ ଲେଖକ ସ୍ୱୀକାର

କରିଅଛନ୍ତି । କେଉଁ ରାଜ୍ୟଟି ପୂର୍ବେ ଆୟୋନିଆ ନାମରେ ପରିଚିତ ସେ ବିଷୟରେ ଆଲୋଚକଙ୍କ ମଧ୍ୟରେ ବହୁ ବିତର୍କ ଓ ମତଭେଦ । ପ୍ରାଚୀନ କବିଙ୍କ ରଚନାରୁ ତାହାଙ୍କ ସମୟ କାଳ ସମ୍ପର୍କରେ ମଧ୍ୟ ସଠିକ ଭାବେ କିଛି ଜଣାଯାଏ ନାହିଁ । କେତେକଙ୍କ ବର୍ଣ୍ଣନାନୁଯାୟୀ ଏହା ଖ୍ରୀ. ପୂ. ୧୨ଶ ଓ କେତେକଙ୍କ ମତରେ ଏହା ଖ୍ରୀଷ୍ଟପୂର୍ବ ୭ମ ଶତାବ୍ଦୀ । ଗ୍ରୀକ୍‌ର ପ୍ରଥମ ଐତିହାସିକ ହେରୋଡୋଟସ ହୋମରଙ୍କ ଜୀବିତକାଳ ଖ୍ରୀ: ପୂ: ୯ମ ଶତାବ୍ଦୀ ବୋଲି ସ୍ଥିର କରିଛନ୍ତି । ସମ୍ଭବତଃ ଏହାହିଁ ଯଥାର୍ଥ । କେତେକଙ୍କ ମତରେ ହୋମର ଥିଲେ ଜନ୍ମାନ୍ଧ । ଭ୍ରମଣ କବି ଭାବେ ସେ ସ୍ଥାନରୁ ସ୍ଥାନାନ୍ତରକୁ ଯାଇ ଏହି ମହାକାବ୍ୟକୁ ଆବୃତ୍ତି କରି ଲୋକଙ୍କୁ ଶୁଣାଉଥିଲେ । ତାହାଙ୍କ ଏହି କାବ୍ୟ କାହାଣୀ ପୁରୁଷାନୁକ୍ରମେ ଗୀତ ହେଉଥିଲା ଓ ପରେ ଗ୍ରନ୍ଥାକାରରେ ପ୍ରକାଶିତ ହେଲା ।

ଗ୍ରୀସ୍ ଦେଶବାସୀଙ୍କ ନିକଟରେ ହୋମରଙ୍କ ବିଷୟ ଅଜ୍ଞାତ ଥିବା ଯୋଗୁଁ ଆଧୁନିକ ଯୁଗର କେତେକ ସମାଲୋଚକ ହୋମରଙ୍କ ଅସ୍ତିତ୍ୱ ବିଷୟରେ ସନ୍ଦେହ ପ୍ରକାଶ କରିଥାନ୍ତି । ସେମାନଙ୍କ ମତରେ ଏହି ମହାକାବ୍ୟ କୌଣସି ଜଣେ ବ୍ୟକ୍ତି ବିଶେଷର ରଚନା ନୁହେଁ । ବହୁ ଶତାବ୍ଦୀର ଅଜ୍ଞାତନାମା କବିଙ୍କଦ୍ୱାରା ଏହା ରଚିତ ହୋଇଛି ଓ ପରବର୍ତ୍ତୀ କାଳରେ ସଂଗୃହୀତ ସଂକଳିତ ହୋଇ ହୋମରଙ୍କ ରଚନା ବୋଲି ଚଳେଇ ଦିଆହୋଇଛି; ମାତ୍ର ଅନେକେ ଏହା ବିରୁଦ୍ଧରେ ଯୁକ୍ତି ପ୍ରଦର୍ଶନ କରିଥାନ୍ତି । ଭାଷାତାତ୍ତ୍ୱିକ ଏବଂ ସାହିତ୍ୟିକ ଦୃଷ୍ଟିକୋଣରୁ ଉଭୟ ପକ୍ଷରୁ ଏହି ତର୍କର କୌଣସି ମୀମାଂସା ହୋଇନାହିଁ; ହେବା ମଧ୍ୟ ସମ୍ଭବ ନୁହେଁ । ହୋମରଙ୍କ ପୂର୍ବବର୍ତ୍ତୀ ଅନ୍ୟ କୌଣସି ଗ୍ରୀକ୍ ରଚନାର ସନ୍ଧାନ ମିଳିନାହିଁ । ଖ୍ରୀ: ପୂ: ୧୨ଶ ଶତାବ୍ଦୀରେ ଟ୍ରୟ ଯୁଦ୍ଧ ସଂଘଟିତ ହୋଇଥିବାର ପ୍ରତ୍ନତାତ୍ତ୍ୱିକ ପ୍ରମାଣ ମିଳିଅଛି । ଏହାର ତିନିଶହବର୍ଷ ପରେ ମୌଖିକ ଉପାଦାନ ବା କିମ୍ବଦନ୍ତୀକୁ ଭିତ୍ତିକରି ହୋମର ଏହା ରଚନା କରିଥିବା ସୁନିଶ୍ଚିତ । ଏଥିରେ ବହୁ ପୌରାଣିକ ପ୍ରସଙ୍ଗ ଓ ଲୋକକଥା ମଧ୍ୟ ସଂଯୋଜିତ ହୋଇ ଯାଇଥିବା ସମ୍ଭବପର ।

ଏଠାରେ ସେହି ଦୁଇ ମହାକାବ୍ୟର ସଂକ୍ଷିପ୍ତ ବିବରଣୀ ପ୍ରଦତ୍ତ-ହେଲା ।

## ଇଲିଆଡ଼ ଓ ଓଡ଼ିସିର କେତେକ ମୁଖ୍ୟଚରିତ୍ର ।

ଜେଅସ ( zeus ) —ଦେବରାଜ ( ଇନ୍ଦ୍ର )

ଏରିସ—ଅଶାନ୍ତି ଦେବୀ ।

ପାରିସ—ଟ୍ରୟ ( ଏସିଆ ମାଇନର ଅନ୍ତର୍ଗତ ଏକରାଜ୍ୟ )ର ରାଜା ପ୍ରିଅମ୍‌ଙ୍କ ପୁତ୍ର ।

ହେକ୍ଟର—ଟ୍ରୟର ମହାବୀର ଓ ସେନାନାୟକ ।

ଆଣ୍ଡ୍ରୋମାଚ୍—ହେକ୍ଟରଙ୍କ ପତ୍ନୀ

ଅସ୍ତ୍ୟନାକ୍ସ—ହେକ୍ଟରଙ୍କ ପୁତ୍ର ।

ମିନେଲସ—ଗ୍ରୀସ୍ ଅନ୍ତର୍ଗତ ସ୍ପାର୍ଟାର ରାଜା ଓ ହେଲେନଙ୍କ ସ୍ୱାମୀ ।

ଆଗାମେମ୍‌ନନ୍—ମେନେଲସଙ୍କ ଭାଇ, ଟ୍ରୟଯୁଦ୍ଧର ଅନ୍ୟତମ ସେନାନାୟକ ।

ଇଫିଜେନିଆ—ଆଗାମେମ୍‌ନନ୍‌ଙ୍କ କନ୍ୟା ।

ଆଚିଲେସ—ଗ୍ରୀସର ମହାବୀର ।

ପଟ୍ରୋକ୍ଲସ—ଆଚିଲସଙ୍କ ବନ୍ଧୁ ଓ ଯୋଦ୍ଧା ।

ଓଡ଼ିସିଅସ—ଇଥାକାର ରାଜା, ଗ୍ରୀକ୍ ସେନାର ଅନ୍ୟତମ ନାୟକ ।

କାଲିପ୍‌ସୋ (Calypso)—ଜଳ କନ୍ୟା ।

ଆଫ୍ରୋଡାଇଟ୍—ରତିଦେବୀ ।

ସମୁଦ୍ରଦେବୀ ଥେଟିସଙ୍କୁ (Thetis) ଦେବରାଜ ଜେଅସ ଭଲ ପାଉଥିଲେ । ସେ ତାଙ୍କୁ ବିବାହ କରିଥାନ୍ତେ; ମାତ୍ର ଜାଣିବାକୁ ପାଇଲେ ଥେଟିସଙ୍କ ଗର୍ଭଜାତ ପୁତ୍ର ତାର ପିତାଙ୍କଠାରୁ ବଡ଼ ହେବ—ଏହାହିଁ ତାର ଭାଗ୍ୟଲିପି । ଏଣୁ ସେ ଥେଟିସ୍‌ଙ୍କୁ ନିର୍ଦ୍ଦେଶ ଦେଲେ ସେ ଜଣେ ମାନବକୁ ବିବାହ କରନ୍ତୁ । ସେହି ଅନୁସାରେ ଥେଟିସ ପିଲିଅସ ନାମକ

ଜଣେ ରାଜାଙ୍କୁ ବିବାହ କରିବାକୁ ମନସ୍ଥ କଲେ । ଏହି ବିବାହ ଉତ୍ସବକୁ ସବୁ ଦେବଦେବୀଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଏକମାତ୍ର ଅଶାନ୍ତି ଦେବୀ ଏରିସ୍‌ଙ୍କୁ ଏହି ବିବାହକୁ ନିମନ୍ତ୍ରଣ କରାଯାଇନଥିଲା । ଏରିସ ଭୟଙ୍କର ରାଗିଗଲେ ଓ ଏଇ ଅପମାନର ପ୍ରତିଶୋଧ ନେବାକୁ ସ୍ଥିର କଲେ । ଅପ୍ରତ୍ୟାଶିତ ଭାବେ ସେ ଭୋଜି ସ୍ଥାନକୁ ଆସି ସମବେତ ନିମନ୍ତ୍ରିତ ଦେବଦେବୀଙ୍କ ମଝିକୁ ଗୋଟିଏ ସୁନାର ଆତ ପକାଇ ଦେଲେ । ସେଇ ଆତ ଉପରେ ଲେଖାଥିଲା "ଯିଏ ସବୁଠାରୁ ସୁନ୍ଦର, ଯିଏ ଏହାକୁ ପାଇବ" । ଆତଟି କିଏ ନେବ ଏଥିପାଇଁ ସଙ୍ଗେ ସଙ୍ଗେ ବିତର୍କ ଆରମ୍ଭ ହୋଇଗଲା । ଦେବରାଜଙ୍କ ସ୍ତ୍ରୀ ହେରା ଓ ତାଙ୍କ ଦୁଇଝିଅ ଏଥିନା ଓ ଆଫ୍ରୋଡାଇଟଙ୍କ ମଧ୍ୟରେ ଏଇ ଆତଟି ପାଇଁ ବିବାଦ ଆରମ୍ଭ ହୋଇଗଲା; ମାତ୍ର ସେମାନଙ୍କ ମଧ୍ୟରେ କିଏ ଅଧିକ ସୁନ୍ଦରୀ ଓ ଆତଟି ପାଇବାକୁ ଯୋଗ୍ୟ ଏହାର ମୀମାଂସା ହୋଇପାରିଲା ନାହିଁ । ସେମାନେ ଦେବରାଜଙ୍କୁ ଏହାର ନିଷ୍ପତ୍ତି ଦାୟିତ୍ୱ ଦେଲେ ।

ଦେବରାଜ କହିଲେ—"ତୁମେମାନେ ଟ୍ରୟର ରାଜା ପ୍ରିଅମଙ୍କ ପୁତ୍ର ପାରିସ୍‌ଙ୍କ ନିକଟକୁ ଯାଅ । ସେ ଏହାର ମୀମାଂସା କରିଦେବେ ।" ତିନିହେଁଯାକ ପାରିସଙ୍କ ପାଖେ ପହଞ୍ଚିଲେ । ମାତ୍ର କେହି ସେମାନଙ୍କ ରୂପର ବିଚାର କରି ବିବାଦଟି ନିଷ୍ପତ୍ତି ହେଉ ବୋଲି ଚାହିଁଲେ ନାହିଁ । ପ୍ରତ୍ୟେକେ ଚାହିଁଲେ ବିଚାରକଙ୍କୁ ଲାଞ୍ଚ ଦେଇ ନିଜ ପକ୍ଷରେ ନିଷ୍ପତ୍ତି କରାଇବାକୁ । ହେରା କହିଲେ "ତୁମେ ମୋ ପକ୍ଷରେ ମତ ଦେଲେ ମୁଁ ତୁମକୁ ରାଜକୀୟ ସମ୍ମାନ ଦିଆଇ ଦେବି ।" ଏଥିନା କହିଲେ, "ମୁଁ ତୁମକୁ ସୈନ୍ୟସାମନ୍ତ ଦେଇ ଶକ୍ତିଶାଳୀ କରାଇଦେବି ।" ଆଫ୍ରୋଡାଇଟ କହିଲେ—"ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦରୀଙ୍କୁ ମୁଁ ତୁମ ସଙ୍ଗେ ବିବାହ କରାଇଦେବି ।" ପାରିସ୍ ଆଫ୍ରୋଡାଇଟର ଏଇ ପ୍ରଲୋଭନରେ ଭୁଲିଯାଇ ଆତଟିକୁ ତାଙ୍କୁ ହିଁ ଦେଇଦେଲେ ।

ଗ୍ରୀସ୍‌ର ଏକ ରାଜ୍ୟ ହେଉଛି ସ୍ପାର୍ଟା । ଏହାର ରାଜା ମିନେଲସଙ୍କ ସ୍ତ୍ରୀ ହେଲେନ ଥିଲେ ଜଗତର ସର୍ବଶ୍ରେଷ୍ଠା ସୁନ୍ଦରୀ । ହେଲେନଙ୍କୁ ପାଇବା ଲାଗି ଆଫ୍ରୋଡାଇଟଙ୍କ ସହାୟତାରେ ପାରିସ ଏଜଆନ୍ ସମୁଦ୍ର ପାର

ହୋଇ ସ୍ପାର୍ଟାରେ ପହଞ୍ଚିଲେ । ସେଇଠି ସେ ହେଲେନଙ୍କ ନିକଟରେ ଆପଣାର ପ୍ରଣୟ ନିବେଦନ କଲେ ଓ ତାଙ୍କୁ ପ୍ରବର୍ତ୍ତାଇ ନିଜ ରାଜ୍ୟ ଟ୍ରୟକୁ ନେଇ ଆସିଲେ । ହେଲେନ ଗୃହଠିବାରୁ ମିନେଲସ ଗ୍ରୀସର ରାଜାମାନଙ୍କୁ ଆହ୍ୱାନ କରି ଟ୍ରୟ ସହ ଯୁଦ୍ଧ କରିବାକୁ ଆୟୋଜନରେ ଲାଗିଲେ । କାରଣ ବହୁବର୍ଷ ପୂର୍ବରୁ ଗ୍ରୀସ୍‌ର ରାଜାମାନେ ହେଲେନଙ୍କୁ ବିବାହ କରିବାକୁ ଆସି ଶପଥ କରିଥିଲେ ଯେ ଯଦି କେହି ହେଲେନ ବା ତାର ନିର୍ବାଚିତ ସ୍ୱାମୀଙ୍କର ଅନିଷ୍ଟ କରେ, ତେବେ ସେମାନେ ତାହାର ପ୍ରତିଶୋଧ ନେବେ ।

ମିନେଲସଙ୍କ ଭାଇ ଆଗାମେମ୍‌ନନ୍ ଥିଲେ ମେସିନର ରାଜା । ଏଇ ଯୁଦ୍ଧର ସେନାପତି ଭାବେ ତାଙ୍କୁ ବରଣ କରାଗଲା । ସେ ବିପୁଳ ଯୁଦ୍ଧ ଆୟୋଜନରେ ଲାଗିଲେ । ଏଥିପାଇଁ ସୈନ୍ୟ ଓ ଅନ୍ୟାନ୍ୟ ଉପକରଣ ଯୋଗାଡ଼ କରିବାରେ କେତେବର୍ଷ ବିତିଗଲା । ଶେଷରେ ଏକ ହଜାର ଜାହାଜ ଓ ଏକଲକ୍ଷ ସେନା ଅଲିସ ବନ୍ଦରଠାରେ ସମବେତ ହେଲେ । ସମୁଦ୍ରରେ ସେମାନଙ୍କୁ ଯିବାକୁ ହେବ । ସବୁ ପ୍ରସ୍ତୁତ ହେବାବେଳକୁ ହଠାତ୍ ପବନର ଗତିପଥ ବଦଳିଗଲା, ଜାହାଜ ସବୁ ଝଡ଼ରେ ଆନ୍ଦୋଳିତ ହେବାକୁ ଲାଗିଲା । ସେନାବାହିନୀର ପୁରୋହିତ କାଲକସ ଶୁଭ ଲକ୍ଷଣ ବିଚାର କରି କହିଲେ, ଏଇ ସମୟ ମଧ୍ୟରେ ଆଗାମେମ୍‌ନନ୍ ଦେବୀ ଆର୍ତେମିସ୍‌ଙ୍କ ହରିଣଟିକୁ ଶିକାର କରିଛନ୍ତି । ସେଥିପାଇଁ ଏହି ବିପଦ ଘଟିଛି । ଏକମାତ୍ର ଉପାୟ, ଆପଣାର ଝିଅ ଇଫିଜେନିଆକୁ ବଳି ଦେଲେ-ହିଁ ଦେବୀ ଶାନ୍ତ ହେବେ । ଗୋଟିଏ ପଟରେ ସେନା ଓ ଅନ୍ୟ ପକ୍ଷରେ ଆପଣା ଝିଅର ଜୀବନ—ତାଙ୍କୁ ଏଥିରୁ ଗୋଟିକୁ ହିଁ ବାଛିବାକୁ ପଡ଼ିବ । ଅବଶେଷରେ ଝିଅକୁ ବଳିଦେବା ଲାଗି ସେ ସ୍ଥିରକଲେ । ଝିଅକୁ ନିଜ ରାଜ୍ୟରୁ ଆଣିବାଲାଗି ଇଥାକାର ରାଜା ଅଡ଼ିସିଅସଙ୍କୁ ପଠାଗଲା । ସେ ତାଙ୍କୁ କପଟରେ ଭୁଲାଇ ସେନାଛାଉଣିକୁ ଆଣିବା ପରେ ତାଙ୍କୁ ବଳି ଦିଆଗଲା ।

ଅନୁକୂଳ ଅବସ୍ଥା ସୃଷ୍ଟି ହେବାରୁ ଗ୍ରୀକ୍ ସେନା ସମୁଦ୍ର ପଥରେ ଟ୍ରୟ ବିରୁଦ୍ଧରେ ଯାତ୍ରାରମ୍ଭ କଲେ । ଟ୍ରୟ କୂଳରେ ପହଞ୍ଚି ସୈନ୍ୟମାନଙ୍କୁ ଯୁଦ୍ଧ ପାଇଁ ସୁସଜ୍ଜିତ କରାଗଲା । ଦଳପତି ଭାବେ ଗ୍ରୀସ୍‌ର ଦୁଇ ମହାବୀର

ଆଚିଲେସ୍ ଓ ଆଜାକସ୍ ଦୁଇ ବଗଳରେ ରହିଲେ । ମଝିରେ ରହିଲେ ଆଗାମେମ୍ନନ୍ । ଟ୍ରୟ ଦୁର୍ଗର ସମ୍ମୁଖବର୍ତ୍ତୀ ସମୁଦ୍ର ଉପକୂଳରେ ସମତଳ ପ୍ରାନ୍ତରରେ ଗ୍ରୀକ୍ ଓ ଟ୍ରୟ ସୈନ୍ୟମାନଙ୍କ ମଧ୍ୟରେ ଯୁଦ୍ଧ ସଂଘଟିତ ହେଲା । ଗ୍ରୀକ୍ ସେନା ଟ୍ରୟ ରାଜ୍ୟ ଅଧିକାର କରିବାକୁ ଚାହୁଁଥାନ୍ତି । ଟ୍ରୟ ସେନା ଚାହୁଁଥାନ୍ତି ଗ୍ରୀକ୍ ଯୁଦ୍ଧ ଜାହାଜମାନଙ୍କୁ ଭସ୍ମୀଭୂତ କରିଦେବାକୁ । ଏହିପରି ଭାବେ ନଅବର୍ଷ ବିତିଗଲା । ତଥାପି ଗ୍ରୀକ୍ ସେନା ଟ୍ରୟରାଜ୍ୟକୁ ଅଧିକାର କରିପାରିଲେ ନାହିଁ । ଅବଶ୍ୟ ଗ୍ରୀକ୍‌ସେନା ନିକଟବର୍ତ୍ତୀ ଅନ୍ୟ କେତୋଟି ଛୋଟ ରାଜ୍ୟକୁ ଜିଣି ଅନେକ ଧନସମ୍ପଦ ଲୁଣ୍ଠନ କରି ନେଇଥିଲେ । ଲୁଣ୍ଠିତ ଉପକରଣ ସବୁ ସୈନ୍ୟମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଥିଲା । ଯୁଦ୍ଧର ଦଶମ ବର୍ଷରେ ଗ୍ରୀକ୍‌ସେନା ଦୁଇଟି ଛୋଟ ରାଜ୍ୟ ଜୟ କରିଥିଲେ । ଏହି ବିଜୟରେ ସେମାନେ ଖ୍ରାଇସେଇସ୍ ଓ ଖ୍ରାଇସିସ୍ ନାମକ ଦୁଇଟି ତରୁଣୀକୁ ଲାଭ କରିଥିଲେ । ବୀର ଆଚିଲେସ୍ ତରୁଣୀ ଖ୍ରାଇସେଇସ୍‌ଙ୍କୁ ଓ ବୀର ଆଗାମେମ୍ନନ୍ ଖ୍ରାଇସିସଙ୍କୁ ବିଜୟ ଉପହାର ରୂପେ ପାଇଥିଲେ । ଖ୍ରାଇସିସ୍ ଥିଲେ ସୂର୍ଯ୍ୟ ଦେବତାଙ୍କ ପୁରୋହିତ ଖ୍ରାଏସେଇସଙ୍କ କନ୍ୟା ।

ଏହାପରଠାରୁ ଇଲିଆଡର କଥାବସ୍ତୁ ଆରମ୍ଭ ହୋଇଛି । ଗ୍ରୀକ୍ ଶିବିରରେ ମଡ଼କ ପଡ଼ିଛି । ଖ୍ରାଇସେଇସ୍ ନିଜ କନ୍ୟାକୁ ଫେରାଇ ନେବାକୁ ଗ୍ରୀକ୍ ଶିବିରକୁ ଆସିଛନ୍ତି । ଆଗାମେମ୍ନନ୍ ତାଙ୍କୁ କଠୋର ବାକ୍ୟରେ ଫେରାଇ ଦେଲେ । ଖ୍ରାଇସେଇସ୍ ଗ୍ରୀକ୍‌ସେନା ବିରୁଦ୍ଧରେ କଠୋର ପ୍ରତିବିଧାନ କରିବାକୁ ସୂର୍ଯ୍ୟ ଦେବତାଙ୍କୁ ପ୍ରାର୍ଥନା କଲେ । ଫଳରେ ନଅଦିନ ପାଇଁ ଗ୍ରୀକ୍ ସେନାଙ୍କ ଉପରେ ମଡ଼କଲୀଳା ଚାଲିଲା । ଦଶମଦିନ ଆଚିଲେସ ଏକ ସନ୍ନିକମାର ଆହ୍ୱାନ କଲେ । ଏଠାରେ କାଲକସ ଘୋଷଣା କଲେ ଆଗାମେମନନ୍‌ଙ୍କ ଖ୍ରାଇସିସ୍ ପ୍ରତି ଅଭିରୁଚି ହିଁ ଏହି ଦୁର୍ଯୋଗର କାରଣ । ଆଗାମେମ୍ନନ ବାଧ୍ୟହୋଇ ଖ୍ରାଇସିସ୍‌ଙ୍କୁ ଫେରାଇ-ଦେବାକୁ ରାଜିହେଲେ । ମାତ୍ର ଖ୍ରାଇସିସ୍ ପରିବର୍ତ୍ତେ ସେ ଆଚିଲେସ ଲାଭ କରିଥିବା କନ୍ୟା ଖ୍ରାଇସେଇସଙ୍କୁ ହିଁ ଫେରେଇ ଦେଲେ । ଅଚିଲେସ ଏଥିରେ ଅପମାନିତ ବୋଧକଲେ ଓ ରାଗିଯାଇ ଯୁଦ୍ଧରୁ ଅପସରି ଗଲେ ଓ ନିଜ ମାଆ ଥେଟିସ୍‌ଙ୍କୁ ପ୍ରାର୍ଥନା କଲେ ଗ୍ରୀକ୍ ସେନାଙ୍କ କ୍ଷତି ସାଧନ

କରିବାକୁ । ଦେବରାଜଙ୍କଦ୍ୱାରା ଗ୍ରୀକ୍ ସେନାଙ୍କ କ୍ଷତିସାଧିତ ହେବାରୁ ଆଚିଲେସଙ୍କ ମର୍ଯ୍ୟାଦା ସମସ୍ତେ ସ୍ୱୀକାର କଲେ ।

ମତଭେଦ କମିଆସିଲା, ଗ୍ରୀକ୍‌ସେନା ଟ୍ରୟ ବିରୁଦ୍ଧରେ ଆକ୍ରମଣ କରିବାକୁ ଅଗ୍ରସର ହେଲେ । ଏକ ଯୁଦ୍ଧ ଆରମ୍ଭ ବେଳକୁ ପାରିସ ନିଜ ସଙ୍ଗେ ଲଢ଼ିବାଲାଗି ମିନେଲସଙ୍କୁ ଆହ୍ୱାନ କଲେ ବିବାଦର ନିଷ୍ପତ୍ତି ପାଇଁ । ଦୁହିଁଙ୍କ ମଧ୍ୟରେ ଏଥିପାଇଁ ସର୍ତ୍ତ ଠିକ୍ ହୋଇଗଲା ଓ ଦୁହେଁ ଲଢ଼ିବାକୁ ପ୍ରସ୍ତୁତ ହେଲେ । ଯୁଦ୍ଧରେ ମିନେଲସ୍ ପାରିସଙ୍କୁ ନିରସ୍ତକରି ତାଙ୍କୁ ଶେଷ ଆଘାତ ଦେବାର ଅଳ୍ପ ପୂର୍ବରୁ ଆଫ୍ରୋଡାଇଟ୍ ତାଙ୍କୁ କୌଶଳରେ ନିଜ ଘରକୁ ନେଇଗଲେ । ତାପରେ ଯୁଦ୍ଧ ଚାଲିଲା ।

ଗ୍ରୀକ୍‌ମାନେ ବୀର ଡାଇଓମେଡ଼ସଙ୍କଦ୍ୱାରା ଉଦ୍‌ବୁଦ୍ଧ ହୋଇ ଟ୍ରୟବାସୀଙ୍କ ବିରୁଦ୍ଧରେ ପ୍ରବଳଯୁଦ୍ଧ କଲେ । ଏହା ଫଳରେ ଟ୍ରୟର ସେନାପତି ହେକ୍ଟର ଟ୍ରୟ ନଗରୀକୁ ଫେରିଆସିଲେ । ଶତ୍ରୁମାନଙ୍କ ହାତରୁ ନଗରୀର ରକ୍ଷା ପାଇଁ ଟ୍ରୟବାସୀମାନେ ଆଥେନାଙ୍କୁ ପ୍ରାର୍ଥନା କରନ୍ତୁ ଏହା କହିବାକୁ ସେ ବାହାର ଦୁର୍ଗର ଦ୍ୱାର ପାଖରେ ପହଞ୍ଚି ଦେଖିଲେ, ତାଙ୍କ ସ୍ତ୍ରୀ ଆଣ୍ଡ୍ରୋମାଚ୍ ଶ୍ରେଷ୍ଠ ପୁଅ ଅସ୍ତ୍ୟନାକସ୍‌କୁ ଧରି ତାଙ୍କରି ଆଡ଼କୁ ଧାଇଁ ଧାଇଁ ଆସୁଛି । ଆଣ୍ଡ୍ରୋମାଚ୍ ହେକ୍ଟରଙ୍କୁ କରୁଣ ଭାବରେ ନିବେଦନ କଲା—ତୁମେ ଆଜ ଏ ନଗରୀକୁ ଛାଡ଼ି ବାହାରକୁ ଯାଅନାହିଁ; ମାତ୍ର ମହାନ ବୀର ସେନାପତି ହେକ୍ଟର ଏକଥା କପରି ବା କରିବେ ? ତଥାପି ସ୍ତ୍ରୀର ଏପରି କଥା ଶୁଣି ତାହାଙ୍କ ହୃଦୟ ଆପଣାର ପତ୍ନୀପ୍ରତି ମମତାରେ ଆର୍ଦ୍ର ହୋଇଗଲା । ସେ ଆଖି ଆଗରେ ଦେଖିପାରୁଥିଲେ ଟ୍ରୟର ପତନ । ଆପଣାର ମୃତ୍ୟୁ ଓ ସ୍ତ୍ରୀର ବନ୍ଦିନୀ ଦଶା ।

ଥେଟିସଙ୍କ ନିବେଦନ ଫଳରେ ଦେବରାଜ ଟ୍ରୟବାସୀଙ୍କୁ ସାହାଯ୍ୟ କଲେ । ତାହାଙ୍କ ଅନୁଗ୍ରହରୁ ଟ୍ରୟବାସୀମାନେ ଯୁଦ୍ଧରେ ଆଗେଇବାକୁ ଲାଗିଲେ । ହେକ୍ଟରଙ୍କ ନେତୃତ୍ୱରେ ଟ୍ରୟ ସେନା ଗ୍ରୀକ୍ ସେନାଙ୍କୁ ସମୁଦ୍ର କୂଳପର୍ଯ୍ୟନ୍ତ ବହୁଦୂର ଘଉଡ଼େଇ ଦେଲେ । ଆଗାମେମ୍‌ନନ୍ ଆଚିଲେସଙ୍କ-ଠାରୁ ବ୍ରାଇସିସ୍‌ଙ୍କୁ ନେଇଯାଇ ଭୁଲ କରିଛନ୍ତି ବୋଲି ସ୍ୱୀକାର କଲେ ଓ ପ୍ରଚୁର ଉପହାର ସହ ବ୍ରାଇସିସ୍‌କୁ ଫେରାଇ ଦେବାକୁ ସମ୍ମତ ହୋଇଗଲେ ।

ଆଚିଲସ୍‌ଙ୍କ ଦୂତ ପଠାଗଲା; ମାତ୍ର ବୀର ଆଚିଲସ୍ ଏହାକୁ ପ୍ରତ୍ୟାଖ୍ୟାନ କରିଦେଲେ ।

ସେହି ସମୟରେ ଗ୍ରୀକ୍‌ବୀର ଓଡ଼ିସିଅସ ଓ ଡାଇମିଡ଼ସ ଟ୍ରୟବାସୀଙ୍କ ପକ୍ଷରେ ସଦ୍ୟ ଯୋଗ ଦେଇଥିବା ଜଣେ ବଳିଷ୍ଠ ବୀରଙ୍କୁ ହତ୍ୟା କଲେ; ମାତ୍ର ଏହାର ପରଦିନ ଆଗାମେମ୍‌ନନ ଓଡ଼ିସିଅସ ଓ ଡାଇମିଡ଼ସ ପ୍ରଭୃତି ଗ୍ରୀକ୍‌ସେନାପତିଗଣ ଯୁଦ୍ଧକ୍ଷେତ୍ରରେ ସଫଳତା ଲାଭ ନ କରି ଶିବିରକୁ ଫେରି ଆସିଲେ । ହେକ୍ଟର ଦକ୍ଷତାର ସହିତ ଟ୍ରୟସେନାକୁ ଗ୍ରୀକ-ସେନା ମଧ୍ୟରେ ବହୁଦୂର ପ୍ରବେଶ କରାଇ ଦେବାକୁ ସଫଳ ହୋଇଥିଲେ । ଦେବରାଜଙ୍କ ଅନୁଗ୍ରହରୁ ସେମାନେ ଗ୍ରୀକ୍‌ମାନଙ୍କ ଯୁଦ୍ଧତରୀ ପାଖରେ ପହଞ୍ଚି ସେଥିରେ ଅଗ୍ନିସଂଯୋଗ କରାଇଦେଲେ । ଏପରି ବିପଦ ସମୟରେ ଆଚିଲେସ୍‌ଙ୍କ ଘନିଷ୍ଠ ବନ୍ଧୁ ପଟ୍ରୋକ୍ଲସ୍ ଯୁଦ୍ଧରେ ଯୋଗ ଦେବାକୁ ଆଚିଲେସ୍‌ଙ୍କୁ ଅନୁମତି ମାଗିଲେ । ଆଚିଲେସ୍ ରାଜିହେଲେ ଓ କହିଲେ—"ଶତ୍ରୁମାନଙ୍କୁ ରଣତରୀ ନିକଟରୁ ଅପସାରିତ କରି ତୁମେ ଫେରି ଆସିବ । ପଟ୍ରୋକ୍ଲସ୍ ଆଚିଲେସଙ୍କ ସାଞ୍ଜୁ ପିନ୍ଧି ନିଜ ଦଳବଳ ସହ ଯୁଦ୍ଧକ୍ଷେତ୍ରକୁ ଚାଲିଲେ । ଟ୍ରୟସେନା ତାଙ୍କୁ ଆଚିଲେସ ମନେ କରି ଭୟରେ ପଳାଇଲେ । ଏହିପରି ଭାବେ ପାଟ୍ରୋକ୍ଲସ ଟ୍ରୟ ସେନାଙ୍କୁ ନଗରର ଦ୍ୱାର ପର୍ଯ୍ୟନ୍ତ ହଟେଇ ନେଲେ; ମାତ୍ର ଏଇଠି ସେ ହେକ୍ଟରଙ୍କ ହାବୁଡ଼ରେ ପଡ଼ିଗଲେ, ହେକ୍ଟର ତାଙ୍କୁ ହତ୍ୟାକଲେ ଓ ତାଙ୍କ ଦେହରୁ ଆଚିଲେସଙ୍କ ସାଞ୍ଜୁଟି କାଢ଼ି ନିଜେ ପିନ୍ଧିଲେ । ମୃତଦେହଟି ସହ ସେନାର ସମ୍ମାନ ଜଡ଼ିତ । ଯାହାହେଉ ଗ୍ରୀକ୍‌ମାନେ ପରେ ପଟ୍ରୋକ୍ଲସଙ୍କ ମୃତ ଦେହଟିକୁ ଟ୍ରୟସେନାଙ୍କ କବଳରୁ ନେଇଯାଇପାରିଥିଲେ ।

ଆଚିଲେସ୍ ବନ୍ଧୁର ନିଧନ ବାର୍ତ୍ତା ଶୁଣି ମର୍ମାହତ ହୋଇ ପଡ଼ିଲେ । ତାଙ୍କପାଇଁ ପୁଣି ନୂତନ ସାଞ୍ଜୁ ନିର୍ମିତହେଲା । ଗ୍ରୀକ୍‌ମାନଙ୍କ ସଭାରେ ସେ ପୂର୍ବର କ୍ରୋଧ ଭୁଲିଯିବା ସ୍ୱୀକାର କଲେ ଓ ଆଗାମେମ୍‌ନନ୍ ମଧ୍ୟ ନିଜର ପୂର୍ବଆଚରଣ ପାଇଁ କ୍ଷମା ମାଗିଲେ । ଆଚିଲେସ ପୁଣି ଯୁଦ୍ଧରେ ଯୋଗ-ଦେଇ ପ୍ରବଳ ଆକ୍ରମଣ ଆରମ୍ଭ କରିଦେଲେ । ଏହା ଫଳରେ ଟ୍ରୟସେନା ପଛକୁ ହଟି ଶେଷରେ ଦୁର୍ଗ ମଧ୍ୟରେ ପ୍ରବେଶ କରି ଆତ୍ମରକ୍ଷା କଲେ । ଏକମାତ୍ର ବାହାରେ ରହିଲେ ବୀର ହେକ୍ଟର । ଆଚିଲେସ୍ ଓ ତାଙ୍କ

ମଧ୍ୟରେ ଯୁଦ୍ଧ ହେଲା । ଅବଶେଷରେ ଆଚିଲେସ ହେକ୍ଟରଙ୍କ ଗଳାକୁ ବର୍ଚ୍ଛା ବିଦ୍ଧ କରି ହତ୍ୟା କଲେ ଓ ତାଙ୍କର ରକ୍ତାକ୍ତ ମୃତଦେହକୁ ଘୋଷାରି ଘୋଷାରି ଗ୍ରୀକ୍ ଶିବିରକୁ ନେଇ ଆସିଲେ ।

ଏହାର ପରଦିନ ପେଟ୍ରୋକ୍ଲସଙ୍କ ମୃତଦେହକୁ ସମାଧି ଦିଆଗଲା; ମାତ୍ର ଆଚିଲେସ ହେକ୍ଟରଙ୍କ ମୃତଦେହକୁ ମଧ୍ୟ ନିଗ୍ରହୀତ କରୁଥାନ୍ତି । ଶେଷରେ ଦେବରାଜଙ୍କ ଆଦେଶକ୍ରମେ ଏହି ମୃତଦେହକୁ ଟ୍ରୟବାସୀଙ୍କୁ ଫେରାଇ ଦିଆଯାଇଥିଲା । ହେକ୍ଟରଙ୍କ ମୃତଦେହକୁ ଫେରି ପାଇ ଟ୍ରୟବାସୀଙ୍କ ମଧ୍ୟରେ ଶୋକୋଚ୍ଛ୍ୱାସ ସୃଷ୍ଟି ହୋଇଛି । ସେମାନେ ତାହାଙ୍କ ଗୁଣ କୀର୍ତ୍ତନକରି କ୍ରନ୍ଦନ କରିବାକୁ ଲାଗିଲେ ଓ ତାହାଙ୍କର ସମାଧି ଲାଗି ଆୟୋଜନ କରିଥିଲେ । ଇଲିଆଡ଼ କାବ୍ୟ ଏଇଠି ଶେଷ ହୋଇଛି ।

ହେକ୍ଟରଙ୍କ ମୃତ୍ୟୁପରେ, ଟ୍ରୟର ରକ୍ଷାପାଇଁ ଅନ୍ୟ ଯୋଦ୍ଧାମାନେ ଆଗେଇ ଆସିଛନ୍ତି । ରାଣୀ ପେଣ୍ଟିସିଲିଆ ଓ ଆଗାମେମନ୍ ତାଙ୍କ ଦଳବଳ ସହ ଏମାନଙ୍କ ସହିତ ଯୋଗ ଦେଇଛନ୍ତି । ମାତ୍ର ଆଚିଲେସ୍ ଏ ଦୁହିଁଙ୍କୁ ପରାଜିତ କରିଥିଲେ; କିନ୍ତୁ ଆଚିଲେସ୍‌ଙ୍କର ବି ଦୁର୍ଭାଗ୍ୟର ଦିନ ପାଖେଇ ଆସିଲା । ତାହାଙ୍କ ଦୁର୍ଭେଦ୍ୟ ଦେହର ଗୋଇଠି ଥିଲା ମର୍ମସ୍ଥାନ । ପାରିସ ତାଙ୍କୁ ଲକ୍ଷ୍ୟକରି ଯେଉଁ ଶରଟି ସନ୍ଧାନ କରିଥିଲା ସେଇଟି ସୂର୍ଯ୍ୟ ଦେବତାଙ୍କ ନିର୍ଦ୍ଦେଶରେ ଯାଇ ଆଚିଲେସ୍‌ଙ୍କ ଗୋଇଠିରେ ବାଜିଲା । ସେଇ କ୍ଷତଯୋଗୁ ସେ ମୃତ୍ୟୁବରଣ କଲେ । ଅନ୍ୟ ବୀରମାନେ ମଧ୍ୟ ମରିବାକୁ ଲାଗିଲେ । ପାରିସ୍ ମଧ୍ୟ ଶରବିଦ୍ଧ ହୋଇ ମୃତ୍ୟୁବରଣ କଲେ । ଆଚିଲେସ୍‌ଙ୍କ ସାଂଜୁ ଏଇସ୍‌କୁ ଦିଆନଯାଇ ଓଡ଼ିସସ୍‌କୁ ଦିଆଯିବାରୁ ସେ ଆତ୍ମହତ୍ୟା କଲେ । ଗ୍ରୀକ୍‌ମାନଙ୍କର ଏହିପରି ବିପର୍ଯ୍ୟସ୍ତ ଅବସ୍ଥାରେ ଦେବୀ ଏଥିନାଙ୍କ ସହାୟତାରେ ସେମାନେ ଏକ ଯୋଜନା ପ୍ରସ୍ତୁତ କରିଥିଲେ । ଏହାଫଳରେ ହିଁ ସେମାନେ ଅବଶେଷରେ ଟ୍ରୟ ନଗରୀକୁ ଅଧିକାର କରିଥିଲେ । ଗ୍ରୀସ୍‌କୁ ଫେରିଯିବା ଛଳନା କରି ସେମାନେ ଶିବିର ପରିତ୍ୟାଗ କରି ରଣତରୀରେ ଆରୋହଣ କଲେ । ବାସ୍ତବିକ ନିକଟବର୍ତ୍ତୀ ଏକ ଦ୍ୱୀପ ନିକଟକୁ ହିଁ ସେମାନେ ଜଳଯାତ୍ରା କରି ଚାଲିଯାଇଥିଲେ । ସମୁଦ୍ର କୂଳରେ ସେମାନେ ଘୋଡ଼-

ଯାଇଥିଲେ ଏକ ବିରାଟ କାଠର ଘୋଡ଼ା । ଏହି ଘୋଡ଼ା ଭିତରେ କେତେକ ସାହସୀ ଗ୍ରୀକ୍ ଯୋଦ୍ଧା ଲୁଚି ରହିଥିଲେ । ଟ୍ରୟବାସୀମାନେ ଏଇ ଘୋଡ଼ାଟିକୁ ଏକ କୁତୁହଳ ଓ ଏହା ତାଙ୍କ ରାଜ୍ୟକୁ ନିରାପଦ ରଖିବ ଭାବି ତାହାକୁ ଆନନ୍ଦରେ ଟାଣି ଟାଣି ନଗରୀ ମଧ୍ୟକୁ ନେଇଗଲେ ।

ସେହିଦିନ ରାତିରେ ଗ୍ରୀକ୍ ବୀରମାନେ କାଠଘୋଡ଼ା ଭିତରୁ ବାହାରି ଆସି ଫାଟକରେ ପହରା ଦେଉଥିବା ପ୍ରହରୀମାନଙ୍କୁ ହତ୍ୟାକଲେ ଓ ନଗରୀର ଫାଟକକୁ ଖୋଲିଦେଲେ । ପୂର୍ବ ପରିକଳ୍ପନା ଅନୁଯାୟୀ ଗ୍ରୀକ୍ ସୈନ୍ୟମାନେ ଦ୍ୱୀପ ନିକଟରୁ ଟ୍ରୟ ଉପକୂଳକୁ ଫେରି ଆସିଥାନ୍ତି । ରାତିର ଅନ୍ଧକାର ମଧ୍ୟରେ ନଗରୀର ଉନ୍ମୁକ୍ତ ଫାଟକ ମଧ୍ୟ ଦେଇ ସେମାନେ ନଗରୀ ମଧ୍ୟରେ ପ୍ରବେଶ କଲେ । ଟ୍ରୟରେ ଧ୍ୱଂସଲୀଳା ସଂଘଟିତ ହେଲା । ଟ୍ରୟର ରାଜା ପ୍ରିୟମ୍ ଓ ହେକ୍ଟରଙ୍କ ପୁତ୍ର ଅସ୍ତ୍ୟନାକ୍ସ ନିହତ ହେଲେ । ଆଣ୍ଡ୍ରୋମାଚ ବନ୍ଦିନୀ ହେଲେ । ଆତ୍ମରକ୍ଷା କରିଥିବା ଟ୍ରୟବାସିଗଣ ଏନିଅସ (Aeneas) ଙ୍କ ନେତୃତ୍ୱରେ ଇଟାଲିରେ ଆଉ ଏକ ଟ୍ରୟନଗରୀ ନିର୍ମାଣ କରିବା ଅଭିଳାଷରେ ବସନ୍ତ ଋତୁରେ ଜଳପଥରେ ଯାତ୍ରା କରିଥିଲେ । ଏହି ପ୍ରସଙ୍ଗକୁ ଭିତ୍ତିକରି ଭର୍ଜିଲ ରଚନା କରିଛନ୍ତି ତାହାଙ୍କ ସୁବିଖ୍ୟାତ ଅମରକୃତି 'ଏନିଡ୍' ।

ଟ୍ରୟର ପତନ ପରେ ପରେ ହେଲେନ୍ ଓ ମିନେଲସ୍ ପୁନର୍ମିଳିତ ହୋଇଛନ୍ତି ଓ ଦୁହେଁ ସ୍ପାର୍ଟାକୁ ଫେରି ଆସିଛନ୍ତି । ବିଜୟୀବୀର ଆଗାମେମ୍ନନ୍ ତାଙ୍କ ରାଜ୍ୟ ମେସିଗନକୁ ଫେରିଆସିଛନ୍ତି । ମାତ୍ର ଆପଣା ଝିଅକୁ ହତ୍ୟା କରିଥିବାରୁ ପତ୍ନୀ କ୍ଲିଟେମେନେଷ୍ଟ୍ରା ସ୍ୱାମୀ ଆଗାମେମ୍ନନଙ୍କୁ ହତ୍ୟା କରିଛନ୍ତି । ଓଡ଼ିସିଅସ୍ ନିଜ ରାଜ୍ୟ ଇଥାକାକୁ ଫେରିଲେ । ମାତ୍ର ସ୍ୱଦେଶରେ ପହଞ୍ଚିବାକୁ ତାଙ୍କୁ ପୁଣି ଦଶବର୍ଷ ଲାଗିଲା । ସମୁଦ୍ର ପଥରେ ତାହାଙ୍କ ଦୁଃସାହସିକ ଅଭିଯାନ ଓ ଗୃହପ୍ରତ୍ୟାବର୍ତ୍ତନ ପ୍ରସଙ୍ଗକୁ ଭିତ୍ତିକରି ହୋମର ରଚନା କରିଛନ୍ତି ତାଙ୍କର ଅମରକୃତି 'ଓଡ଼ିସି' ।

ଗ୍ରୀକମାନେ ଟ୍ରୟ ଅଧିକାର କରିବାର ପରଠାରୁ (ଦଶମ-ବର୍ଷରୁ) ଓଡ଼ିସିର କଥାବସ୍ତୁ ଆରମ୍ଭ । ଓଡ଼ିସିଅସଙ୍କ ବ୍ୟତୀତ ବିଜୟୀ ଗ୍ରୀକ୍ ବୀରଗଣ ସ୍ୱଦେଶକୁ ଫେରିଗଲେ । ଓଡ଼ିସିଅସ ମଧ୍ୟ ଆପଣାର

ପ୍ରିୟତମା ପତ୍ନୀ ପେନ୍‌ଲୋପ ଓ ପୁତ୍ର ଟେଲିମାକସଙ୍କ ସହ ବହୁଦିନପରେ ପୁନର୍ମିଳିତ ହେବାକୁ ଏକାନ୍ତ ଉତ୍‌କଣ୍ଠିତ ହୋଇ ସମୁଦ୍ର ପଥରେ ଅଗ୍ରସର ହେଉଥାନ୍ତି; ମାତ୍ର ସମୁଦ୍ର ମଧ୍ୟରେ କାଲିପସୋ ନାମକ ଏକ ଜଳକନ୍ୟାଦ୍ୱାରା ସେ ବନ୍ଦୀହେଲେ । ଇତ୍ୟବସରରେ ତାହାଙ୍କ ନିଜ ରାଜ୍ୟ ଇଥାକାରେ ବହୁରାଜକୁମାର ରାଜଭବନରେ ସମବେତ ହୋଇ ପେନ୍‌ଲୋପଙ୍କୁ ବିବାହ କରାଇଦେବାକୁ ପରିକଳ୍ପନା କରୁଥାନ୍ତି । ଓଡ଼ିସିଅସ୍‌ଙ୍କର ମୃତ୍ୟୁ ହୋଇଯାଇଛି । ଏଣୁ ପେନ୍‌ଲୋପ ଯାହାକୁ ଇଚ୍ଛା କରନ୍ତୁ ତାଙ୍କୁ ସ୍ୱାମୀଭାବେ ଗ୍ରହଣକଲେ ରାଜ ସିଂହାସନ ପୁଣି ରାଜାଙ୍କଦ୍ୱାରା ଅଳଂକୃତ ହୋଇପାରିବ । ରାଣୀଙ୍କୁ ସେମାନେ ନାନା-ଭାବରେ ପ୍ରରୋଚିତ କରୁଥାନ୍ତି ।

ଇତ୍ୟବସରରେ ଦେବତାଙ୍କ ଆଶ୍ରୟସ୍ଥଳ ଅଲିମ୍ପସ ପର୍ବତ-ଚୂଡ଼ାରେ ଏଥିନା ଦେବୀ ଦେବରାଜଙ୍କୁ ପ୍ରାର୍ଥନା କଲେ—"ଓଡ଼ିସିଅସ୍‌ଙ୍କୁ ଘରକୁ ଫେରାଇ ଆଣନ୍ତୁ ।" ଦେବରାଜ ତାଙ୍କ ପ୍ରାର୍ଥନା ଶୁଣିଲେ । ଟେଲିମାକ୍‌ସ ତାହାଙ୍କ ନିର୍ଦ୍ଦେଶରେ ଏକ ଛଦ୍ମବେଶରେ ଇଥାକାକୁ ଆସିଲେ । ବିବାହ ପ୍ରାର୍ଥୀ ରାଜକୁମାରମାନଙ୍କୁ ତଡ଼ିଦେବାକୁ ପିତାଙ୍କ ଅନୁସନ୍ଧାନରେ ବହିର୍ଗତ ହେବାକୁ ଦେବରାଜ ତାହାକୁ ପରାମର୍ଶ ଦେଇଥିଲେ ।

ରାଜକୁମାରମାନଙ୍କୁ ତଡ଼ିଦେବାକୁ ଟେଲିମାକ୍‌ସ ସାହାସ କରିପାରିଲେ ନାହିଁ; ମାତ୍ର ପିତାଙ୍କୁ ଖୋଜିବାଲାଗି ସେ ଗୋପନରେ ଇଥାକାରୁ ଯାତ୍ରାକଲେ । ବୁଲି ବୁଲି ସ୍ପାର୍ଟାରେ ପହଞ୍ଚି ହେଲେନ୍ ଓ ମିନେଲସଙ୍କଠାରୁ ଜାଣିବାକୁ ପାଇଲେ, ତାର ବାପା କାଲିପ୍‌ସୋ ଦ୍ୱୀପରେ ବନ୍ଦୀହୋଇ ରହିଛନ୍ତି । ଟେଲିମାକ୍‌ସ ରାଜକୁମାରମାନଙ୍କୁ ନ କହି ଗୋପନରେ ରାଜ୍ୟ ତ୍ୟାଗ କରିଥିବାରୁ ସେମାନେ ତା ଉପରେ ରାଗିଗଲେ ଓ ଦେଶକୁ ଫେରିଲେ ତାକୁ ହତ୍ୟା କରାଯିବ ବୋଲି ସ୍ଥିରହେଲେ ।

ଏଥିନାଙ୍କ ନିବେଦନ କ୍ରମେ ଦେବରାଜ ଓଡ଼ିଶିଅସ୍‌ଙ୍କୁ ମୁକ୍ତ କରିଦେବାଲାଗି ଆଦେଶ ଦେଇ ହରମେସ୍‌ଙ୍କୁ କାଲିପ୍‌ସୋ ନିକଟକୁ ପଠାଇଲେ । ଅପ୍ସରୀ ତାଙ୍କୁ ଏକ ଭେଳାରେ ବସାଇ ବିଦାୟ ଦେଲା ।

ମେଳାଟି ଘସି ଯିବାରୁ ଉଠିବ । ବାଟରେ ଗୋଟିଏ ଦ୍ୱୀପ ପାଖରେ ଆଉ ଜଣେ ଦେବତା ତା ଭେଳାଟିକୁ ନଷ୍ଟ କରିଦେଲେ । ଓଡ଼ିସିଅସ୍ ଅଥଳ ସମୁଦ୍ରରେ ଭାସୁଥିବାବେଳେ ଜନୈକା ଦେବୀ ଆପଣାର ଓଢ଼ଣୀଟି ଦେଇ ତାଙ୍କୁ ସାହାଯ୍ୟ କରିବାରୁ ସେ ତାହା ସାହାଯ୍ୟରେ କୌଣସି ମତେ ଉଦ୍ଧାର ପାଇ ଏକ ନଦୀ ମୁହାଣ ପାଖେ କୂଳରେ ଲାଗିଲା । କ୍ଳାନ୍ତିରେ ନଦୀକୂଳରେ ଏକ ଅଳଭ କୁଞ୍ଜରେ ସେ ଶୋଇପଡ଼ିଲା । ଏଥିନାଦେବୀ ସେଇ ରାଜ୍ୟର ରାଜକୁମାରୀ ନସିକାଙ୍କୁ ସ୍ୱପ୍ନରେ ଆଦେଶ ଦେଲେ ନଦୀକୂଳକୁ ଯିବାକୁ ।

ସକାଳ ହେବାରୁ ସହଚରୀମାନଙ୍କସହ ରାଜକୁମାରୀ ଲୁଗା ଧୋଇବା ଲାଗି ନଦୀକୂଳକୁ ଗଲେ । ସେମାନଙ୍କ କୋଳାହଳରେ ଓଡ଼ିସିଅସ୍‌ର ନିଦ୍ରା ଭାଙ୍ଗିଗଲା, ସେ ନସିକାଙ୍କୁ କିଛି ଖାଦ୍ୟ ଓ ବସ୍ତ୍ର ମାଗିଲା । ରାଜକୁମାରୀ ତାଙ୍କୁ ସେସବୁ ଯୋଗାଇ ଦେଇ ରାଜଭବନକୁ ଯିବାଲାଗି ନିର୍ଦ୍ଦେଶ ଦେଲେ । ଓଡ଼ିସିଅସ୍ ରାଜାଙ୍କ ସଙ୍ଗେ ସାକ୍ଷାତକରି ନିଜ ରାଜ୍ୟକୁ ଫେରିଯିବା ପାଇଁ ଗୋଟିଏ ଡଙ୍ଗା ମାଗିଲେ । ସେ ତାହା ଦେବାକୁ ରାଜି ହୋଇଗଲେ ।

ପରଦିନ ସେଇ ରାଜ୍ୟରେ କ୍ରୀଡ଼ା ଉତ୍ସବ ଅନୁଷ୍ଠିତ ହେଲା । ଓଡ଼ିସିଅସ୍ ମଧ୍ୟ ସେଥିରେ ଯୋଗ ଦେଇଥିଲା । ତାହାଙ୍କ କ୍ରୀଡ଼ା-ନୈପୁଣ୍ୟ ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲା । ଖେଳ ପରେ ଭୋଜି ହେଲା । ଏତିକବେଳେ ଜଣେ ଅନ୍ଧଚାରଣ ଟ୍ରୟ ରାଜ୍ୟର ପତନ ବିଷୟକୁ ନେଇ ଏକ ଗୀତ ବୋଲିଲେ । ଏହା ଶୁଣି ଶୁଣି ଓଡ଼ିସିଅସ ଆଖିରୁ ଲୁହ ଝରିବାକୁ ଲାଗିଲା । ରାଜାଙ୍କ ପ୍ରଶ୍ନକ୍ରମେ ଓଡ଼ସସ୍ ଆପଣାର ପରିଚୟ ସେମାନଙ୍କୁ ଜଣାଇଲା । ସମସ୍ତଙ୍କ ଅନୁରୋଧକ୍ରମେ ସେ ତାହାର ଭ୍ରମଣ କାହାଣୀ କହିବାକୁ ଲାଗିଲା । ଓଡ଼ିସି ମହାକାବ୍ୟର ଏକାଦଶ ଓ ଦ୍ୱାଦଶ ସର୍ଗ ଓଡ଼ିସିଅସ୍‌ଙ୍କ ଦୁଃସାହସିକ ଭ୍ରମଣର ବହୁ ଚମତ୍‌ପ୍ରଦ ବିବରଣୀ ବର୍ଣ୍ଣିତ । ଏଗୁଡ଼ିକ ବିଶ୍ୱସାହିତ୍ୟର ଅପୂର୍ବ କାହାଣୀ ଭାବେ ପରିଗଣିତ ହୁଏ ।

ସେଇ ଦେଶର ବହୁ ଉପହାର ନେଇକରି ଏକ କ୍ଷୁଦ୍ରକ ଡଙ୍ଗାରେ ବସି ଓଡ଼ିସିଅସ୍ ନିଜ ଦେଶକୁ ବାହୁଡ଼ିଲେ । ଇଥାକାରେ ଡଙ୍ଗା ଲାଗିଲା ।

ବେଳକୁ ଓଡ଼ିସିଅସ୍ ଶୋଇଥିଲେ । ନାବିକମାନେ ତାଙ୍କୁ କୂଳକୁ ନେଇଗଲେ । ଓଡ଼ିସିଅସ୍‌ଙ୍କ ନିଦ ଭାଙ୍ଗିଲା । ନିଜ ରାଜ୍ୟକୁ ସେ ଚିହ୍ନି ପାରିଲେ ନାହିଁ । ଏଥିନା ଦେବୀ ତାଙ୍କ ପାଖକୁ ଆସି ତାଙ୍କ ସ୍ତ୍ରୀଙ୍କୁ ବିବାହ କରିବାକୁ ଚାହୁଁଥିବା ଲୋକଙ୍କ ବିଷୟ କହିଲେ ଓ ତାଙ୍କୁ ଏକ ବୁଢ଼ା ବେଶରେ ଅନ୍ୟ ଏକ ସ୍ଥାନକୁ ପଠାଇଦେଲେ । ଟେଲିମାକସ୍ ସ୍ପାର୍ଟାରୁ ଫେରିବାପର୍ଯ୍ୟନ୍ତ ସେ ସେଇଠି ରହିଲେ । ଏଥିନାଙ୍କ ସ୍ୱପ୍ନାଦେଶ ପାଇ ଟେଲେମାକସ୍ ସ୍ପାର୍ଟା ଫେରି ରାଜଭବନକୁ ନଯାଇ ତାର ପିତା ରହୁଥିବା ସ୍ଥାନକୁ ଆସିଲେ । ଏଇଠି ପିତା ପୁତ୍ରଙ୍କର ମିଳନ ହେଲା । ଦୁହେଁ ସାଙ୍ଗ ହୋଇ ରାଜପ୍ରାସାଦ ଆଡ଼କୁ ଅଗ୍ରସର ହେଲେ । କପଟ ବିବାହ ଲାଗି ସମବେତ ରାଜାମାନଙ୍କୁ ହତ୍ୟା କରିବେ, ତାହାର ପରିକଳ୍ପନା କଲେ । କଥାହେଲା, ପ୍ରଥମେ ଟେଲେମାକସ୍ ସିଧା ରାଜପ୍ରାସାଦକୁ ଯିବ ଓ ଓଡ଼ିସିଅସ୍ ପରେ ଭିକାରୀ ବେଶରେ ସେଠି ପହଞ୍ଚିବେ ।

ଇତ୍ୟବସରରେ ପେନଲୋପ ଆପଣାକୁ ଏକାନ୍ତ ନିରୁପାୟ ବୋଧ କରୁଥାନ୍ତି । ଏତେବର୍ଷ ଧରି ସେ ଆପଣାର ପ୍ରିୟତମ ସ୍ୱାମୀଙ୍କ ମିଳନ ଆଶାରେ ରହିଛନ୍ତି । ମାତ୍ର ରାଜାମାନଙ୍କ ଜିଦ୍—ତାଙ୍କୁ ପୁନର୍ବିବାହ କରିବାକୁ ହେବ । ଅବଶେଷରେ ସେ ଏକ ସର୍ତ୍ତରେ ବିବାହ କରିବେ ବୋଲି ପ୍ରକାଶ କଲେ—ଯିଏ ଓଡ଼ିସିଅସ୍ ଧନୁରେ ତୀର ମାରି ଏକ ଧାଡ଼ିରେ ଥିବା ବାରଟି ଖପୁରୀକୁ ଭେଦ କରାଇଦେବ, ତାହାକୁ ସେ ବିବାହ କରିବେ । ଭିକାରୀ ବେଶ ଧରିଥିବା ଓଡ଼ିସିଅସ୍‌ଙ୍କ ସଙ୍ଗେ ତାଙ୍କର କଥାବାର୍ତ୍ତା ହେଲା; ମାତ୍ର ତାଙ୍କୁ ସେ ନିଜ ସ୍ୱାମୀ ବୋଲି ଚିହ୍ନିପାରିଲେ ନାହିଁ । ଓଡ଼ିସିଅସ୍ ମଧ୍ୟ ସ୍ତ୍ରୀକୁ ନିଜ ପରିଚୟ ଦେବାକୁ ଚାହିଁ ନଥିଲେ । ସ୍ତ୍ରୀର ସର୍ତ୍ତକୁ ସେ ମନେ ମନେ ପସନ୍ଦ କରୁଥାନ୍ତି । ସେ ବୁଝିପାରିଲେ ଏହି ଉପାୟରେ ହିଁ ସେ ରାଜାମାନଙ୍କୁ ହତ୍ୟା କରିବାକୁ ସମର୍ଥ ହେବେ । କାମଟିକୁ ଆହୁରି ସହଜ କରିଦେବା ଲାଗି ଟେଲିମାକସ୍ ରାଜପ୍ରାସାଦର କାନ୍ଥରେ ଝୁଲୁଥିବା ଅସ୍ତ୍ରଶସ୍ତ୍ରମାନଙ୍କୁ କାଢ଼ିନେଲେ । ଯଥା ସମୟରେ ପ୍ରତିଯୋଗିତା ଆରମ୍ଭ ହେଲା । ଜଣକ ପରେ ଜଣେ ପ୍ରତିଯୋଗୀ ଆସି ଧନୁରେ ତୀର ସନ୍ଧାନ କରିବାକୁ ଆରମ୍ଭକଲେ । ମାତ୍ର କେହି ଜଣେହେଲେ ସଫଳ ହୋଇ-ପାରିଲେନାହିଁ । ସମସ୍ତେ ବିଫଳ ହେଲା ପରେ ଓଡ଼ିସିଅସ୍ ତୀର ସନ୍ଧାନ

ଲାଗି ସମସ୍ତଙ୍କ ଅନୁମତି ଚାହିଁଲେ । ଅନେକେ ତାଙ୍କୁ ଦେଖି ବ୍ୟଙ୍ଗ କଲେ, ଅନୁମତି ଦେବାକୁ ରାଜି ହେଉନଥିଲେ; ମାତ୍ର ଶେଷରେ ତାଙ୍କୁ ଅନୁମତି ମିଳିଲା । ବସିବା ଜାଗାରୁ ନ ଉଠି ସେ ଧନୁରେ ଅନାୟାସରେ ଶର ସନ୍ଧାନ କରିଦେଲେ । ଟେଲିମାକସ୍ ସତର୍କ ଓ ପ୍ରସ୍ତୁତ ହୋଇ ରହିଥାନ୍ତି । ସଙ୍ଗେ ସଙ୍ଗେ ସେ ଖଣ୍ଡା ଖୋଲି ବର୍ଚ୍ଛାକୁ ଉତ୍ତୋଳନ କଲେ । ଓଡ଼ିସିଅସ ଆପଣାର ପରିଚୟ ଉଚ୍ଚକଣ୍ଠରେ ଘୋଷଣା କରି ବିବାହ ପ୍ରାର୍ଥୀମାନଙ୍କୁ ହତ୍ୟା କରିବାକୁ ଆରମ୍ଭ କରିଦେଲେ । ଏହି ସଂଘର୍ଷବେଳେ ଏଥିନା ଦେବୀଙ୍କ ସହାୟତାରେ ସେ ଓ ତାଙ୍କ ବନ୍ଧୁ ରାଜାମାନଙ୍କୁ ହତ୍ୟା କଲେ । ଏହାପରେ ସେଇ ପ୍ରକୋଷ୍ଠଟି ପରିଷ୍କୃତ ହେଲା । ଅବିଶ୍ୱାସୀ ପରିଚାରକ-ମାନଙ୍କୁ ଦଣ୍ଡ ଦିଆଗଲା । ଓଡ଼ିସିଅସ, ପେନଲୋପ ଓ ତାହାଙ୍କ ବୃଦ୍ଧ ପିତାଙ୍କୁ ସାକ୍ଷାତ କଲେ । ନିହତ ରାଜାଙ୍କ ଆତ୍ମୀୟମାନେ ଓଡ଼ିସିଅସଙ୍କ ବିରୁଦ୍ଧରେ ତଥା ରାଜପ୍ରାସାଦ ଆକ୍ରମଣ ଉଦ୍ଦେଶ୍ୟରେ ଯେଉଁ ଉଦ୍ୟମ କରୁଥିଲେ, ତାହାର ପ୍ରତିରୋଧ ପାଇଁ ଓଡ଼ିସିଅସ୍‌ଙ୍କ ପ୍ରଚେଷ୍ଟା ଓ ଏଥିନା-ଦେବୀଙ୍କ ଉଦ୍ୟମରେ କପରି ଏହି ଦ୍ୱୀପରେ ଶାନ୍ତି ପ୍ରତିଷ୍ଠିତ ହୋଇ-ପାରିଥିଲା, ତାହାର ବର୍ଣ୍ଣନାରେ ଓଡ଼ିସି ମହାକାବ୍ୟ ପରିସମାପ୍ତ ହୋଇଛି ।

ଇଲିଆଡ଼ର ଅର୍ଥ ଇଲିଅସ ଅର୍ଥାତ୍ ଟ୍ରୟର କାହାଣୀ; ମାତ୍ର ହୋମର ଏହି କାବ୍ୟରେ ଟ୍ରୟର ସମସ୍ତ କାହାଣୀ ବର୍ଣ୍ଣନା କରିନାହାନ୍ତି । ଏହାର ବିଷୟବସ୍ତୁ ହେଉଛି ଆଚିଲେସ (Achilles)ଙ୍କ କ୍ରୋଧ । ଟ୍ରୟ ଅବରୋଧରେ ଦଶମ ବର୍ଷର ଗୋଟିଏ ଘଟଣାକୁ ଭିତ୍ତିକରି ରଚିତ । ଏହି ବିଷୟବସ୍ତୁକୁ ଉପସ୍ଥାପିତ କରିବାକୁ ଯାଇ କବି ଯୁଦ୍ଧ ଓ ବୀରମାନଙ୍କ କାର୍ଯ୍ୟକଳାପକୁ ବିସ୍ତୃତ ଭାବରେ ବର୍ଣ୍ଣନା କରିଅଛନ୍ତି ।

ଆଚିଲେସ ଥିଲେ ସାହସୀ ବୀର ଓ ଯଶୋଲିପ୍ସୁ । ଶୌର୍ଯ୍ୟ ପ୍ରଦର୍ଶନ ଉଦ୍ଦେଶ୍ୟରେ ହିଁ ସେ ଏହି ସମର-ପ୍ରାଙ୍ଗଣରେ ଅବତୀର୍ଣ୍ଣ । ଅତୀତରେ ତାଙ୍କୁ ପଚରା ଯାଇଥିଲା, ତୁମେ ଗ୍ରୀସରେ ବୃଦ୍ଧ ବୟସ ପର୍ଯ୍ୟନ୍ତ ଗୌରବହୀନ ଜୀବନଯାପନ କରିବାକୁ ଚାହିଁ ନା ଟ୍ରୟ ଯୁଦ୍ଧରେ ତରୁଣ ବୟସରେ ମୃତ୍ୟୁବରଣ କରି ଯଶ ଅର୍ଜନ କରିବାକୁ ଚାହିଁ ? ସେ ଶେଷୋକ୍ତ ଜୀବନକୁ ବାଛି ନେଇଥିଲେ । ଦୁଇଟିଯାକ ମହାକାବ୍ୟ ଚରିତ୍ର ଓ ଘଟଣାବଳୀଦ୍ୱାରା

ସମୃଦ୍ଧ । ଯୁଦ୍ଧ ଓ ବିତର୍କ ଏହାର ପ୍ରଧାନ ଉପାଦାନ ଏଥିରେ ବର୍ଣ୍ଣିତ ଯୁଦ୍ଧ ସମ୍ବନ୍ଧୀୟ ବିଷୟଗୁଡ଼ିକ କବିଙ୍କର ସେ ସମ୍ପର୍କରେ ଯେପରି ଅଭିଜ୍ଞତା ଥିଲା ତାହା ବାସ୍ତବିକ ବିସ୍ମୟଜନକ ମନେହୁଏ । ଏଥିରେ ପ୍ରଦତ୍ତ ଯୋଦ୍ଧା-ମାନଙ୍କ ଭାଷଣ, ହେଲେନର ରୂପ, ପତ୍ନୀଙ୍କଠାରୁ ହେକ୍ଟରଙ୍କ ବିଦାୟ, ଆକିଲେସଙ୍କ ଢାଲ ନିର୍ମାଣ, ହେକ୍ଟରଙ୍କ ମୃତଦେହ ଉଦ୍ଧାର ପାଇଁ ତାହାଙ୍କ ପିତାଙ୍କ ବ୍ୟାକୁଳତା ପ୍ରଭୃତିର ବର୍ଣ୍ଣନାରେ କବିଙ୍କ ଅପୂର୍ବ ଦକ୍ଷତା ପ୍ରକଟିତ ।

ଯେଉଁ ବୀରମାନଙ୍କ ବିଷୟ ଇଲିଆଡ ଓ ଓଡ଼ିସିରେ ବର୍ଣ୍ଣିତ ସେମାନେ ମହାନ ଓ ଆଦର୍ଶସ୍ଥାନୀୟ ରୂପେ ଚିତ୍ରିତ । ଇଲିଆଡର ଆକିଲେସ ଓ ଓଡ଼ିସିର ଅଡ଼ିସସ୍‌ଙ୍କ ଶୌର୍ଯ୍ୟ ବୀର୍ଯ୍ୟ ଓ ବାଗ୍ମିତା ଅତୁଳନୀୟ । ସେମାନଙ୍କ ସମଗ୍ର ଜୀବନ ଏଥିରେ ବର୍ଣ୍ଣିତ ନ ହୋଇ-ଥିଲେହେଁ ସେମାନଙ୍କ ବ୍ୟକ୍ତିତ୍ୱର ଦୀପ୍ତିରେ ମହାକାବ୍ୟର ପୃଷ୍ଠା ଉଦ୍‌ଭାସିତ ହୋଇ ଉଠିଛି । ମୁଖ୍ୟତଃ ଚରିତ୍ରମାନଙ୍କ ଉକ୍ତି ମାଧ୍ୟମରେ ଏହାର କଥାବସ୍ତୁ ବିକଶିତ । ଦୈବୀ ଓ ମାନବିକ ଉଭୟବିଧ ଚରିତ୍ରକୁ ଆମେ ଏକାଧାରରେ ଏଥିରେ ଦେଖିବାକୁ ପାଇଥାଉ । ହୋମରଙ୍କ ଦେବ ଦେବୀମାନେ ମାନବିକ ଦୋଷଗୁଣସମ୍ପନ୍ନ । ସେମାନଙ୍କଠାରେ କେତେକ ଅତିମାନବିକ ଶକ୍ତି ଥିଲେହେଁ ସେମାନେ ନରନାରୀଙ୍କୁ କ୍ରୀଡ଼ା-ପୁତ୍ତଳିକାରେ ପରିଣତ କରିଦେଇ ନାହାନ୍ତି । ପରନ୍ତୁ ସେମାନେ ଚରିତ୍ର-ମାନଙ୍କୁ ଯେପରି ସାହାଯ୍ୟ କରିଛନ୍ତି, ସେହିପରି ସେମାନଙ୍କୁ ବିପଦାପନ୍ନ ବି କରିଛନ୍ତି । କର୍ତ୍ତବ୍ୟ ସମ୍ପର୍କରେ ସେମାନଙ୍କୁ ସଚେତନ କରିଛନ୍ତି; ମାତ୍ର ସେମାନଙ୍କୁ କେଉଁଠି ଧ୍ୱଂସ କରିଦେଇ ନାହାନ୍ତି ।



# ମହାକବି କାଳିଦାସ

ସଂସ୍କୃତ ସାହିତ୍ୟର ସର୍ବଶ୍ରେଷ୍ଠ ନାଟ୍ୟକାର ଓ କବି ଭାବରେ କାଳିଦାସ ସ୍ୱୀକୃତ । ଏ ସମ୍ପର୍କରେ ବହୁ ଶ୍ଳୋକ ପରମ୍ପରାକ୍ରମେ ଚଳି ଆସୁଅଛି (୧) । ମହାକାବ୍ୟ' 'ରଘୁବଂଶ' ଓ 'କୁମାରସମ୍ଭବ' ଗୀତିକାବ୍ୟ 'ମେଘଦୂତ' ଏବଂ ଦୃଶ୍ୟକାବ୍ୟ ବା ନାଟକ 'ଅଭିଜ୍ଞାନ ଶାକୁନ୍ତଳମ୍', 'ବିକ୍ରମୋର୍ବଶୀୟ' ଓ 'ମାଳବିକାଗ୍ନିମିତ୍ର'ର ପ୍ରଣେତା ଭାବେ ସେ ସୁନାମଧନ୍ୟ । ପରମ୍ପରା କ୍ରମେ 'ଋତୁ ସଂହାର', 'ନଳୋଦୟ' 'ପୁଷ୍ପବାଣ ବିଳାସ', 'ଶୃଙ୍ଗାରତିଳକ', ଓ ଛନ୍ଦ ବିଷୟକ ଗ୍ରନ୍ଥ 'ଶ୍ରୁତବୋଧ' ମଧ୍ୟ ତାହାଙ୍କ ରଚନା ବୋଲି ଗୃହୀତ ହୋଇଥାଏ । କାଳିଦାସଙ୍କ ଜନପ୍ରିୟତା ଫଳରେ ପରବର୍ତ୍ତିକାଳରେ ବହୁ କବି ମଧ୍ୟ ନିଜକୁ 'ଅଭିନବ କାଳିଦାସ' ନାମରେ ଅଭିହିତ କରିଥିବା ଜଣାଯାଏ ।

କାଳିଦାସଙ୍କ ଜୀବନକାଳ ତଥା ସାହିତ୍ୟ ସାଧନାକାଳ ଏକ ଅତୀବ ବିବାଦୀୟ ବିଷୟ । ଏ ସମ୍ପର୍କରେ ମତଭେଦର ଅନ୍ତନାହିଁ । କିମ୍ବଦନ୍ତୀରୁ ଜଣାଯାଏ ଯେ ସେ ରାଜା 'ବିକ୍ରମାଦିତ୍ୟ'ଙ୍କ ସଭାକବି ଥିଲେ । ବିକ୍ରମାଦିତ୍ୟ ଉପାଧି ବହୁ ରାଜା ଗ୍ରହଣ କରିଥିଲେ । ଏହି ରାଜାମାନଙ୍କ ମଧ୍ୟରୁ ପ୍ରାଚୀନତମ ହେଉଛନ୍ତି ଖ୍ରୀ. ପୂ. ୧ମ ଶତକର । ଗୁପ୍ତବଂଶୀୟ ଷଷ୍ଠ ଶତାବ୍ଦୀର ରାଜା ଦ୍ୱିତୀୟ ଚନ୍ଦ୍ରଗୁପ୍ତ । ସେ ମଧ୍ୟ ଏହି ଉପାଧି ଗ୍ରହଣ କରିଥିଲେ । ଶେଷୋକ୍ତ ଏହି ରାଜାଙ୍କ ରାଜତ୍ୱକାଳରେ କାଳିଦାସ ଜୀବିତ ଥିବା

ସମ୍ପର୍କରେ ଅଧିକ ଆଲୋଚକ ମତ ପ୍ରକାଶ କରିଛନ୍ତି । କିଂବଦନ୍ତୀରୁ ଆଉ ଏକ ମଧ୍ୟ ଜଣାଯାଏ ଯେ କାଳିଦାସ ଶୈଶବରେ ଥିଲେ ନିପଟ ମୂର୍ଖ । ଘଟଣାଚକ୍ରରେ ଏକ ରାଜକନ୍ୟାଙ୍କ ସହ ତାଙ୍କର ବିବାହ ହୋଇଥିଲା । ମୂର୍ଖତାଯୋଗୁ ରାଜକନ୍ୟାଙ୍କ କଟୂକ୍ତି ତାହାଙ୍କ ମନରେ ଭାବାନ୍ତର ସୃଷ୍ଟି କଲା । ଏଣୁ ସେ ଗୃହତ୍ୟାଗ କରି ଚାଲିଗଲେ ଓ କଠୋର ସାଧନାଦ୍ୱାରା ବାକ୍‌ଦେବୀ ସରସ୍ୱତୀଙ୍କୁ ସନ୍ତୁଷ୍ଟ କରି ତାହାଙ୍କ ଆଶୀର୍ବାଦ ଯୋଗୁ ଅପୂର୍ବ କବିତ୍ୱର ଅଧିକାରୀ ହୋଇପାରିଥିଲେ ।

ତାହାଙ୍କ ଜନ୍ମସ୍ଥାନ ସମ୍ପର୍କରେ ମଧ୍ୟ ସଠିକ ଭାବରେ କିଛି ଜଣାଯାଇ ନାହିଁ । ମାଳବ, ଉଜ୍ଜୟିନୀ, କାଶ୍ମୀର, ବିଦର୍ଭ, ସିହଳ, ଓଡ଼ିଶା ପ୍ରଭୃତି ବିଭିନ୍ନ ରାଜ୍ୟରେ ସେ ଜନ୍ମଲାଭ କରିଥିବା ବିଷୟରେ ବହୁବିଧ ମତ ପରିଲକ୍ଷିତ ହୁଏ ।

ସଂସ୍କୃତ ସାହିତ୍ୟର ପଞ୍ଚ ମହାକାବ୍ୟ ହେଉଛି ରଘୁବଂଶ, କୁମାର ସମ୍ଭବ, କିରାତାର୍ଜ୍ଜୁନୀୟ, ଶିଶୁପାଳ ବଧ, ଓ ନୈଷଧ ।

ସଂସ୍କୃତ ସାହିତ୍ୟର ପଞ୍ଚମହାକାବ୍ୟ ମଧ୍ୟରୁ ରଘୁବଂଶ ଅନ୍ୟତମ (୨) । ଏହି ମହାକାବ୍ୟଟି ୧୯ଟି ସର୍ଗବିଶିଷ୍ଟ । ରାମାୟଣକୁ ଭିତ୍ତିକରି କବି ଇକ୍ଷାକୁ ବଂଶର ରାଜାମାନଙ୍କ ବିବରଣୀ ଏଥିରେ ବର୍ଣ୍ଣନା କରିଛନ୍ତି । ଦିଲୀପଙ୍କ ସୁବିଖ୍ୟାତ ପୁତ୍ର ରଘୁଙ୍କ ନାମାନୁଯାୟୀ ଏହା ନାମିତ ହୋଇଛି । ଦିଲୀପଙ୍କର ବଶିଷ୍ଠାଶ୍ରମକୁ ଯାତ୍ରା (୧ମ)ର ସ୍ଥାନବର୍ଣ୍ଣନା, ଇନ୍ଦୁମତୀଙ୍କ ସ୍ୱୟଂବର ସଭା (୬ଷ୍ଠ) ଗଂଗା ଯମୁନାର ସଂଗମ (୧୩ଶ), ସୀତାଙ୍କର ରାମଙ୍କ ପ୍ରତି ସନ୍ଦେଶ ବର୍ଣ୍ଣନାରେ କାଳିଦାସଙ୍କ ପ୍ରତିଭାର ଉତ୍କର୍ଷ ପ୍ରକଟିତ ।

କୁମାରସମ୍ଭବ ୧୭ସର୍ଗବିଶିଷ୍ଟ । କେହି କେହି ଏହାର ୯ମ ସର୍ଗରୁ ଶେଷ ପର୍ଯ୍ୟନ୍ତ ପ୍ରକ୍ଷିପ୍ତବୋଲି ମତ ପ୍ରଦାନ କରିଅଛନ୍ତି । ହିମାଳୟର ଚମତ୍କାର ବର୍ଣ୍ଣନାରୁ ଏହାର ଆରମ୍ଭ । ହିମାଳୟର କନ୍ୟା ଉମା ଶିବଙ୍କୁ ପତିରୂପେ ପାଇବାକୁ ଏକାନ୍ତ ଅନୁରାଗିଣୀ; ମାତ୍ର ମହାଯୋଗୀ ଶିବ ତପସ୍ୟାରତ । ତାରକାସୁରଦ୍ୱାରା ଦେବଗଣ ଉତ୍ପୀଡ଼ିତ ହୋଇ ବ୍ରହ୍ମାଙ୍କ ଶରଣାପନ୍ନ ହୋଇଛନ୍ତି ଓ ବ୍ରହ୍ମାଙ୍କ

ନିର୍ଦ୍ଦେଶରେ କନ୍ଦର୍ପ ଶିବଙ୍କ ଧ୍ୟାନଭଙ୍ଗ କରିବାକୁ ପ୍ରେରିତ ହୋଇଛି । ଏହା ଫଳରେ ଶିବ ପାର୍ବତୀଙ୍କ ବିବାହ ସମ୍ପନ୍ନ ହୋଇପାରିବ ଓ କେବଳ ସେମାନଙ୍କ ସନ୍ତାନଦ୍ୱାରା ହିଁ ତାରକାସୁରର ନିଧନ ସମ୍ଭବ । କନ୍ଦର୍ପ ତାର କର୍ତ୍ତବ୍ୟ ସମ୍ପାଦନ କରିଛି; ମାତ୍ର ଶିବଙ୍କ କ୍ରୋଧଯୋଗୁ ସେ ଭସ୍ମୀଭୂତ ହୋଇଗଲା । ଉମା ଏହାପରେ ଶିବଙ୍କୁ ପାଇବାଲାଗି କଠୋର ତପସ୍ୟାରେ ନିମଗ୍ନା । ଶିବ ଉମାଙ୍କ ପ୍ରଣୟ-ନିଷ୍ଠାରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରନ୍ତି  କ୍ରମେ ସେମାନଙ୍କର କୁମାର (କାର୍ତ୍ତିକେୟ) ନାମକ ଏକ ସନ୍ତାନ ହୋଇଛି ଓ ତାହାଙ୍କ ଯୋଗୁ ଦେବଗଣ ଦାନବ-ଉତ୍ପୀଡ଼ନରୁ ନିଷ୍କୃତି ଲାଭକରନ୍ତି । ଶିବ ନିଜେ ଅସୁରଦ୍ୱାରା ଆକ୍ରାନ୍ତ ହେବାରୁ ସେ କୁମାରଙ୍କ ସାହାଯ୍ୟ ଲୋଡ଼ିଲେ । କୁମାର ଯୁଦ୍ଧକ୍ଷେତ୍ରକୁ ଯାଇ ତାହାକୁ ପରାଭୂତ କଲେ । ଏହା ହିଁ ଏହି କାବ୍ୟର କଥାବସ୍ତୁ । ତ୍ରିଭୁବନର ସମସ୍ତଙ୍କୁ ତଥା ଦେବଗଣଙ୍କୁ ଉତ୍ପୀଡ଼ନ କରୁଥିବା ମହିଷାସୁର ବିଷୟ ମହାଭାରତରେ ଅଛି; ମାତ୍ର କବି କେଉଁଠୁ ଏହି କଥାବସ୍ତୁଟି ଆହରଣ କରିଛନ୍ତି, ତାହା ଜଣାଯାଏନାହିଁ ।

କାଳିଦାସଙ୍କ ବିରଚିତ ପ୍ରଣୟପ୍ରଧାନ ଖଣ୍ଡକାବ୍ୟ 'ମେଘଦୂତ' ଭାରତୀୟ ତଥା ପୃଥିବୀ ସାହିତ୍ୟର ଏକ ମହାନ ଗ୍ରନ୍ଥ । ଏହା ପୂର୍ବ ମେଘ, ଉତ୍ତର ମେଘ ଭେଦରେ ଦୁଇଭାଗରେ ବିଭକ୍ତ । ଏହାର ମୋଟ ଶ୍ଳୋକ ସଂଖ୍ୟା ୧୧୦ରୁ ୧୨୧ । କର୍ତ୍ତବ୍ୟରେ ଅବହେଳା କରିଥିବା ଯୋଗୁ ଏକବର୍ଷ ପାଇଁ ରାମଗିରିରେ ନିର୍ବାସିତ ହୋଇଥିବା ଜଣେ ଯକ୍ଷ ଅଳକାରେ ରହୁଥିବା ତାହାର ପତ୍ନୀଲାଗି ଝୁରିହୋଇଛି । ବର୍ଷାର ଆଗମନରେ ସେ ଅତିବ ଅଧୀର ହୋଇ ମେଘକୁ ଦୂତଭାବେ ବରଣ କରି ତାହାର ମାଧ୍ୟମରେ ପତ୍ନୀ ନିକଟକୁ ସନ୍ଦେଶ ପ୍ରେରଣ କରିଛି । ସେ କେଉଁ ବାଟଦେଇ ସେଠାକୁ ଯିବ, ତାହା କବି ଯକ୍ଷ ମୁଖରେ ଏଥିରେ ଅଦ୍ଭୁତ ଭାବେ ବର୍ଣ୍ଣନା କରିଅଛନ୍ତି । ଏହା କାବ୍ୟର 'ପୂର୍ବମେଘ' ନାମରେ ନାମିତ ପ୍ରଥମାର୍ଦ୍ଧରେ ସ୍ଥାନ ପାଇଛି । କାବ୍ୟର ଦ୍ୱିତୀୟ ଭାଗରେ ଯକ୍ଷ ଅଳକାପୁରୀର ଅଲୌକିକ ଶୋଭା ବର୍ଣ୍ଣନା କରିଛି ଓ ପ୍ରଣୟିନୀକୁ କେଉଁ ସନ୍ଦେଶ ଦେବ, ତାହା ବର୍ଣ୍ଣନା କରିଛି । ଏହି କ୍ଷୁଦ୍ରରଚନା ସମ୍ପର୍କରେ ୫୦ରୁ ଅଧିକ ଟୀକାପ୍ରଣୀତ ହୋଇଥିବା

ଯୋଗୁ ଏହା ଯେ ବିଶେଷ ଜନପ୍ରିୟ ହୋଇଥିଲା, ତାହା ସହଜରେ ଜଣା- ଯାଏ । ସଂସ୍କୃତ ସାହିତ୍ୟରେ 'ମେଘଦୂତ' ଆଦର୍ଶରେ ବହୁ ଦୂତକାବ୍ୟ ପ୍ରଣୀତ ହୋଇଅଛି । ସେମାନଙ୍କ ମଧ୍ୟରୁ ଧୋୟୀଙ୍କ ରଚିତ 'ପବନଦୂତ', ରୂପଗୋସ୍ୱାମୀଙ୍କ 'ହଂସଦୂତ' ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।

ଭାରତର ଦକ୍ଷିଣପୂର୍ବରୁ ଆରମ୍ଭକରି ମଧ୍ୟଭାରତ ଓ ହିମାଳୟରେ ଅବସ୍ଥିତ କୈଳାସ ପର୍ବତୋପରି ଅଳକା ନଗରୀ ପର୍ଯ୍ୟନ୍ତ ବିଭିନ୍ନ ନଦୀ ପର୍ବତ, ଶସ୍ୟକ୍ଷେତ୍ର ପ୍ରଭୃତିର ବର୍ଣ୍ଣନାକୁ ଏହି ଖଣ୍ଡକାବ୍ୟର ଅନ୍ତର୍ଭୁକ୍ତ କରି କବି ତାହାଙ୍କ ଭାରତର ଭୂଗୋଳ ସମ୍ପର୍କୀୟ ପ୍ରତ୍ୟକ୍ଷ ଜ୍ଞାନର ଯେଉଁ ଅମଳିନ ପରିଚୟ ଦେଇଯାଇଛନ୍ତି, ତାହାର ପଟାନ୍ତର ନାହିଁ । ଏହି କାବ୍ୟରଚନାର ସହସ୍ରାଧିକ ବର୍ଷ ପରେ ମଧ୍ୟ ଆମେ ଏହି ଦୃଶ୍ୟାବଳୀ ଦେଖିବାକୁ ପାଇଥାଉ । କହିବା ଅନାବଶ୍ୟକ ଯେ ମହାକବିଙ୍କ ବର୍ଣ୍ଣନା ମାଧ୍ୟମରେ ଏହି ଭୌଗୋଳିକ ବର୍ଣ୍ଣନା ଯେପରି କାବ୍ୟିକ ମହିମାରେ ବିଭୂଷିତ ହୋଇଛି, ତାହା ଅତୁଳନୀୟ । ଏଠାରେ ତାହାର ଦୁଇଟି ମାତ୍ର ଦୃଷ୍ଟାନ୍ତ ଉଲ୍ଲେଖ କରାଯାଇପାରେ । ମାଳ ଉପତ୍ୟକାର ବର୍ଣ୍ଣନା ପ୍ରସଙ୍ଗରେ କୃଷକ ରମଣୀମାନଙ୍କ ବିଷୟ ବର୍ଣ୍ଣନା କରି କବି ଲେଖିଛନ୍ତି—

'ତ୍ୱୟ୍ୟାୟତ୍ତଂ କୃଷିଫଳମିତି ଭ୍ରୂବିଳାସାନଭିଜ୍ଞୈଃ
ପ୍ରୀତି ସ୍ନିଗ୍ଧୈ ର୍ଜନପଦବଧୂ ଲୋଚନୈଃ ପୀୟମାନଃ
ସଦ୍ୟଃ ସୀରୋତ୍କର୍ଷଣ ସୁରଭି କ୍ଷେତ୍ରମାରୁହ୍ୟ ମାଳଂ
କିଞ୍ଚିତ୍ ପଶ୍ଚାଦ୍‌ବ୍ରଜ ଲଘୁଗତିର୍ଭୂୟ ଏ ବୋତ୍ତରେଣ ।

ଅର୍ଥାତ୍ ହେ ମେଘ ! କୃଷିକାର୍ଯ୍ୟର ଫଳ ତୁମର ଅଧୀନ । ଏଣୁ ପ୍ରଣୟ ତଥା ଭ୍ରୂବିଳାସ ଅନଭିଜ୍ଞ କୃଷକ ରମଣୀମାନେ ତୁମକୁ ପିଇଗଲା ଭଳି ଆଖିରେ ଦେଖିବେ । ସଦ୍ୟ କର୍ଷଣ ହୋଇଥିବାଯୋଗୁ ସୁଗନ୍ଧଯୁକ୍ତ ମାଳକ୍ଷେତ୍ର ଉପରେ ଗମନକରି ତୁମେ ପୁଣି ଥରେ ଟିକିଏ ପଛକୁ ଫେରି ଉତ୍ତର ଦିଗକୁ ଗମନ କର । କବିବର ରାଧାନାଥ ଏହାର ପଦ୍ୟାନୁବାଦ ଏହିପରି କରି ଅଛନ୍ତି—

"କ୍ଷମତା ଅଛି ତୋର ଶସ୍ୟ ବର୍ଦ୍ଧନେ
ଏଣୁ କୃଷକବାଳା ସ୍ଥିର ଲୋଚନେ

ଦେଖି ଯେ ତୋ ମୋହନ ଛବି ଆକାଶେ
ଅନଭଙ୍ଗୀ ସରଳା ନେତ୍ର ବିକାଶେ—୧୨୦

ମାଳ କ୍ଷେତ୍ରକୁ ଘନ ! କର ପ୍ରୟାଣ
ହଳକର୍ଷଣ ଜାତ ମୃତ୍ତିକା ଘ୍ରାଣ

ତୋଷିବ ନାସା ତୋର, ତହୁଁ ଉତ୍ତରେ
ଲଘୁଗତି ଗମିବୁ ଶୂନ୍ୟ ସାଗରେ ।"

ତସ୍ୟା ସ୍ତିକ୍ତୈର୍ବନ ଗଜମଦୈର୍ବାସିତଂବାନ୍ତବୃଷ୍ଟି
ର୍ଜମ୍ବୁକୁଞ୍ଜ ପ୍ରତିହତରୟଂ ତୋୟମାଦାୟଗଚ୍ଛେଃ

ଅନ୍ତଃସାରଂ ଘନ ! ତୁଲୟିତୁଂ ନାନିଳଃ ଶକ୍ଷ୍ୟତିତ୍ୱାଂ
ରିକ୍ତଃ ସର୍ବୋ ଭବତି ହି ଲଘୁଃ ପୂର୍ଣ୍ଣତା ଗୌରବାୟ ।

ଅର୍ଥାତ୍ ହେ ମେଘ ! ଜଳବର୍ଷଣ କଲାପରେ ତୁମେ ବନଗଜମାନଙ୍କ ମଦ ଜଳଦ୍ୱାରା ସୁରଭିତ, ଜମ୍ବୁକୁଞ୍ଜଦ୍ୱାରା ପ୍ରତିହତ ବେଗ ନର୍ମଦା ନଦୀର ଜଳକୁ ପାନ କରିଯିବ । ଜଳରେ ପୂର୍ଣ୍ଣହେଲା ପରେ ତୁମକୁ ପବନ ଏଣେ ତେଣେ ଉଡାଇ ପାରିବନାହିଁ । କାରଣ ଯାହା ରିକ୍ତ, ତାହା ଲଘୁତ୍ୱର ଏବଂ ଯାହା ପୂର୍ଣ୍ଣ, ତାହା ଗୌରବର ନିଧାନ । କବି ରାଧାନାଥଙ୍କ ଭାଷାରେ—

ସର୍ବସ୍ୱ ବଳହ୍ରାନହତ ଆଦର
ବଳୀ ଲଭଇ ମାନଯିତ ଭଦର ।

କାଳିଦାସ ତାହାଙ୍କ ପ୍ରିୟ, ସୁନ୍ଦର ଉଜ୍ଜୟିନୀ ସହର ଓ ସେହି ସ୍ଥାନର ସୁନ୍ଦରୀ ରମଣୀମାନଙ୍କୁ ଦେଖିବା ମେଘର ଅବଶ୍ୟ କର୍ତ୍ତବ୍ୟ, ଏହା ବର୍ଣ୍ଣନା କରି ଲେଖିଛନ୍ତି—

ବକ୍ରଃ ପନ୍ଥା ଯଦ୍ୟପି ଭବତଃ ପ୍ରସ୍ଥିତ ସ୍ୟୋତ୍ତରାଶାଂ
ସୌଧୋତ୍ସଙ୍ଗ ପ୍ରଣୟ ବିମୁଖୋ ମା ସ୍ମ ଭୂରୁଜ୍ଜୟିନ୍ୟାଃ

ବିଦ୍ୟୁଦ୍ଦାମ ସ୍ଫୁରିତ ଚକିତୈ ସ୍ତତ୍ର ପୌରାଙ୍ଗନାନାଂ
ଲୋଳାପାଙ୍ଗେ ଯଦି ନରମସେ ଲୋଚନୈ ର୍ବଞ୍ଚିତୋଽସି-୨୮ ।

ଅର୍ଥାତ୍ ହେ ମେଘ ! ଉତ୍ତର ଦିଗରେ ଥିବା ଅଳକାପୁରୀ ଆଡକୁ ଯିବାବେଳେ ସିଧା ପଥବଙ୍କେ ବୁଲିଣି ହେଲେହେଁ ତୁମର ଉଜ୍ଜୟିନୀ ରାଜପ୍ରାସାଦକୁ ଦେଖିବାରେ ବିମୁଖ ହେବା ଉଚିତ୍ ହେବନାହିଁ । କାରଣ ସେହି ନଗରୀରେ ତୁମର ବିଦ୍ୟୁତ୍ ପ୍ରକାଶଯୋଗୁ ଭୟଭୀତ ହେଉଥିବା ବନିତାମାନଙ୍କ ଚଞ୍ଚଳ ଅପାଙ୍ଗକୁ ଯଦି ତୁମେ ନ ଦେଖିବ, ତା'ହେଲେ ତୁମେ ନିଶ୍ଚୟ ପ୍ରତାରିତ, ତୁମର ଜନ୍ମ ମଧ୍ୟ ବ୍ୟର୍ଥ ।

ଏହିପରି ଭୌଗୋଳିକ ବର୍ଣ୍ଣନା ମାଧ୍ୟମରେ ହିଁ କବିଙ୍କ ରସ ସୃଷ୍ଟି ଓ କଳ୍ପନା ବିଳାସର ଉତ୍କର୍ଷ ସମ୍ପାଦିତ ହେବା ସଙ୍ଗେ ସଙ୍ଗେ ଏହା ତାହାଙ୍କ କାବ୍ୟକୁ ଅନୁପମ ଗୌରବ-ମଣ୍ଡିତ କରିଅଛି ।

କାଳିଦାସଙ୍କ ରଚିତ ପଞ୍ଚଅଙ୍କବିଶିଷ୍ଟ 'ମାଳବିକାଗ୍ନି ମିତ୍ର' ନାଟକରେ ରାଜା ଅଗ୍ନିମିତ୍ର ଓ ରାଜକୁମାରୀ ମାଳବିକାଙ୍କ ପ୍ରଣୟପ୍ରସଙ୍ଗ ରୂପାୟିତ । ମାଳବିକା ଛଦ୍ମବେଶରେ ରାଜା ଅଗ୍ନିମିତ୍ରଙ୍କ ଅନ୍ତଃପୁରରେ ଥିବାବେଳେ ରାଜା ତାହାପ୍ରତି ଆକୃଷ୍ଟହୋଇ ତାକୁ ଆଲିଙ୍ଗନ କରିଛନ୍ତି । ସାନରାଣୀ ଇରାବତୀ ଏହି ଦୃଶ୍ୟରେ କ୍ରୁଦ୍ଧହୋଇ ରାଜାଙ୍କୁ ଅପମାନିତ କରିଛନ୍ତି । ବଡ଼ରାଣୀ ଧାରିଣୀ ମାଳବିକାକୁ ବନ୍ଦୀକରି ରଖିଛନ୍ତି । ଚତୁର ବିଦୂଷକର ସହାୟତାରେ ରାଜା ଓ ମାଳବିକାଙ୍କ ମଧ୍ୟରେ ଆଉଥରେ ସାକ୍ଷାତ ହୋଇଛି; ମାତ୍ର ଇରାବତୀଙ୍କ ଈର୍ଷାତୁର ବ୍ୟବହାରଯୋଗୁଁ ସେମାନେ ବେଶି ସମୟ ଏକତ୍ର ରହିପାରି ନାହାନ୍ତି । ପ୍ରସଙ୍ଗକ୍ରମେ ମାଳବିକାର ପ୍ରକୃତ ପରିଚୟ ଜଣାପଡ଼ିଯାଇଛି । ଧାରିଣୀଙ୍କ ପୁତ୍ର ଯବନମାନଙ୍କୁ ଜୟ କରିଥିବା ସମ୍ବାଦ ଶୁଣି ଆପଣାର ପ୍ରତିଶ୍ରୁତି ରକ୍ଷାକରି ରାଜାଙ୍କ ସହ ମାଳବିକାର ବିବାହରେ ରାଣୀ ସମ୍ମତି ପ୍ରଦାନ କରିଛନ୍ତି । ଇରାବତୀର କ୍ରୋଧ ମଧ୍ୟ ଶାନ୍ତ ହୋଇଯାଇଛି । ଏହିପରି ସୁଖାନ୍ତକ ପରିବେଶରେ ନାଟକଟି ଶେଷ ହୋଇଛି ।

ସଂସ୍କୃତରେ ରଚିତ ନାଟକମାନଙ୍କ ମଧ୍ୟରେ କାଳିଦାସଙ୍କ ଶକୁନ୍ତଳା ସର୍ବାଧିକ ପ୍ରସିଦ୍ଧ ତଥା ଜନପ୍ରିୟ । ପୃଥିବୀର ବହୁ ବିଶିଷ୍ଟ ଲେଖକ ଓ ମନୀଷୀ ଏହାର ଉଚ୍ଛ୍ୱସିତ ପ୍ରଶଂସା କରିଯାଇଛନ୍ତି । ଗେଟେଙ୍କ ଭାଷାରେ—"ଯଦି ନବବର୍ଷର କୁସୁମ ଓ ଏହାର ପରିଣତ ଫଳ, ସ୍ୱର୍ଗ ଓ

ମର୍ତ୍ତ୍ୟର ଏକତ୍ର ସମାବେଶ ଦେଖିବାକୁ ଚାହଁ, ତେବେ ତାହା ଶକୁନ୍ତଳା-ଠାରେ ହିଁ ମିଳିବ ।"(ୡ)

ମହାଭାରତ ଓ ପଦ୍ମପୁରାଣର ଏକ ଉପାଖ୍ୟାନକୁ ଅବଲମ୍ବନ କରି କବି ତାହାକୁ ନାଟ୍ୟରୂପ ଦେବାରେ ଅପୂର୍ବ କୃତିତ୍ୱ ଦର୍ଶାଇ ଅଛନ୍ତି । ମୂଳ କଥାବସ୍ତୁରେ କବି ଆପଣାର ପରିକଳ୍ପନାନୁଯାୟୀ କେତେକ ନୂତନ ପ୍ରସଙ୍ଗ ସଂଯୋଜନା କରିଛନ୍ତି । ଏହା ହେଉଛି ଦୁର୍ବାସାଙ୍କ ଅଭିଶାପ ଓ ମୁଦ୍ରିକା ପ୍ରସଙ୍ଗ । କେତେକ ଆଲୋଚକଙ୍କ ମତରେ କାଳିଦାସ ମୁଦ୍ରିକା ପ୍ରସଙ୍ଗଟି କଳିହାର୍ଗ ଜାତକରୁ ଗ୍ରହଣ କରିଅଛନ୍ତି । ଯାହାହେଉ ଏହି ସୁପ୍ରସିଦ୍ଧ ନାଟକର ସଂକ୍ଷିପ୍ତ କଥାବସ୍ତୁ ଏହିପରି— 'ରାଜା ଦୁଷ୍ମନ୍ତ ଥରେ ଶିକାରକୁ ଯାଇଥିବାବେଳେ କଣ୍ୱ ମୁନିଙ୍କ ପାଳିତା କନ୍ୟା ଶକୁନ୍ତଳାଙ୍କୁ ଆଶ୍ରମରେ ଦେଖି ବିମୋହିତ ହୋଇଗଲେ । ଶକୁନ୍ତଳା ମଧ୍ୟ ଏହି ସୁପୁରୁଷଙ୍କ ପ୍ରତି ହେଲେ ଆକୃଷ୍ଟ । ଗାନ୍ଧର୍ବରୀତିରେ ଉଭୟଙ୍କ ବିବାହ ସମ୍ପାଦିତ ହୋଇଗଲା । ପ୍ରଣୟ ଓ ପରିଣୟର ନିଦର୍ଶନ ସ୍ୱରୂପ ରାଜା ତାହାଙ୍କ ମୁଦ୍ରିକାଟି ଶକୁନ୍ତଳାଙ୍କୁ ଦେଇ ଯଥାଶୀଘ୍ର ତାଙ୍କୁ ରାଜଭବନକୁ ନେଇଯିବେ ବୋଲି କହି ରାଜଧାନୀକୁ ଫେରିଗଲେ । ଇତ୍ୟବସରରେ ଦିନେ ଶକୁନ୍ତଳା ପ୍ରଥମ ପ୍ରଣୟର ଭାବାତିଶଯ୍ୟରେ ରାଜାଙ୍କ ଭାବନାରେ ତନ୍ମୟ ଥିବାବେଳେ ସେହି ଆଶ୍ରମରେ ଋଷି ଦୁର୍ବାସା ଉପସ୍ଥିତ ହୋଇଛନ୍ତି; ମାତ୍ର ଶକୁନ୍ତଳା ତାହାଙ୍କ ଆହ୍ୱାନ ଶୁଣି-ପାରି ନାହାନ୍ତି କମ୍ବା ଅତିଥିଭାବେ ତାଙ୍କୁ ଯଥୋଚିତ ସ୍ୱାଗତ କରିପାରି-ନାହାନ୍ତି । କ୍ରୋଧୀ ଦୁର୍ବାସା ଏଥିରେ ଅପମାନିତ ହୋଇ ଶକୁନ୍ତଳାକୁ ଅଭିଶାପ ଦେଇଛନ୍ତି—"ତୁ ଯାହା କଥା ଭାବି ତୋର କର୍ତ୍ତବ୍ୟରେ ଅବହେଳା କରିଛୁ, ସେ ତୋତେ ଚିହ୍ନିପାରିବ ନାହିଁ ।" ଶକୁନ୍ତଳାର ଦୁଇସଖୀ ଦୁର୍ବାସାଙ୍କୁ ଶକୁନ୍ତଳାର ଅପରାଧ କ୍ଷମା କରିବାକୁ ବହୁତ ଅନୁନୟ କରିବାରୁ ଦୁର୍ବାସା କିଞ୍ଚିତ ଶାନ୍ତ ହୋଇ କହିଛନ୍ତି—"ଯଦି ଶକୁନ୍ତଳା ଆପଣାର ପରିଚୟସୂଚକ କୌଣସି ସଙ୍କେତ ଦର୍ଶାଇ ପାରିବ

---

(e) The young year's blossoms and the fruits of it's decline" and the earth and heaven combined in one name is Sakuntala.

ତେବେ ତାର ପ୍ରଣୟୀ ତାଙ୍କୁ ଚିହ୍ନି ପାରିବେ ।" ଏହି ଘଟଣା ସବୁ ସଂଘଟିତ ହେବାବେଳେ କଣ୍ୱ ଆଶ୍ରମରେ ଅନୁପସ୍ଥିତ ଥିଲେ । ଆଶ୍ରମକୁ ଫେରି ସେ ଶକୁନ୍ତଳାଙ୍କ ପରିଣୟ ବିଷୟ ଅବଗତହେଲେ ଓ କେତେଦିନ ପରେ ଦୁଇଜଣ ଋଷିକୁମାରଙ୍କ ସହ ଶକୁନ୍ତଳାଙ୍କୁ ଦୁଷ୍ମନ୍ତଙ୍କ ନିକଟକୁ ପ୍ରେରଣ କରିଥିଲେ ।

ଶକୁନ୍ତଳା ଦୁଷ୍ମନ୍ତଙ୍କ ଭବନରେ ଉପସ୍ଥିତ ହେଲେ; ମାତ୍ର ରାଜା ଶକୁନ୍ତଳାଙ୍କୁ ଚିହ୍ନି ପାରିଲେ ନାହିଁ । ଦୁର୍ବାସାଙ୍କ ଅଭିଶାପର ପରିଣାମ ଫଳରେ ଶକୁନ୍ତଳା ସହ ତାଙ୍କର ଅତୀତ ସମ୍ପର୍କ ବିଷୟ ସେ ସମ୍ପୂର୍ଣ୍ଣ ଭୁଲିଗଲେ । ଶକୁନ୍ତଳା ମଧ୍ୟ ପ୍ରଣୟର ସଙ୍କେତ (ଅଭିଜ୍ଞାନ) ମୁଦ୍ରିକାଟିକୁ ଦର୍ଶାଇ ପାରିଲେନାହିଁ । କାରଣ ଯାତ୍ରା କରୁଥିବା ସମୟରେ ବାଟରେ ଅସାବଧାନତାବଶତଃ ମୁଦ୍ରିକାଟି ହଜିଯାଇଥିଲା । ତେଣୁ ରାଜା ତାଙ୍କୁ ପତ୍ନୀରୂପେ ଗ୍ରହଣ କରିବାକୁ ଅସ୍ୱୀକାର କଲେ । ସ୍ୱାମୀଙ୍କଦ୍ୱାରା ପ୍ରତ୍ୟାଖ୍ୟାତ ହେବାପରେ ଶକୁନ୍ତଳା ଯାଇ ଅନ୍ୟତ୍ର ଦୁଃଖରେ କାଳଯାପନ କରିଥିଲେ ।

ଏହାର କେତେଦିନ ପରେ ହଜିଥିବା ମୁଦ୍ରିକାଟି ଦୈବାତ୍ ରାଜାଙ୍କ ହସ୍ତଗତ ହେଲା । ଏହାକୁ ଦେଖିବାମାତ୍ରେ ଅତୀତର ଶକୁନ୍ତଳାଙ୍କ ପ୍ରଣୟସ୍ମୃତି ରାଜାଙ୍କ ମନୋରାଜ୍ୟରେ ଉଦିତ ହୋଇଥିଲା । ଦୁଃଖ ଓ ଅନୁତାପରେ ସେ ଜର୍ଜରିତ ହୋଇପଡ଼ିଲେ । ଇନ୍ଦ୍ରଙ୍କ ଅନୁରୋଧ କ୍ରମେ ସେ ରାକ୍ଷସମାନଙ୍କ ସହ ଯୁଦ୍ଧ କରିବା ଲାଗି ସ୍ୱର୍ଗକୁ ଯାଇଥିଲେ ଓ ସେଠାରୁ ଫେରିବାବେଳେ ଜନୈକ ଋଷିଙ୍କ ଆଶ୍ରମରେ ଆପଣାର ପୁତ୍ର ଓ ପତ୍ନୀ ଶକୁନ୍ତଳାଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା । ଏହିପରି ଭାବେ ପ୍ରେମିକ ପ୍ରେମିକା ବହୁବର୍ଷ ପରେ ପୁନର୍ମିଳିତ ହୋଇଛନ୍ତି ।

ସୂକ୍ତି—

୧ । କାମାର୍ତ୍ତା ହି ପ୍ରକୃତି କୃପଣା ଶ୍ଚେତନା ଚେତନେଷୁ (ମେଘ-୫) (କାମାର୍ତ୍ତ ବ୍ୟକ୍ତି ଚେତନ ଓ ଅଚେତନ ମଧ୍ୟରେ ପାର୍ଥକ୍ୟ ନିରୂପଣ କରିବାକୁ ଅକ୍ଷମ) ।

୨ । ରିକ୍ତଃ ସର୍ବୋ ଭବତି ହି ଲଘୁଃ ପର୍ଣ୍ଣତା ଗୌରବାୟ (ମେଘ-୨୦) (ସବୁ ବିଷୟରେ ପୂର୍ଣ୍ଣତା ଗୌରବର କାରଣ । ରିକ୍ତତା ବା ଅପୂର୍ଣ୍ଣତା ନଶ୍ଚୟ ଅଗୌରବର ବିଷୟ) ।

୩ । କେ ବା ନ ସ୍ୟୁଃ ପରିଭବ ପଦଂ ନିଷ୍ଫଳା ରମ୍ଭଯତ୍ନାଃ (ମେଘ-୫୫) (ନିଷ୍ଫଳ କର୍ମରେ ପ୍ରବୃତ୍ତ ହେଲେ କିଏ ବା ବ୍ୟର୍ଥତା ଲଭ-ନ କରିବ ?)

୪ । ପ୍ରାୟଃ ସର୍ବୋ ଭବତି କରୁଣାବୃତ୍ତିରାର୍ଦ୍ରାନ୍ତରାତ୍ମା (ମେଘ-୩୨) (ଯେଉଁମାନଙ୍କ ଅନ୍ତରାତ୍ମା କୋମଳ, ସେମାନେ ସାଧାରଣତଃ କରୁଣାପ୍ରବଣ ହୋଇଥାନ୍ତି) ।

୫ । ନୀଚୈର୍ଗଚ୍ଛତ୍ୟୁ ପରି ଚ ଦଶା ଚକ୍ରନେମି କ୍ରମେଣ (ମେଘ-୪୮) (ମନୁଷ୍ୟର ଅବସ୍ଥା ଚକ୍ରଧାରାଭଳି, କେତେବେଳେ ତଳକୁ ପଡ଼େ, ପୁଣି କେତେବେଳେ ଉପରକୁ ଉଠିଯାଏ) ।

୬ । ଯାଚ୍ଞା ମୋଘା ବରମଧିଗୁଣେ ନାଧମେ ଲବ୍ଧକାମା (ମେଘ-୬) (ମହତ୍ ଲୋକକୁ ପ୍ରାର୍ଥନା କରି ନ ପାଇଲେ ବି ଦୁଃଖ ନାହିଁ ଶ୍ରେଷ୍ଠଲୋକ ପାଖରେ ପ୍ରାର୍ଥନା ପୂର୍ଣ୍ଣ ହେଲେ ବି ତାହା କାମ୍ୟ ନୁହେଁ) ।

୭ । ଏକୋହି ଦୋଷୋ ଗୁଣ ସନ୍ନିପାତେ ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କଃ ( କୁମାର-୧-୩ ) (ଚନ୍ଦ୍ରକିରଣସମୂହ ମଧ୍ୟରେ ତାର କଳଙ୍କ ଭଳି ଗୁଣବାନ ବ୍ୟକ୍ତିର ଗୁଣରାଶି ମଧ୍ୟରେ ତାହାର ସାମାନ୍ୟ ଦୋଷ ବୁଡ଼ିଯାଏ) ।

୮ । ପ୍ରିୟେଷୁ ସୌଭାଗ୍ୟଫଳା ହି ଚାରୁତା (କୁମାର-୫-୧) (ପ୍ରିୟତମର ଅନୁଗ୍ରହ ଲାଭ ହିଁ ରୂପର ସାର୍ଥକତା) ।

୯ । ନ କେବଳଂ ଯୋ ମହତୋ ପଭାଷତେ ଶୃଣୋତି ତସ୍ମାଦପି ଯଃ ସ ପାପଭାକ୍ (କୁମାର-୫-୮୩) (ମହତ ବ୍ୟକ୍ତିଙ୍କ ଯେ ନିନ୍ଦାକରେ, ସେ କେବଳ ପାପଭାଗୀ ନୁହେଁ, ଯେ ତାହାକୁ ଶୁଣେ ସେ ମଧ୍ୟ) ।

୧୦ । କମିବ ହି ମଧୁରାଣାଂ ମଣ୍ଡନଂ ନା କୃତୀନାମ୍ (ଶକୁନ୍ତଳା) (ଯାହାର ଆକୃତି ସୁନ୍ଦର, ତାର ଅଳଂକାର କ'ଣ ହେବ ?)

୧୧ । ଗୁଣବତେ କନ୍ୟକା ପ୍ରତିପାଦନୀୟା (ଶକୁନ୍ତଳା) (ଗୁଣବାନକୁ କନ୍ୟାଦାନ କରିବା ଉଚିତ)।

୧୨ । କଷ୍ଟଂ ଖଲ୍ୱନପତ୍ୟତା (ଶକୁନ୍ତଳା) (ନିଃସନ୍ତାନ ହେବା ବାସ୍ତବିକ କଷ୍ଟ ଦାୟକ) ।

୧୩ । ଭବନ୍ତି ନମ୍ରାସ୍ତରବଃ ଫଳାଗମୈଃ (ଶକୁନ୍ତଳା) (ଫଳ ଫଳିଲେ ଗଛମାନେ ତଳକୁ ନଇଁ ପଡନ୍ତି) ।

୧୪ । ସର୍ବ କାନ୍ତମାତ୍ମୀୟଂ ପଶ୍ୟତି (ଶକୁନ୍ତଳା) (ସମସ୍ତେ ନିଜ ଲୋକକୁ ସୁନ୍ଦର ରୂପରେ ଦେଖନ୍ତି) ।

୧୫ । ଅତିସ୍ନେହଃ ପାପଶଙ୍କୀ (ଶକୁନ୍ତଳା) ( ଅତି ସ୍ନେହ ଯେଉଁଠି ସେଇଠି ଆମେ ଅଧିକ ଆଶଂକା କରୁ)।

୧୬ । ଅନୁରାଗୋଽନୁରାଗେଣ ପରୀକ୍ଷିତନ୍ୟବ (ମାଳବିକା ୩ୟ-୧୮) ଅନୁରାଗକୁ ଅନୁରାଗଦ୍ୱାରା ପରୀକ୍ଷା କରାଯାଏ ।

୧୭ । ପଦଂ ହି ସର୍ବତ୍ର ଗୁଣୈର୍ନିଧୀୟତେ (ରଘୁବଂଶ) (ଗୁଣ ଯୋଗୁ ହିଁ ପଦମର୍ଯ୍ୟାଦା ମିଳେ) ।

୧୮ । ପ୍ରତିବଧ୍ନାତି ହି ଶ୍ରେୟଃ ପୂଜ୍ୟପୂଜା-ବ୍ୟତିକ୍ରମଃ (ରଘୁବଂଶ) (ପୂଜ୍ୟପୂଜାରେ ବ୍ୟତିକ୍ରମ ହେଲେ ପ୍ରାୟଶଃ ଶ୍ରେୟଲାଭ ବାଧାପ୍ରାପ୍ତ ହୁଏ) ।

୧୯ । ଭିନ୍ନରୁଚିର୍ହି ଲୋକଃ (ରଘୁବଂଶ) (ଲୋକମାନଙ୍କର ରୁଚି ଭିନ୍ନ ଭିନ୍ନ ହୋଇଥାଏ) ।

୨୦ । ଅହମପି ଯଦା ଶିଖରିଣୀ ରସାଳାଂଚ ନଲଭେ ତଦା ତଦେବ ଚନ୍ଦ୍ରପୁଷ୍ପା ସାଦୟାମି (ବିକ୍ରମ-୩-୧୯୪) (ମୁଁ ମଧ୍ୟ ଶିଖରିଣୀ ଓ ରସନାଭିଳ ସୁମିଷ୍ଟଦ୍ରବ୍ୟ ନପାଇଲାବେଳେ ସେ ବସ୍ତୁରେ ଚନ୍ଦ୍ରା କରି ଆନନ୍ଦ ପାଏ) ।

୨୧ । ଅହୋ ସର୍ବାବସ୍ଥାସୁ ଚାରୁତା ଶୋଭାନ୍ତର ପୁଷ୍ୟତି (ମାଳବିକା-୨।୫୭) (ସୌନ୍ଦର୍ଯ୍ୟ ସବୁ ଅବସ୍ଥାରେ ଅତିରିକ୍ତ ଶୋଭାମୟ ହୋଇଥାଏ) ।

ବିକ୍ରମୋର୍ବଶୀୟ—ଏହା କାଳିଦାସଙ୍କ ରଚିତ ଏକ କାଳ୍ପନିକ ନାଟକ । ସ୍ୱର୍ଗର ରୂପସୀ ଉର୍ବଶୀଙ୍କୁ ମର୍ତ୍ତ୍ୟର ରାଜା ପୁରୁରବା ସ୍ୱୀୟ ବିକ୍ରମ ଦ୍ୱାରା ପତ୍ନୀରୂପେ ଲାଭ କରିଥିବାରୁ କବି ଏହି ନାଟକର ଏପରି ନାମକରଣ କରିଛନ୍ତି ।

ରାଜା ପୁରୁରବା ରଥରେ ଫେରୁଥିବା ସମୟରେ ହେମକୂଟ ପର୍ବତରେ ଅପ୍ସରାମାନଙ୍କ ଆକୁଳ କ୍ରନ୍ଦନ ଶୁଣି ସେଠାରେ ପହଞ୍ଚି ବୁଝିଲେ ଯେ କୌଣସି ରାକ୍ଷସ ଉର୍ବଶୀ ଓ ଚିତ୍ରରେଖାଙ୍କୁ ଅପହରଣ କରିନେଇଛି । ରାଜା ରାକ୍ଷସର ପଶ୍ଚାଦ୍ଧାବନ କରି ସେ ଦୁହିଁଙ୍କୁ ଉଦ୍ଧାର କଲେ । ସେତେବେଳେ ଉର୍ବଶୀ ମୂର୍ଚ୍ଛିତା । ଚେତନ୍ ହେବାପରେ ସେ ରାଜାଙ୍କ ପ୍ରତି ପ୍ରେମାସକ୍ତ ହୋଇପଡ଼ନ୍ତି ଓ ରାଜା ମଧ୍ୟ ତାହାକୁ ଭଲପାଇ ବସିଛନ୍ତି । ରାଜା ଉର୍ବଶୀ ଓ ଚିତ୍ରରେଖାଙ୍କୁ ଆଣି ତାହାଙ୍କ ସଙ୍ଗିନୀ ଓ ଚିତ୍ରରଥ ଗନ୍ଧର୍ବଙ୍କ ନିକଟରେ ପହଞ୍ଚାଇ ଦେଇ ଆପଣା ରାଜ୍ୟକୁ ଫେରିଯାଇଛନ୍ତି ।

ରାଜଭବନକୁ ଫେରିବା ପରେ ଉର୍ବଶୀ ବିରହରେ ରାଜା ଜର୍ଜରିତ ହୋଇପଡ଼ିଲେ । ଦିନେ ପ୍ରମୋଦ ବନରେ ସେ ଆପଣାର ମର୍ମକଥା ବିଦୂଷକ ନିକଟରେ ବ୍ୟକ୍ତ କରିଛନ୍ତି । ଇତ୍ୟବସରରେ ଉର୍ବଶୀ ଚିତ୍ରରେଖା ସହ ଗୋପନରେ ସେଠାରେ ଉପସ୍ଥିତ ହୋଇଛନ୍ତି ଓ ରାଜାଙ୍କ ମନୋଭାବ ବିଷୟ ଜାଣି ଭୂର୍ଜପତ୍ରରେ ଏକ ପ୍ରେମ କବିତା ଲେଖି ତାହାଙ୍କ ସମ୍ମୁଖକୁ ପକାଇ ଦେଇଛନ୍ତି । ଏହାପରେ ସେ ରାଜାଙ୍କ ସମ୍ମୁଖରେ ଆସି ଉପସ୍ଥିତ ହେଲେ; ମାତ୍ର ସଙ୍ଗେ ସଙ୍ଗେ ତାଙ୍କୁ ସ୍ୱର୍ଗକୁ ନେଇଯିବାଲାଗି ଇନ୍ଦ୍ରଙ୍କ ଦୂତ ଆସି ସେଠାରେ ପହଞ୍ଚିଗଲା । ଉର୍ବଶୀ ବାଧ୍ୟ ହୋଇ ସ୍ୱର୍ଗକୁ ଫେରିଯାଇଛନ୍ତି । ଏହାପରେ ରାଣୀ ସେଠାରେ ଉପସ୍ଥିତ ହୋଇ ଭୂର୍ଜପତ୍ରରେ ଲିଖିତ କବିତାଟି ପାଇ ରାଜାଙ୍କ ଆସକ୍ତି ବିଷୟରେ ଅବହିତ ହୋଇ ତାଙ୍କୁ ଭର୍ତ୍ସନା କରିଛନ୍ତି ।

ଏଣେ ସ୍ୱର୍ଗରେ ଅଭିନୟ କାଳରେ ଭ୍ରମବଶତଃ ପୁରୁରବାଙ୍କ ନାମ ଉଚ୍ଚାରଣ କରିବାରୁ ଭରତ ଉର୍ବଶୀଙ୍କୁ ଅଭିଶାପ ଦେଇଛନ୍ତି । ଏହା ହେତୁରୁ ଚିରଦିନ ପାଇଁ ସେ ସ୍ୱର୍ଗରୁ ନିର୍ବାସିତ ହେବେ; ମାତ୍ର ଇନ୍ଦ୍ର ତା ପ୍ରତି ସଦୟ ହୋଇଛନ୍ତି । ସ୍ୱାମୀ ପୁରୁରବା ତାହାର ଗର୍ଭଜାତ ସନ୍ତାନଙ୍କୁ ନ ଦେଖିବା ପର୍ଯ୍ୟନ୍ତ ସେ ତାଙ୍କସହ ମର୍ତ୍ତ୍ୟରେ ରହିପାରିବ; କନ୍ତୁ ଏହି ଆଦେଶ ଦେବାରୁ ଉର୍ବଶୀ ମର୍ତ୍ତ୍ୟକୁ ଆସିଛି ଓ ପୁରୁରବାଙ୍କ ସହ ମଣିହର୍ମ୍ୟରେ ବାସ କରିଛି । ରାଣୀ ମଧ୍ୟ ରାଜାଙ୍କର ଏହି ସମ୍ପର୍କକୁ ସ୍ୱୀକାର କରିଛନ୍ତି ।

ରାଜା ଉର୍ବଶୀସହ ଗନ୍ଧମାର୍ଦ୍ଦନ ପର୍ବତରେ ବିହାର କରୁଥିବା ସମୟରେ ଉର୍ବଶୀ ଏକଦା ରାଗିକରି ନିକଟବର୍ତ୍ତୀ କୁମାରବନକୁ ଚାଲି-ଗଲେ । ଏହି ବନର ପ୍ରଭାବ ଯୋଗୁଁ ସେ ଏକ ଲତାରେ ପରିଣତ ହୋଇ-ଯାଇଛନ୍ତି ।

ରାଜା ଉର୍ବଶୀଙ୍କ ବିରହରେ ଅଧୀର; ଉନ୍ମତ୍ତଭାବେ ତାଙ୍କୁ ଇତସ୍ତତଃ ଖୋଜି ଶେଷରେ ଏକ ମଣି ସାହାଯ୍ୟରେ ତାଙ୍କୁ ନାରୀରୂପେ ଫେରି ପାଇଛନ୍ତି ଓ ରାଜଭବନକୁ ଫେରି ଆସିଛନ୍ତି; ମାତ୍ର ସେଇ ଦୁର୍ଲଭ ମଣିଟିକୁ ଏକ ପକ୍ଷୀ ଅପହରଣ କରିନେଲା । ସେହି ପକ୍ଷୀଟିକୁ ମାରି ମଣିଟିକୁ ଉଦ୍ଧାରକରି ରାଜାଙ୍କ ନିକଟକୁ ଅଣାଗଲା; ମାତ୍ର ପକ୍ଷୀ ଦେହରେ ଲାଗିଥିବା ଶରରେ ଆପଣା ପୁତ୍ରର ନାମ "ଆୟୁଷ" ଲେଖାଥିବା ଦେଖି ରାଜା ବିସ୍ମିତ ହୋଇଗଲେ । କାରଣ ଉର୍ବଶୀଙ୍କ ଗର୍ଭରେ ତାଙ୍କର କୌଣସି ପୁତ୍ର ଜାତ ହୋଇଥିବା ବିଷୟ ତାଙ୍କୁ ଜଣାନଥିଲା । ଏହି ସମୟରେ ଜଣେ ତାପସୀ ତାହାଙ୍କୁ ପୁତ୍ର 'ଆୟୁଷ'କୁ ଆଣି ଆସି ସେଠାରେ ଉପସ୍ଥିତ ହେଲେ । ସେ ଚ୍ୟବନ ମହର୍ଷିଙ୍କ ଆଶ୍ରମରୁ ଆଗତ । ଶିକ୍ଷା ସମାପ୍ତ ହେବାପରେ ମହର୍ଷି ତାହାକୁ ଉର୍ବଶୀଙ୍କ ନିକଟକୁ ପଠାଇଛନ୍ତି ବୋଲି ଉର୍ବଶୀଙ୍କୁ କହିଲା । ତାପସୀ ବିଦାୟ ନେବାପରେ ଉର୍ବଶୀ ରାଜାଙ୍କ ନିକଟରେ ପ୍ରକୃତ କଥା ପ୍ରକାଶ କରିଛନ୍ତି । ରାଜପୁତ୍ରଙ୍କୁ ଦେଖିଲେ ସେ ତାଙ୍କଠାରୁ ବିଦାୟ ନେବାକୁ ବାଧ୍ୟ ହେବେ । ସେଥିପାଇଁ ବହୁବର୍ଷ ପୂର୍ବେ ରାଜାଙ୍କ ଅନୁପସ୍ଥିତିରେ ପୁତ୍ର ଜାତ ହେବା ସଙ୍ଗେ ସଙ୍ଗେ ତାହାକୁ ନେଇ ଚ୍ୟବନ ଋଷିଙ୍କ ଆଶ୍ରମରେ ରଖିଥିଲେ । ଇନ୍ଦ୍ରଙ୍କ ପୂର୍ବ ନିର୍ଦ୍ଦେଶକୁ ସ୍ମରଣ କରି ରାଜାଙ୍କଠାରୁ ବିଦାୟ ନେଇ ଉର୍ବଶୀ ସ୍ୱର୍ଗପୁରକୁ ଯିବାକୁ ଉଦ୍ୟତା

ହେଲେ । ରାଜା ଏଭଳି ପରିସ୍ଥିତିରେ ଦୁଃଖରେ ଅଭିଭୂତ ହୋଇଗଲେ ଓ ଉର୍ବଶୀଙ୍କ ବିଚ୍ଛେଦ ତାଙ୍କ ପକ୍ଷେ ଅସହ୍ୟ ହେବ ରାଜଦଣ୍ଡ ତ୍ୟାଗ କରି ବନକୁ ଯିବାକୁ ମନସ୍ଥ କଲେ । ଏହି ସମୟରେ ଇନ୍ଦ୍ରଙ୍କ ବାର୍ତ୍ତାନେଇ ନାରଦ ଆସି ସେଠାରେ ଉପସ୍ଥିତ ହେଲେ । ସେ ଜଣାଇଲେ ଅସୁରଦମନ ଉଦ୍ଦେଶ୍ୟରେ ପୁନଶ୍ଚ ରାଜାଙ୍କର ସହାୟତା ଆବଶ୍ୟକ । ଏହି ଦୃଷ୍ଟିରୁ ଇନ୍ଦ୍ର ଉର୍ବଶୀକୁ ରାଜାଙ୍କ ସହ ସବୁଦିନ ପାଇଁ ରହିବାକୁ ଅନୁମତି ଦେଇଛନ୍ତି । ଇନ୍ଦ୍ରଙ୍କ ଅଭିଳାଷ ଅନୁସାରେ 'ଆୟୁଷ' ଯୁବରାଜ ପଦରେ ଅଭିଷିକ୍ତ ହେଲେ । ଏହିପରି ଏକ ସୁଖାତ୍ମକ ପରିଣତିରେ ନାଟକଟି ପରିସମାପ୍ତି ହୋଇଛି ।

(୧) କ-ପୁରା କବୀନାଂ ଗଣନା ପ୍ରସଙ୍ଗେ
କନିଷ୍ଠିକାଧିଷ୍ଠିତ କାଳିଦାସଃ
ଅଦ୍ୟାପି ତତ୍ତୁଲ୍ୟ କବେରଭାବାଦ୍
ଅନାମିକା ସାର୍ଥବତ୍ତୀ ବଭୂବ ।
ଖ-ପୁଷ୍ପେଷୁ ଜାତୀ ନଗରେଷୁ କାଞ୍ଚୀ
ନଦୀଷୁ ଗଙ୍ଗା···ପୁରୁଷେଷୁ ବିଷ୍ଣୁଙ୍କ
···କାବ୍ୟେଷୁ ମାଘଃ କବି କାଳିଦାସଃ ॥
ଗ-କାଳିଦାସ କବିତା ନବଂବୟଃ
ମାହିଷ୍ୟ" ଦଧି ସଶର୍କର ପୟ
ହରିଣମାଂସ ମଙ୍ଗନା କୋମଳ ।

(୨) ସଂସ୍କୃତ ସାହିତ୍ୟରେ ପଞ୍ଚମହାକାବ୍ୟ ହେଉଛି, 'ରଘୁବଂଶ', କୁମାର ସମ୍ଭବ, କିରାତାର୍ଜ୍ଜୁନୀୟ, ଶିଶୁପାଳବଧ ଓ ନୈଷଧ ।



# ଦାନ୍ତେ

ଦାନ୍ତେଙ୍କ ସମ୍ପୂର୍ଣ୍ଣ ନାମଟି ହେଉଛି ଦାନ୍ତେ ଆଲଘିରେଇ । ସେ ଇଟାଲୀର ବଶିଷ୍ଟ କବି ଓ 'ଦ ଡିଭାଇନ କମେଡ଼ି'ର ରଚୟିତା ଭାବେ କେବଳ ଇଟାଲୀ ସାହିତ୍ୟରେ ନୁହେଁ ସମଗ୍ର ବିଶ୍ୱ-ସାହିତ୍ୟରେ ପ୍ରଖ୍ୟାତ । ଖ୍ରୀ: ୧୨୬୫ରେ ଏକ ସମ୍ଭ୍ରାନ୍ତ ପରିବାରରେ ସେ ଜନ୍ମ ହୋଇଥିଲେ । ତାହାଙ୍କ ପ୍ରତିଭା ଥିଲା ବହୁମୁଖୀ । ସେ ଥିଲେ ଏକାଧାରରେ ସୈନିକ, ରାଜନୀତିଜ୍ଞ, ଆଦର୍ଶ ପ୍ରେମିକ, ବିଷୟବୁଦ୍ଧିସମ୍ପନ୍ନ, ଗୀତିକବି ଓ ଦାର୍ଶନିକ । ଫ୍ଲୋରେନ୍‌ସର ଅଭିଜାତ ତଥା ଉଦ୍ଦୀପନାମୟ ପରିବେଶରେ ସେ ପ୍ରତିପାଳିତ ହୋଇଥିଲେ । ପ୍ରାରମ୍ଭିକ ସ୍ତରରେ ଇଟାଲୀର ପୁରାତନ ଓ ମଧ୍ୟକାଳୀନ କାବ୍ୟ, ଛନ୍ଦଶାସ୍ତ୍ର, ପୁରାଣ ପ୍ରଭୃତି ଅଧ୍ୟୟନ କରିଥିଲେ । ତରୁଣ ବୟସରୁ କବିତା ରଚନା ଓ ବର୍ଣ୍ଣ ଚିତ୍ରାଙ୍କନ ପ୍ରତି ସେ ହୋଇ-ଥିଲେ ଆକୃଷ୍ଟ । କଥିତ ଅଛି ଖ୍ରୀ ୧୨୮୯ ରେ ସେ ଫ୍ଲୋରେନ୍‌ସର ସ୍ଥାନୀୟ ଏକ ଯୁଦ୍ଧରେ ସମ୍ମୁଖ ଭାବରେ ଜଣେ ଅଶ୍ୱାରୋହୀ ଯୋଦ୍ଧା ଭାବରେ ଭୂମିକା ସଂଗ୍ରାମ କରିଥିଲେ ।

ତ୍ରୟୋଦଶ ଶତାବ୍ଦୀର ଶେଷ ଦଶକଟି ଥିଲା ଦାନ୍ତେଙ୍କ ପକ୍ଷେ ଏକ ସଙ୍କଟଜନକ ସମୟ । ଏହି ସମୟରେ ସେ ବ୍ୟକ୍ତିଗତ ଭାବେ ବିଭିନ୍ନ ବିଷୟ ଅଧ୍ୟୟନରେ ଏବଂ ରାଜନୀତିରେ ଆତ୍ମନିୟୋଗ କରିଥିଲେ । ଏହି ସମୟରେ ଲାଟିନ କାବ୍ୟ ଓ ପ୍ରାଚୀନ ଦାର୍ଶନିକ ଗ୍ରନ୍ଥସମୂହ ଗଭୀର

ଭାବେ ଅଧ୍ୟୟନ କରିଥିଲେ । ଏହାର ପ୍ରଭାବ ତାହାଙ୍କର ଉତ୍ତରକାଳୀନ ଗ୍ରନ୍ଥମାନଙ୍କରେ ସ୍ପଷ୍ଟଭାବେ ପରିଲକ୍ଷିତ ହୁଏ ।

ଦାନ୍ତେଙ୍କ ପ୍ରଥମ ଉଲ୍ଲେଖଯୋଗ୍ୟ ସାହିତ୍ୟକୃତିକୁ ବୁଝିବାକୁ ହେଲେ ତାହାଙ୍କ ତରୁଣ ଜୀବନର ରହସ୍ୟମୟ ପ୍ରସଙ୍ଗକୁ ଜାଣିବା ଏକାନ୍ତ ଆବଶ୍ୟକ । ତାଙ୍କୁ ନଅବର୍ଷ ବୟସ ହୋଇଥିବାବେଳେ ସେ ବିଟ୍ରେଚିସ୍ ପୋର୍ଟିନାରି ନାମ୍ନୀ ଏକ ସୁଦର୍ଶନା କନ୍ୟାକୁ ଭେଟିଥିଲେ । ସେତେବେଳେ ବିଟ୍ରେଚିସଙ୍କ ବୟସ ମଧ୍ୟ ପ୍ରାୟ ଆଠ ନଅ ବର୍ଷ । ସେହିଦିନୁ ବିଟ୍ରେଚିସ ଦାନ୍ତେଙ୍କ ମନୋରାଜ୍ୟରେ ଏକ ଅପୂର୍ବ ପ୍ରଭାବ ବିସ୍ତାର କରିଥିଲେ । ଏହି ପ୍ରଭାବ ଥିଲା ଏକପ୍ରକାର ରହସ୍ୟମୟ । ଆଧୁନିକ ଯୁଗର ବସ୍ତୁପ୍ରବଣ ମନପକ୍ଷେ ଏହାର ମର୍ମୋଦ୍ଘାଟନ ଦୁରୂହ କହିଲେ ଅତ୍ୟୁକ୍ତି ହେବନାହିଁ । ଦାନ୍ତେ ବିଟ୍ରେଚିସଙ୍କୁ ମାତ୍ର କେତେଥର ପାଇଁ ଦେଖିଥିଲେ । ଦୁହିଁଙ୍କର ବିବାହ ମଧ୍ୟ ଅନ୍ୟତ୍ର ହୋଇଥିଲା; ମାତ୍ର ୨୨ ବର୍ଷ ବୟସରେ ଖ୍ରୀ: ୧୨୯୦ ରେ ବିଟ୍ରେଚିସଙ୍କର ମୃତ୍ୟୁ ହୋଇଥିଲା । ତଥାପି ବିଟ୍ରେଚିସ ଥିଲେ ଦାନ୍ତେଙ୍କ ଜୀବନ ଓ କାବ୍ୟ ସୃଷ୍ଟିର ଉତ୍ସ, ଆମରଣ ପ୍ରେରଣାଦାୟୀ ଓ ମୁକ୍ତିର ଅବଲମ୍ବନ । ତାହାଙ୍କ Divine commedy ରେ ସେ ଏହା ସ୍ପଷ୍ଟ ରୂପେ ସ୍ୱୀକାର କରିଅଛନ୍ତି । ଅଠରବର୍ଷ ବୟସରୁ ସେ ବିଟ୍ରେଚିସଙ୍କ ଉଦ୍ଦେଶ୍ୟରେ ନିବାଦୁର ଗୀତରେ ଗୀତ ଲେଖୁଥିଲେ ।

ଖ୍ରୀ: ୧୨୯୨ରୁ ୧୨୯୪ ମଧ୍ୟରେ ରଚିତ ତାଙ୍କର ୩୧ଟି କବିତା ସଂଗ୍ରହ 'ନବଜୀବନ' ନାମରେ ପ୍ରକାଶ ପାଇଥିଲା । ଏହାର ପ୍ରତ୍ୟେକଟି- କବିତା ସହ ସଂଯୋଜିତ ଥିଲା ଗଦ୍ୟରେ ଲିଖିତ ଟିପ୍ପଣୀମୂଳକ ବ୍ୟାଖ୍ୟା । କବିତାଗୁଡ଼ିକ ଥିଲା ଆତ୍ମାନୁଭୂତିମୂଳକ ଓ ଏଥିରେ ବିଟ୍ରେଚିସ୍ଙ୍କ ପ୍ରତି ତାଙ୍କର ସୁଗଭୀର ଅନୁରାଗ ସୂଚିତ ଓ ଏଗୁଡ଼ିକ ବିଟ୍ରେଚିସ୍ଙ୍କ ପ୍ରେରଣାରେ ହିଁ ଲିଖିତ ହୋଇଥିଲା । ଏଗୁଡ଼ିକରେ ତାଙ୍କର ସ୍ଥୂଳ ପାର୍ଥିବ ଆବେଗ ଏକ ଦାର୍ଶନିକ ଭାବନା ମାଧ୍ୟମରେ ଊର୍ଦ୍ଧ୍ୱାୟିତ ତଥା ମହିମାନ୍ୱିତ ହୋଇଅଛି ଓ ଏଥିରେ କବି ବିଟ୍ରେଚିସ୍ ଓ ଖ୍ରୀଷ୍ଟୀୟ ମୁକ୍ତି ଧାରଣାକୁ ଅଭିନ୍ନ ରୂପେ ଗ୍ରହଣ କରିଛନ୍ତି । ଏହି ଭାବନାର ପରିଣତି ସେ ପରବର୍ତ୍ତିକାଳରେ ଡିଭାଇନ କମେଡ଼ିର ରୂପ

ପରିଗ୍ରହ କରିବ, ତାହା ଏଥିରୁ ସୂଚିତ ହୋଇଥାଏ । 'ଅନ୍ୟ କେଉଁ ନାରୀ ସମ୍ପର୍କରେ ଯାହା କୁହାଯାଇନ' ତାହା ହିଁ ସେ ବିଅଟ୍ରିସ ବିଷୟରେ କହିବାକୁ ଚାହାନ୍ତ—ଏହାହିଁ ଥିଲା ଏହି ଗୀତିକବିତା ସଙ୍କଳନର ଶେଷ ଉକ୍ତି ।

ଏହି ଦଶକରେ ଯେଉଁ ରାଜନୈତିକ କର୍ମପ୍ରବାହ ସହ ଦାନ୍ତେ ଆପଣାକୁ ସମ୍ପୃକ୍ତ କରିଥିଲେ, ତାହାହିଁ ପରବର୍ତ୍ତୀକାଳରେ ତାହାଙ୍କ ଜୀବନର ଗତିପଥକୁ ବିପର୍ଯ୍ୟସ୍ତ କରିଦେଇଥିଲା । ଏହି ସମୟରେ ଇଟାଲୀର ରାଜନୈତିକ ଜୀବନ ଥିଲା ଅତୀବ ବିକ୍ଷୁବ୍ଧ ଓ ସଂଘର୍ଷସଙ୍କୁଳ । ପ୍ରାୟ ଅର୍ଦ୍ଧଶତାବ୍ଦୀବ୍ୟାପୀ ଇଟାଲୀରେ ଅନ୍ତର୍ବିପ୍ଳବ ଲାଗିରହିଥିଲା । ଇଟାଲୀରେ ପୋପଙ୍କ ଆଧିପତ୍ୟକୁ ସ୍ୱୀକାର କରୁଥିବା ( Guleph ) ଓ ଜର୍ମାନ ସମ୍ରାଟଙ୍କ ଆଧିପତ୍ୟକୁ ସ୍ୱୀକାର କରୁଥିବା ( Ghibellines ) ଏଇ ଦୁଇଟି ଗୋଷ୍ଠୀ ସେତେବେଳେ ତୁମୂଳ ସଂଘର୍ଷରେ ଲିପ୍ତ ଥିଲେ । ଗୁଏଲଫ୍ ଗୋଷ୍ଠୀ ଫ୍ଲରେନ୍ସ ସହରକୁ ଅଧିକାର କଲାପରେ ଏହି ଗୋଷ୍ଠୀ କୃଷ୍ଣକାୟ ଓ ଶ୍ୱେତାଂଗ ଭେଦରେ ଦୁଇ ଶ୍ରେଣୀରେ ବିଭକ୍ତ ହୋଇଗଲା । ଦାନ୍ତେଙ୍କ ପରିବାର ଥିଲେ ଶ୍ୱେତାଙ୍ଗ ଶ୍ରେଣୀର । ଏହି ଶ୍ରେଣୀ ଥିଲେ, ଗ୍ରାମ୍ୟ ଜମିଦାରଗୋଷ୍ଠୀ ଓ ଧନାଢ଼୍ୟ । ଏହି ଶ୍ରେଣୀ ଫ୍ଲୋରେନ୍ସ ସହରକୁ ପୋପ୍ ତଥା ଜର୍ମାନ ସମ୍ରାଟ ଏଇ ଦୁହିଁଙ୍କ ଅଧିକାରରୁ ମୁକ୍ତ ରଖି ଏହାକୁ ଏକ ବଳିଷ୍ଠ ଗଣତନ୍ତ୍ର ଶାସିତ ସହର କରିବାକୁ ଚାହୁଁଥିଲେ; ମାତ୍ର ଅପର ପକ୍ଷରେ ଗରିବ ଏବଂ ସମ୍ଭ୍ରାନ୍ତ ଗୋଷ୍ଠୀ ଅପର ଗୋଷ୍ଠୀଙ୍କ ଉଦ୍ୟମକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ପୋପଙ୍କ ସହ ମିଳାମିଶା କରିନେବାକୁ ଚାହୁଁଥିଲେ । ଏଭଳି ଏକ ସଙ୍କଟ ତଥା ସଂଗ୍ରାମପୂର୍ଣ୍ଣ ସମୟରେ ଦାନ୍ତେ ନିଷ୍କ୍ରିୟ ହୋଇ ରହି-ପାରିନଥିଲେ । ଖ୍ରୀ: ୧୩୯୫ ରେ ସେ ଫ୍ଲରେନ୍ସର ଏକ ଶକ୍ତିଶାଳୀ ଶାସକ ଦଳ ( guild ) ସହ ସଂଯୁକ୍ତ ହୋଇଥିଲେ । ସହରକୁ ଶାସନ କରିବାକୁ ନିର୍ବାଚିତ ଛଅଜଣ ପ୍ରତିନିଧି ମଧ୍ୟରୁ ଦାନ୍ତେ ଥିଲେ ଅନ୍ୟତମ । ଏହି ସମୟରେ ପୂର୍ବରୁ ଚାଲିଆସୁଥିବା କୃଷ୍ଣକାୟ ଓ ଶ୍ୱେତକାୟ ବିବାଦ ଉଗ୍ର ରୂପ ଧାରଣ କଲା । ଦାନ୍ତେ ଓ ଶାସକ ପ୍ରତିନିଧିବର୍ଗ ପୋପଙ୍କ ସୈନ୍ୟମାନଙ୍କୁ ସାହାଯ୍ୟ ଦେବା ବନ୍ଦ କରିଦେଲେ । ଫଳରେ

ପୋପ୍ ରାଗିଯାଇ ଏହାର ପ୍ରତିଶୋଧ ନେବେ ବୋଲି ଧମକ ଦେଲେ । ଏଣୁ ଖ୍ରୀ: ୧୩୦୨ ରେ ଦାନ୍ତେଙ୍କୁ ଶାନ୍ତି ସ୍ଥାପନ ଉଦ୍ଦେଶ୍ୟରେ ରୋମକୁ ପଠାଯାଇଥିଲା; ମାତ୍ର ଏହାପରେ ସେ ଆଉ ଫ୍ଲୋରେନ୍ସକୁ ଫେରି ଆସିପାରି ନଥିଲେ ।

ଦାନ୍ତେ ରୋମକୁ ଯାଇଥିବା ସମୟରେ କୃଷ୍ଣକାୟଗଣ କ୍ଷମତାକୁ ଆସିଗଲେ ଓ ବିଦ୍ରୋହରେ ଲିପ୍ତଥିବାଯୋଗୁଁ ଦାନ୍ତେ ପ୍ରଭୃତିଙ୍କର ବିଚାର ହେଲା । ଖ୍ରୀ: ୧୩୦୨ ଜାନୁଆରୀ ମାସରେ ଦାନ୍ତେଙ୍କୁ ଅର୍ଥ ଦଣ୍ଡ ଓ ନିର୍ବାସନ ଦଣ୍ଡରେ ଦଣ୍ଡିତ କରାଗଲା । ଯଦି ସେ ଫ୍ଲୋରେନ୍ସକୁ ଆସନ୍ତି, ତେବେ ତାଙ୍କୁ ଜୀବନ୍ତ ଦଗ୍ଧ କରିଦିଆଯିବ ବୋଲି ମଧ୍ୟ ନିଷ୍ପତ୍ତି ହୋଇଥିଲା । ଦାନ୍ତେଙ୍କ ପକ୍ଷେ ଏହାଥିଲା ସର୍ବାଧିକ କଠୋର ଦଣ୍ଡ । ଏହାଫଳରେ ନିଜର ସର୍ବାଧିକ ପ୍ରିୟ ବିଷୟମାନଙ୍କୁ ପରିତ୍ୟାଗ କରି ସେ ଏକପ୍ରକାର ଭିକ୍ଷୁକ ଭଳି ନିର୍ବାସିତ ଜୀବନ ଯାପନ କରିବାକୁ ଲାଗିଲେ । ଅବଶିଷ୍ଟ ଜୀବନ ତାଙ୍କୁ ଏହିପରି ନିଃସଙ୍ଗ ଭାବେ ଇଟାଲି ରାଜ୍ୟରେ ଇତସ୍ତତଃ ଘୂରି ଘୂରି କାଳ କଟାଇବାକୁ ପଡ଼ିଥିଲା । ତାହାଙ୍କ ଜୀବନର ଏହି ସମୟର ନିର୍ଦ୍ଦିଷ୍ଟ ଇତିବୃତ୍ତ ମିଳେନାହିଁ । କେଉଁ ପୃଷ୍ଠପୋଷକଙ୍କ ଅନୁଗ୍ରହ ଭାଜନ ହେବା ଓ ତାହାଙ୍କ ସାମୟିକ ଆଶ୍ରୟ ଲାଭ କରିବା ଯେ କିପରି ଦୁଃଖାବହ ଏହା ସେ ଏହି ସମୟରେ ଉପଲବ୍ଧି କରିଥିଲେ ।

ଏହିପରି ଭାବେ ଜୀବନ କଟାଇବା ଅତୀବ ସୁକଠିନ ଓ ଦୁଃଖ-ଦାୟକ ହେଲେହେଁ ଦାନ୍ତେ ଏହି ସମୟ ମଧ୍ୟରେ ଅଧ୍ୟୟନ, ସାହିତ୍ୟ ରଚନାରୁ ବିରତ ହୋଇ ନ ଥିଲେ । ନିର୍ବାସିତ ଜୀବନର ପ୍ରଥମ ପର୍ଯ୍ୟାୟରେ ସେ ଦୁଇଟି ଆଲୋଚନାତ୍ମକ ଗ୍ରନ୍ଥ ରଚନା କରିଥିଲେ । ମାତ୍ର ତାହାକୁ ସେ ସଂପୂର୍ଣ୍ଣ କରିପାରିନାହାନ୍ତି । ସେ ଦୁଇଟି ହେଉଛି 'ଭୋଜ' (The Banquet) ଓ 'ସୁପ୍ରସିଦ୍ଧ ମାତୃଭାଷା' (The Illustrious vernacular) । ପ୍ରଥମୋକ୍ତ ପୁସ୍ତକରେ ସେ ଇଟାଲୀୟ ଭାଷାର ଭାବ, ଅଭିବ୍ୟକ୍ତି କ୍ଷମ ମହତ୍ତ୍ୱ ଓ ଇଟାଲୀୟ କବିଗଣ ସମ୍ମୁଖୀନ ହେଉଥିବା କେତେକ ଭାଷାତାତ୍ତ୍ୱିକ ସମସ୍ୟା ସମ୍ପର୍କରେ ଆଲୋଚନା କରିଅଛନ୍ତି । ତାଙ୍କର ଅନ୍ୟ ଏକ ଆଲୋଚନାତ୍ମକ ନିବନ୍ଧ ହେଉଛି

'ରାଜତନ୍ତ୍ର ସମ୍ପର୍କରେ' । ସେ ଏହାକୁ ଖ୍ରୀ:୧୩୧୬-୧୫ରେ ଲାଟିନ ଭାଷାରେ ରଚନା କରିଥିଲେ । ଚର୍ଚ୍ଚ ଓ ରାଜା ପରସ୍ପର ପ୍ରଭାବମୁକ୍ତ ରହିବା ଉଚିତ । ଏହାହିଁ ସେ ଏଥିରେ ପ୍ରତିପାଦନ କରିଅଛନ୍ତି । ତାହାଙ୍କ ମତରେ ଏହିପରି ବ୍ୟବସ୍ଥାଦ୍ୱାରା ହିଁ ରାଜା ଓ ପୋପ ଉଭୟେ ବଳିଷ୍ଠ ହୋଇପାରିବେ । ଏହା ଫଳରେ ଧର୍ମାଧିକାରୀ ଓ ରାଜ୍ୟାଧିକାରୀମାନଙ୍କ ମଧ୍ୟରେ ଦୀର୍ଘକାଳ ଧରି ଯେଉଁ ଉତ୍ପୀଡ଼ନ ଓ କ୍ଷତିପ୍ରଦ ଦ୍ୱନ୍ଦ୍ୱ ଲାଗି ଆସିଛି ତାହାର ଅବସାନ ହୋଇପାରିବ । ଏଣୁ ଏହି ଦୁଇ ଶକ୍ତି ମଧ୍ୟରେ ସମ୍ପୂର୍ଣ୍ଣ ବିଚ୍ଛେଦ ଓ ସ୍ୱାତନ୍ତ୍ର୍ୟ ବିଧାନ ଏକାନ୍ତ ଆବଶ୍ୟକ । ତାହେଲେ ରାଜା ଓ ପୋପଙ୍କ ମଧ୍ୟରେ ସୁସମ୍ପର୍କ ସ୍ଥାପିତ ହେବ । ସେ ଦୁହେଁ ରାଜ୍ୟର ସମୁହ କଲ୍ୟାଣ ଲାଗି ଯତ୍ନବାନ ହେବେ । କହିବା ଅନାବଶ୍ୟକ, ଦାନ୍ତେଙ୍କ ଏହି ମତ ଥିଲା ଯଥାର୍ଥ ଓ ସମ୍ପୂର୍ଣ୍ଣ ଯୁଗୋପଯୋଗୀ ।

କବି କେବେ ତାହାଙ୍କ ପୃଥିବୀ ବିଖ୍ୟାତ ରଚନା The Divine commedy ରଚନା ଆରମ୍ଭ କରିଥିଲେ ତାହା ସଠିକ ଭାବେ ନିରୂପିତ ହୋଇପାରି ନାହିଁ । ମୋଟାମୋଟି ଭାବେ ଖ୍ରୀ: ୧୩୦୭ରୁ ଖ୍ରୀ:୩୧୩ ମଧ୍ୟରେ ସେ ଏହାକୁ ପ୍ରଣୟନ କରିବାରେ ମନୋନିବେଶ କରିଥିଲେ । ଜୀବନର ଶେଷ ପର୍ଯ୍ୟାୟରେ ଯେ ସେ ଏହି ଗ୍ରନ୍ଥଟିକୁ ରଚନା କରିବାରେ ନିଯୁକ୍ତ ରହିଥିଲେ ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଏହି ଗ୍ରନ୍ଥଟି ସମ୍ପୂର୍ଣ୍ଣ ଭାବେ ରଚିତ ହେବା ପୂର୍ବରୁ ମଧ୍ୟ ଏହାର ଖ୍ୟାତି ଚତୁର୍ଦ୍ଦିଗରେ ଖେଳି ଯାଇଥିଲା । ଏହା ଏକ ପବିତ୍ର ରଚନା ଓ ତାହାକୁ ସମାପ୍ତ କରିବା ତାହାଙ୍କର ଏକ ପବିତ୍ର କାର୍ଯ୍ୟବୋଲି ସେ ବିବେଚନା କରୁଥିଲେ । ଏହାର ସମ୍ପୂର୍ଣ୍ଣତା ତାହାଙ୍କୁ ସମ୍ମାନର ସହିତ ସ୍ୱଦେଶକୁ ଫେରାଇ ନେଇପାରିବ ଏହା ହିଁ ଥିଲା ତାଙ୍କର ଏକାନ୍ତ ଆଶା ଓ ବିଶ୍ୱାସ । ଇତିମଧ୍ୟରେ ତାଙ୍କୁ ଦେଶ ପ୍ରତ୍ୟାବର୍ତ୍ତନ ନିମିତ୍ତ କେତେକ ସର୍ତ୍ତ ଦିଆଯାଇଥିଲା । ମାତ୍ର ତାହା ସମ୍ମାନଜନକ ନ ଥିଲା । ଏଣୁ ଦାନ୍ତେ ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ । ମାତ୍ର ତାହାଙ୍କ ଆଶା ଆଶାରେ ହିଁ ରହିଗଲା । ରାଭେନ୍ନା ନାମକ ସ୍ଥାନରେ ସେ ଖ୍ରୀ: ୧୩୨୧ରେ ମୃତ୍ୟୁବରଣ କଲେ । ମୃତ୍ୟୁପରେ ତାହାଙ୍କ ଅଧ୍ୟୟନ ପ୍ରକୋଷ୍ଠରୁ 'ଡିଭାଇନ କମେଡ଼ି'ର ଶେଷାଂଶର ପାଣ୍ଡୁଲିପି ଉଦ୍ଧାର କରାଯାଇଥିଲା । ମୃତ୍ୟୁର ଅଳ୍ପପୂର୍ବରୁ ହିଁ ସେ ଏହାକୁ ସମ୍ପୂର୍ଣ୍ଣ କରିଥିଲେ । ରାଭେନ୍ନାରେ ତାଙ୍କୁ

ସମାଧିସ୍ଥ କରାଯାଇଥିଲା । ତାହାଙ୍କ ମୃତ ଦେହର ଶବାଧାରକୁ ଫ୍ଲରେନ୍‌ସବାସୀ ଫ୍ଲରେନ୍‌ସକୁ ଫେରାଇ ଆଣିବାକୁ ବହୁ ଶତାବ୍ଦୀବ୍ୟାପୀ ଉଦ୍ୟମ କଲେହେଁ ତାହାଙ୍କ ମୃତଦେହ ଏବେ ମଧ୍ୟ ସେଇ ରାଭେନ୍ନାରେ ସମାଧିସ୍ଥ ହୋଇ ରହିଛି ।

ଦାନ୍ତେ ତାହାଙ୍କ ଆଜୀବନ ସାଧନାର ଏକମାତ୍ର କାବ୍ୟକୃତିର ନାମ ରଖିଥିଲେ 'ଲ କମେଡ଼ି' ବା ମିଳନ (La Commedia) ମାତ୍ର ଉତ୍ତର ପୁରୁଷ ଏହାର କଥାବସ୍ତୁ ଓ କାବ୍ୟିକ ମହନୀୟତା ଦୃଷ୍ଟିରୁ ଏହାକୁ ଉପଯୁକ୍ତ ବିଶେଷଣ ଦ୍ୱାରା ଯୁକ୍ତ କରି ନୂତନ ନାମକରଣ କରିଛନ୍ତି 'ଡିଭାଇନ୍ କମେଡ଼ି ବା ଦିବ୍ୟ ମିଳନ' । ଆଧୁନିକ ଅର୍ଥରେ ଏହା ଏକ ମିଳନାନ୍ତକ କାବ୍ୟ ନହେଲେହେଁ ଏଥିରେ ପୀଡ଼ନରୁ ଦିବ୍ୟ ନନ୍ଦ ଲାଭ ପର୍ଯ୍ୟନ୍ତ ବହୁ ବିଷୟର ବର୍ଣ୍ଣନା ହୋଇଥିବାରୁ ଏପରି ନାମକରଣ ଯଥାର୍ଥ । ସରଳ ସୁଲଳିତ ଇଟାଲି ଭାଷାରେ ଏହା ରଚିତ । କେହି କେହି ଏହାକୁ ଏକ ମହାକାବ୍ୟ ବା ପୁରାଣ ବୋଲି ମଧ୍ୟ ଗ୍ରହଣ କରିଅଛନ୍ତି ।

ଏହି ବିରାଟ କାବ୍ୟର କଥାବସ୍ତୁ ସଂକ୍ଷେପରେ ଏହିପରି—

ଦାନ୍ତେ ଦିନେ ସକାଳେ ବଣରେ ପଥ ହରାଇ ବୁଲୁବୁଲୁ ରୋମାନ କବି ଭର୍ଜିଲଙ୍କୁ ଦେଖିବାକୁ ପାଇଲେ । ତାହାଙ୍କ କାବ୍ୟ ପ୍ରେରଣାର ଉତ୍ସ୍ରାହଦାତ୍ରୀ ସ୍ୱର୍ଗତା ବିଏତ୍ରିସ୍‌ଙ୍କ ପରାମର୍ଶ କ୍ରମେ ହିଁ ସେ ଦାନ୍ତେଙ୍କୁ ବାଟ ଦେଖାଇବା ଲାଗି ସ୍ୱର୍ଗରୁ ଆସିଥାନ୍ତି । ଭର୍ଜିଲ ଶିଷ୍ୟ ଦାନ୍ତେଙ୍କୁ କହିଲେ—"ମୃତ୍ୟୁ ଲୋକର ବିଭିନ୍ନ ଅଂଶ ତୁମକୁ ଦେଖାଇବା ଲାଗି ମୁଁ ସ୍ୱର୍ଗରୁ ଆସିଛି, ଏହା ଦେଖିଲେ ତୁମେ ମୁକ୍ତି ଆଡ଼କୁ ଆଗେଇ ଯାଇ-ପାରିବ" । ଦାନ୍ତେ ତାଙ୍କ ସହ ଯିବାକୁ ରାଜି ହେବାରୁ ଭର୍ଜିଲ ତାଙ୍କୁ ପ୍ରଥମେ ନରକ ରାଜ୍ୟକୁ ନେଇଗଲେ । ବହୁ ଆବର୍ତ୍ତିତ ପଥଦେଇ ନିମ୍ନରୁ ନିମ୍ନକୁ ସେମାନେ ଅବତରଣ କରିବାକୁ ଲାଗିଲେ । ଏଇ ବାଟରେ ସେମାନେ ଦେଖିବାକୁ ପାଇଲେ ପୋପ, ରାଜା, କବି, ଯୋଦ୍ଧା ପ୍ରଭୃତି ବହୁ ଅଭିଶପ୍ତ ଆତ୍ମାକୁ, ଆଉ ମଧ୍ୟ ଦେଖିଲେ ବହୁ ନିଷ୍ଠୁର ବ୍ୟକ୍ତିଙ୍କୁ । ସେମାନଙ୍କୁ ସେଠାରେ ଆପଣାର ଜାଗତିକ କୁକର୍ମ ଲାଗି ପ୍ରାୟଶ୍ଚିତ୍ତ

କରିବାକୁ ପଡ଼ୁଥାଏ । ନରକର ନିମ୍ନତମ ସ୍ଥାନରେ ସେମାନେ ଦେଖିବାକୁ ପାଇଲେ ବରଫ ଉପରେ ବନ୍ଦୀ ହୋଇ ପଡ଼ିଥିବା ଶଇତାନ ଲୁସିଫର୍‌କୁ ।

ଏହିଠାରୁ ଏକ ସୁଡ଼ଙ୍ଗ ପଥରେ ଯାଇ ସେମାନେ ପ୍ରେତଲୋକର ପାହାଡ଼ ନିକଟରେ ପହଞ୍ଚିଲେ । ଯେଉଁମାନେ ଆପଣାର କୃତକର୍ମ ଲାଗି ଅନୁତାପ କରନ୍ତି ସେଇମାନଙ୍କ ଆତ୍ମା ଏଇଠି କେତେ କାଳ ବାସ କରନ୍ତି ଓ ପ୍ରାୟଶ୍ଚିତ ସ୍ୱରୂପ ବିବିଧ କଷ୍ଟଭୋଗ କରିଥାନ୍ତି । ଏହାର ଉପରିଭାଗରେ ଇଡେନ ଉପବନ ଅବସ୍ଥିତ । ଏହି ଉପବନରୁ ସ୍ୱର୍ଗାଭିମୁଖରେ ଯାଇ ପୁଣ୍ୟାତ୍ମାଗଣ ଦେବଭୂମିକୁ ଯାଇଥାନ୍ତି । ଦାନ୍ତେଙ୍କୁ ଏହିଠି ଛାଡ଼ିଦେଇ ଭର୍ଜିଲ ବିଦାୟ ନେଲେ; କାରଣ ଏହା ଉପରକୁ ଯିବା ଲାଗି ତାଙ୍କୁ ଅନୁମତି ମିଳିନଥିଲା । ଏଇଠୁ ବିଟ୍ରିସ ଆସି ତାଙ୍କୁ ବାଟ କଢ଼େଇ ନେଇଛନ୍ତି । ତାହାଙ୍କ ନିର୍ଦ୍ଦେଶରେ ସେ ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ବିଭିନ୍ନ ଗ୍ରହ ଓ ନକ୍ଷତ୍ରମାନଙ୍କ ରାଜ୍ୟକୁ ଅତିକ୍ରମ କରି ଅବଶେଷରେ ସ୍ୱର୍ଗଲୋକର ଶେଷଭାଗ ଗୋଲୋକରେ (ଇମ୍ପିରିଅନ—Empyrean) ଉପନୀତ ହୋଇଛନ୍ତି । (ଦାନ୍ତେଙ୍କ ଭାବନା ଅନୁଯାୟୀ ବିଶ୍ୱର କେନ୍ଦ୍ର ହେଉଛି ଏହି ପୃଥିବୀ) ଗୋଲୋକରେ ପହଞ୍ଚିବା ପରେ ବିଟ୍ରିସ ମଧ୍ୟ ବିଦାୟ ନେଇଛନ୍ତି । ଦାନ୍ତେଙ୍କ ପଥପ୍ରଦର୍ଶକ ହୋଇଛନ୍ତି ସେଣ୍ଟ୍ ବର୍ଣ୍ଣାର୍ଡ ଅଫ କ୍ଲେୟାର ଭକ୍ସ । ଏହି ମହର୍ଷିଙ୍କ ପ୍ରାର୍ଥନା ଯୋଗୁ ଦାନ୍ତେ ଦିବ୍ୟଦୃଷ୍ଟି ଲାଭ କରିଛନ୍ତି । ଏହା ବଳରେ ସେ ତ୍ରିମୂର୍ତ୍ତିଙ୍କୁ ଓ ସମଗ୍ର ବିଶ୍ୱଜଗତକୁ ଦେଖିବାକୁ ସମର୍ଥ ହୋଇଛନ୍ତି । ବିଶ୍ୱର ସମସ୍ତ ରହସ୍ୟର ସୂକ୍ଷ୍ମାତିସୂକ୍ଷ୍ମ ବିଷୟ ଓ ଏହାର ସୁସଙ୍ଗତି ସେ ବୁଝି ପାରିଛନ୍ତି । ଏହି ଦିବ୍ୟାନୁଭୂତି ଲାଭ କରିବା ପରେ ଦାନ୍ତେଙ୍କ ଯାତ୍ରା ଓ ଏହି ମହାକାବ୍ୟର ପରିସମାପ୍ତି ହୋଇଛି ।

କବିଙ୍କ ଦ୍ୱାରା ଉଦ୍ଭାବିତ ଏକ ତ୍ରିପଦୀ ଛନ୍ଦରେ (Terzarima) ଏହା ରଚିତ । କାବ୍ୟଟିରେ ନରକ (Hell), ପ୍ରେତଲୋକ(Purgatory) ଓ ସ୍ୱର୍ଗ (Heaven) ଏହିପରି ମୁଖ୍ୟତଃ ତିନିଗୋଟି ଭାଗରେ ବିଭକ୍ତ । ପ୍ରଥମ ସର୍ଗଟି ଉପୋଦ୍‌ଘାତ ଓ ଅନ୍ୟ ତିନିଗୋଟି ବିଭାଗ ପ୍ରତ୍ୟେକଟି ୩୩ଟି ସର୍ଗ ସମ୍ବଳିତ । ଏହିପରି ଏଥିରେ ମୋଟ ଏକଶହଟି ସର୍ଗ । ଏହାର ଗଠନଶୈଳୀ ଯେପରି ସୁପରିକଳ୍ପିତ ସେହିପରି ଏହା ପ୍ରତୀକଧର୍ମୀ ।

ଏହାର ଅର୍ଥ ମଧ୍ୟ ସ୍ଥାନେ ସ୍ଥାନେ ଅତ୍ୟନ୍ତ ଜଟିଳ ଓ ରହସ୍ୟାଚ୍ଛନ୍ନ । ଆଲୋଚକମାନେ ଏହାର ବିଭିନ୍ନ ଅର୍ଥ ଅର୍ଥାନ୍ତର କରିଥାଆନ୍ତି । ଏହା କେବଳ ପ୍ରତୀକ ବା ରୂପକଧର୍ମୀ ତାହା ଏଇ ଗୋଟିଏ ଉଦାହରଣରୁ ଅନୁମେୟ । କାବ୍ୟର ପ୍ରାରମ୍ଭରୁ ଦାନ୍ତେ ଏକ 'ଅନ୍ଧକାର ଅରଣ୍ୟ'ରେ ପ୍ରବେଶ କରିଛନ୍ତି । ସାଧାରଣ ଅର୍ଥରେ ଏହା ଏକ ଅରଣ୍ୟରେ ବାଟବଣା ବାଟୋଇର ଅର୍ଥ ପ୍ରକାଶକ ବୁଝାଇଥାଏ । ମାତ୍ର ଏହାର ତିନିଗୋଟି ରୂପକଧର୍ମୀ ଅର୍ଥ ଅଛି । ଧାର୍ମିକ ଚେତନା ଦୃଷ୍ଟିରୁ ଅନ୍ଧକାର ଅରଣ୍ୟର ଅର୍ଥ ଈଶ୍ୱରଙ୍କଠାରୁ ଆଧ୍ୟାତ୍ମିକ ବିଚ୍ଛିନ୍ନତା, ରାଜନୈତିକ ଦୃଷ୍ଟିକୋଣରୁ ଏହା ଦାନ୍ତେଙ୍କ ସମକାଳୀନ ଇଟାଲୀର ଅରାଜକ ଅବସ୍ଥା, ନୈତିକ ଦୃଷ୍ଟିକୋଣରୁ ଏହା ଅଶୋଭନୀୟ କଳୁଷିତ ଜୀବନଯାତ୍ରାର ଅର୍ଥ ଦ୍ୟୋତକ । ଦାନ୍ତେ ଏହି କାବ୍ୟଟି 'ମୃତ୍ୟୁପରେ ଆତ୍ମାର ଅବସ୍ଥା' ସମ୍ପର୍କୀୟ ବୋଲି ସ୍ୱୀକାର କରିଥିଲେହେଁ ଏହା ଏହି କାବ୍ୟର ଶେଷ ଉଦ୍ଦେଶ୍ୟ ନୁହେଁ । ସଂକ୍ଷେପରେ କହିଲେ ଦୁଃଖଦୁର୍ଦ୍ଦଶା ମଧ୍ୟରେ ଜୀବନ-ଧାରଣ କରୁଥିବା ବ୍ୟକ୍ତିମାନଙ୍କୁ ପ୍ରଶାନ୍ତି ପଥର ସନ୍ଧାନ ଦେବା ଓ ସେମାନଙ୍କୁ ସେହି ଆଡ଼କୁ ବାଟ କଢ଼େଇ ନେବା ହେଉଛି ଏହାର ଉଦ୍ଦେଶ୍ୟ ।



# ସେକ୍‌ସ ପିଅର

କେବଳ ଇଂରାଜୀ ସାହିତ୍ୟର ନାଟ୍ୟକାର ଓ କବିଭାବେ ନୁହନ୍ତି ବିଶ୍ୱ ସାହିତ୍ୟର ଶ୍ରେଷ୍ଠ କବି ଓ ନାଟ୍ୟକାର ରୂପେ ସେକ୍‌ସ ପିଅର ସୁବିଦିତ । ତାହାଙ୍କ ଜୀବନ-ଚରିତ ବିଷୟରେ ବହୁ ଆଲୋଚନା ଓ ଗବେଷଣାପୂର୍ବକ ଯାହା ଜଣାଯାଇଛି ତାହା ବେଶ୍ କୌତୁହଳ ଉଦ୍ଦୀପକ ।

ଆଭନ ନଦୀ କୂଳବର୍ତ୍ତୀ ଷ୍ଟ୍ରାଟଫୋର୍ଡ଼ ଗ୍ରାମ (ଅଧୁନା ଏହା ଏକ ସହରରେ ପରିଣତ)ରେ ଖ୍ରୀ: ୧୫୬୪ରେ ସେ ଜନ୍ମଗ୍ରହଣ କରିଥିଲେ । ଉକ୍ତ ଗ୍ରାମର ଗୀର୍ଜାରେ ସେହିବର୍ଷ ଏପ୍ରିଲ ୨୬ ତାରିଖରେ ତାଙ୍କର 'ଭୂବନ' ବା ଖ୍ରୀଷ୍ଟଧର୍ମ ଦୀକ୍ଷା ଗ୍ରହଣ ଉତ୍ସବ ଅନୁଷ୍ଠିତ ହୋଇଥିଲା । ତାଙ୍କର ପିତା ଥିଲେ ଉକ୍ତ ଗ୍ରାମର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି । ଏଣୁ ସେ ପୁତ୍ରର ଉପଯୁକ୍ତ ଶିକ୍ଷାର ସୁବ୍ୟବସ୍ଥା କରିଥିଲେ । ସ୍ଥାନୀୟ ପାଠଶାଳାରେ ସେ ଶିକ୍ଷା ଲାଭ କରିଥିଲେ । ଏହାପରେ ମାତ୍ର ଅଠରବର୍ଷ ବୟସରେ ଖ୍ରୀ: ୧୫୮୨ରେ ଆନ ହାଥାୱେଙ୍କ ସହ ତାଙ୍କର ବିବାହ ଖୁବ୍ ତରବରରେ ହୋଇଥିଲା । ଆନ୍ ଥିଲେ ତାଙ୍କଠାରୁ ଆଠବର୍ଷ ବଡ଼ । ବିବାହର ପାଞ୍ଚମାସ ପରେ ସେକ୍‌ସପିଅରଙ୍କ ପ୍ରଥମ କନ୍ୟା ସନ୍ତାନ ସୁସାନ୍ନା ଜନ୍ମ ହେଲା । ଏଣୁ କାହିଁକି ସେମାନଙ୍କ ବିବାହ ତରବରରେ ସମ୍ପନ୍ନ ହୋଇଥିଲା ତାହା ସହଜରେ ଅନୁମେୟ । ଏହି ବିବାହ ଥିଲା ସେମାନ

ବିବାହ । ବିବାହର ପ୍ରାୟ ଅଠେଇ ବର୍ଷ ପରେ ସେକ୍‌ସ ପିଅର ଦମ୍ପତି ଦୁଇଟି ଯମଜପୁତ୍ର ସନ୍ତାନ ଲାଭ କରିଥିଲେ ।

କେଉଁ ପରିସ୍ଥିତିରେ ଓ କେଉଁ ସମୟରେ ସେକ୍‌ସ ପିଅର ଲଣ୍ଡନ ଯାଇଥିଲେ ଓ ସେଠାରେ ଏକ ଥିଏଟର ଦଳ ସହ ସମ୍ପୃକ୍ତ ହୋଇଥିଲେ ତାହା ଜଣାଯାଇ ନାହିଁ । ଏ ବିଷୟରେ ବିଭିନ୍ନ କିମ୍ବଦନ୍ତୀ ଶୁଣିବାକୁ ମିଳେ । ଲଣ୍ଡନରେ ସେତେବେଳେ ବହୁ ବ୍ୟବସାୟିକ ରଙ୍ଗମଞ୍ଚ ଥିଲା । ମାତ୍ର ସେସବୁ କିପରି ଚାଲୁଥିଲା ଓ ସେଠାରେ କେଉଁ ଧରଣର ନାଟକ ପ୍ରଦର୍ଶିତ ହେଉଥିଲା ସେ ବିଷୟରେ ମଧ୍ୟ ବିଶେଷ ବିବରଣୀ ମିଳେ ନାହିଁ । ମାତ୍ର ଖ୍ରୀ: ୧୫୯୨ରେ ଜନସାଧାରଣଙ୍କ ମଧ୍ୟରେ ସେକ୍‌ସ ପିଅର ସୁପରିଚିତ ହୋଇଥିବା ଜଣାଯାଏ । ନାଟକ ଲେଖକ ଭାବେ ସେ ସେତେବେଳେ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ରବର୍ଟ ଗ୍ରୀନ୍ ନାମକ ତାହାଙ୍କ ସମକାଳୀନ ଜନୈକ ନାଟ୍ୟକାର ସେକ୍‌ସ ପିଅରଙ୍କ ବିଷୟରେ ଖୁବ୍ ଈର୍ଷାନ୍ୱିତ ମନ୍ତବ୍ୟ ପ୍ରକାଶ କରି ଅଛନ୍ତି । ଏଥିରୁ ସେକ୍‌ସ ପିଅରଙ୍କ କୃତିତ୍ୱ ଯେ ସେ ଯୁଗର ଦୃଷ୍ଟି ଆକର୍ଷଣ କରି ପାରିଥିଲା ତାହା ହିଁ ପ୍ରମାଣିତ ହୁଏ ।

ଏହାପରଠାରୁ ନାଟ୍ୟକାର ଓ ଅଭିନେତା ତଥା ନାଟ୍ୟ-ବ୍ୟବସାୟୀ ଭାବେ ତାହାଙ୍କ କାର୍ଯ୍ୟକଳାପର ବହୁବିବରଣୀ ମିଳୁଅଛି । ସେ ବହୁ ନାଟକ ରଚନା କରି ଜନପ୍ରିୟତା ଅର୍ଜନ କରିଥିଲେ । ଏହା ବ୍ୟତୀତ ତାହାଙ୍କ ରଚିତ 'ଭିନସ ଓ ଆଡୋନିସ (୧୫୯୩)' ନାମକ ଏକ ବର୍ଣ୍ଣନାତ୍ମକ କାବ୍ୟ ମଧ୍ୟ ସେତେବେଳେ ବହୁ ଜନପ୍ରିୟତା ଅର୍ଜନ କରିଥିଲା । ଅଳ୍ପ କେତେବର୍ଷ ମଧ୍ୟରେ ଏହାର ନଅଗୋଟି ସଂସ୍କରଣ ପ୍ରକାଶ ପାଇଥିଲା । ଖ୍ରୀ ୧୫୯୮ରେ ତାହାଙ୍କ ରଚିତ ଅନ୍ୟ ଏକ ବର୍ଣ୍ଣନାତ୍ମକ କାବ୍ୟ 'ଦି ରେପ ଅଫ ଲୁକ୍ରେସି' ପ୍ରକାଶ ପାଇଥିଲା । ତାହାଙ୍କ ରଚିତ କେତେକ କ୍ଷୁଦ୍ର କବିତା ବିଶେଷତଃ ୧୫୪ଟି ଚତୁର୍ଦ୍ଦଶ ପଦୀ କବିତାର ଏକ ସଙ୍କଳନ ୧୬୦୯ରେ ପ୍ରକାଶିତ ହୋଇଥିଲା । ଏହା ପ୍ରକାଶ ପାଇବା ପରେ ଗୀତିକବି ଭାବେ ତାହାଙ୍କ ଖ୍ୟାତି ଓ ପ୍ରତିଷ୍ଠା ବଢ଼ିଯାଇଥିଲା । ଏହି କବିତାଗୁଡ଼ିକୁ କବି ୧୫୯୩ରୁ ୧୫୯୮ ମଧ୍ୟରେ ରଚନା କରିଥିବା ସମ୍ଭବପର ।

ଖ୍ରୀ: ୧୫୯୪ରେ ସେକ୍ସପିଅର 'ଲର୍ଡ ଚେମ୍ବରଲିନ୍‌ଙ୍କ ଗଣ' ନାମକ ଏକ ନାଟ୍ୟ ସଙ୍ଘର ଅନ୍ୟତମ ପରିଚାଳକ ହୋଇଥିଲେ । ଏହି ଅନୁଷ୍ଠାନ ପାଇଁ ସେ କେତେକ ନାଟକ ରଚନା କରିବା ବ୍ୟତୀତ ରଙ୍ଗମଞ୍ଚରେ ପ୍ରଦର୍ଶିତ କେତେକ ନାଟକରେ ମଧ୍ୟ ନିଜେ ଅଭିନୟ କରୁଥିଲେ । ଖ୍ରୀ ୧୫୯୯ରେ ଏହି ଅନୁଷ୍ଠାନ 'ଗ୍ଲୋବ' ନାମକ ତାହାର ଏକ ସ୍ଥାୟୀ ରଙ୍ଗମଞ୍ଚ ନିର୍ମାଣ କରିଥିଲା । ପ୍ରଥମ ଜେମସ୍ ଖ୍ରୀ: ୧୬୦୩ରେ ଇଂଲଣ୍ଡ ସିଂହାସନ ଆରୋହଣ କଲାପରେ ଏହି ଅନୁଷ୍ଠାନ ପ୍ରତ୍ୟକ୍ଷ ଭାବରେ ରାଜକୀୟ ପୃଷ୍ଠପୋଷକତା ଲାଭ କରିଥିଲା ଓ ଏହି ମଞ୍ଚର ନୂତନ ନାମକରଣ ହୋଇଥିଲା 'ରାଜାଙ୍କ ଦଳ ବା 'The King's Company' ଇତମଧ୍ୟରେ ବିଭିନ୍ନ କ୍ଷେତ୍ରରେ ସେକ୍ସପିଅରଙ୍କର ବିକାଶ ସାଧିତ ହୋଇଥିଲା । ଖ୍ରୀ: ୧୫୯୬ରେ ସେ ରାଜକୀୟ ସମ୍ମାନ ଲାଭ କରିଥିଲେ । ଖ୍ରୀ: ୧୫୯୭ରେ ସେ ଷ୍ଟ୍ରାଟଫୋର୍ଡରେ ଏକ ଅଟ୍ଟାଳିକା କ୍ରୟ କରିଥିଲେ । ଏହା ଥିଲା ସେଠାର ଅନ୍ୟତମ ସୁଦୃଶ୍ୟ ଅଟ୍ଟାଳିକା । ଏହାପରେ ସେ ଲଣ୍ଡନ ଓ ଷ୍ଟ୍ରାଟ୍‌ଫୋର୍ଡରେ ବହୁ ଅଟ୍ଟାଳିକା ଓ ଭୂମିର ଅଧିକାରୀ ହୋଇଥିଲେ । ଖ୍ରୀ ୧୫୯୮ର ପ୍ରଥମାର୍ଦ୍ଧରେ ଇଂଲଣ୍ଡରେ ବ୍ୟାପକ ଖାଦ୍ୟାଭାବ ପଡ଼ିଥିଲା । ଏହି ସମୟରେ ଦେଶରେ ଶସ୍ୟର ମହଜୁଦ ପରିମାଣର ଏକ ତାଲିକା ପ୍ରସ୍ତୁତ କରାଯାଇଥିଲା । ଏହି ତାଲିକା ଅନୁଯାୟୀ ସେକ୍ସପିଅରଙ୍କ ନିକଟରେ ଏହି ସମୟରେ ସର୍ବାଧିକ ଶସ୍ୟ ରହିଥିବା ଜଣାଯାଏ । ଏଥିରୁ ସେ ସମୟର ସମାଜରେ ଜଣେ ଧନୀ ବ୍ୟକ୍ତି ଥିବା ପ୍ରମାଣିତ । ଏହିବର୍ଷ ଫ୍ରାନ୍‌ସିସ୍ ମେରେସ୍‌ଙ୍କ ପ୍ରଣୀତ ଏକ ପୁସ୍ତକ ପ୍ରକାଶିତ ହୋଇଥିଲା । ଲେଖକ ଏହି ଗ୍ରନ୍ଥରେ ସେକ୍ସପିଅରଙ୍କୁ ଇଂଲଣ୍ଡର ସର୍ବଶ୍ରେଷ୍ଠ ଲେଖକ ଭାବେ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାହାଙ୍କ ପ୍ରଣୀତ ଅନେକଗୁଡ଼ିଏ ନାଟକର ନାମ ମଧ୍ୟ ଉଲ୍ଲେଖ କରିଥିଲେ ।

ମୃତ୍ୟୁ ପୂର୍ବରୁ ସେକ୍ସପିଅର ଷ୍ଟ୍ରାଟଫୋର୍ଡକୁ ଫେରିଯାଇ ସେଠାରେ ବସବାସ କରୁଥିଲେ । ଖ୍ରୀ: ୧୬୧୬ ମାର୍ଚ୍ଚ ମାସରେ ସେ ଆପଣାର ଅଧିକାଂଶ ସମ୍ପତ୍ତି କନ୍ୟା ସୁସାନ୍ନାକୁ ଅର୍ପଣ କରିବା ନିମିତ୍ତେ ଏକ ଦଲିଲ ସମ୍ପାଦନ କରିଥିଲେ । ଏହାର ଅଳ୍ପ କେତେଦିନ ପରେ ଏପ୍ରିଲ ତା ୨୩ରିଖରେ ସେ ମୃତ୍ୟୁବରଣ କରିଥିଲେ ।

ସେକ୍ସ ପିଅରଙ୍କ ପ୍ରଣୀତ ଅନୁପମ ନାଟକଗୁଡ଼ିକ ହିଁ ତାହାଙ୍କ କୃତିତ୍ୱର ସର୍ବୋତ୍କୃଷ୍ଟ ନିଦର୍ଶନ । ଏଗୁଡ଼ିକୁ ଟ୍ରାଜେଡ଼ି (କରୁଣରସ ପ୍ରଧାନ), କମେଡ଼ି (ସୁଖାନ୍ତକ) ଓ ଇତିହାସଭିତ୍ତିକ ଭାବରେ ତିନି ଭାଗରେ ବିଭକ୍ତ । ଏଲିଜାବେଥ ଯୁଗର ନାଟକ ଭାବରେ ଶେଷୋକ୍ତ ପର୍ଯ୍ୟାୟର ନାଟକଗୁଡ଼ିକର ବୈଶିଷ୍ଟ୍ୟ ସ୍ୱୀକାର କରାଯାଇଥାଏ । ଇଂଲଣ୍ଡର ସମୃଦ୍ଧି ଓ ୧୫୮୮ରେ ସ୍ପେନ ନୌବହରଙ୍କୁ ଇଂଲଣ୍ଡ ବିଧ୍ୱସ୍ତ କରିବାପରେ ତାହାର ଖ୍ୟାତି ଓ ଗୌରବ ବୃଦ୍ଧି ପାଇଥିଲା । ଇଂଲଣ୍ଡର ଜନସାଧାରଣ ମଧ୍ୟ ଏହି ସମୟରେ ସ୍ୱଦେଶର ଇତିହାସ ବିଷୟରେ ସଚେତନ ହେବାକୁ ଆରମ୍ଭ କଲେ । ତ୍ରୟୋଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସମୟର ଇଂଲଣ୍ଡର ଗୌରବାବହ କାହାଣୀକୁ ଉପଜୀବ୍ୟ କରି ଏହି ସମୟରେ ବହୁ ନାଟକ ରଚିତ ହୋଇଥିଲା । ଉଦାହରଣ ସ୍ୱରୂପ ସେକ୍ସ ପିଅର ମଧ୍ୟ ୩ୟ ରିଚାର୍ଡ଼, ପଞ୍ଚମ ହେନେରୀ, ଜୁଲିଅସ ସିଜାର ପ୍ରଭୃତି ଉପଯୋଗାତ୍ମକ ନାଟକ ଇତିହାସକୁ ଭିତ୍ତିକରି ରଚନା କରିଥିଲେ । ନାଟକମାନଙ୍କର ନାମକରଣରୁ ମଧ୍ୟ ତାହାଙ୍କ ଇତିହାସ ସଚେତନତା ସହଜରେ ଅନୁମେୟ । ମାତ୍ର କିଂଗ୍‌ଲିଅର ନାଟକର ମୁଖ୍ୟଚରିତ୍ର ବ୍ରିଟେନର ଜଣେ କିମ୍ବଦନ୍ତୀପ୍ରସିଦ୍ଧ ରାଜା ହେଲେହେଁ ଏହା ଇତିହାସ-ଭିତ୍ତିକ ନାଟକ ନୁହେଁ, ଏହା ଏକ ଟ୍ରାଜେଡ଼ୀ ।

ସେକ୍ସ ପିଅରଙ୍କ ମୃତ୍ୟୁର ସାତବର୍ଷ ପରେ ଖ୍ରୀ: ୧୬୨୩ରେ ତାହାଙ୍କ ନାଟକର ଏକ ପ୍ରାଥମିକ ସଂକଳନ ପ୍ରକାଶ ପାଇଥିଲା । ସେ ପ୍ରଥମେ ଇତିହାସଭିତ୍ତିକ ନାଟକ ଓ ମିଳନାନ୍ତକ ନାଟକ ରଚନା କରିବାରେ ମନୋନିବେଶ କରିଥିବା ଜଣାଯାଏ । ନାଟ୍ୟସୃଷ୍ଟିର ପ୍ରଥମ ପର୍ଯ୍ୟାୟର ନାଟକ ହେଉଛି ଷଷ୍ଠ ହେନେରି, ୩ୟ ରିଚାର୍ଡ଼ Love's Laboures last, The Comedy of errors, The taming of the shrew. ୨ୟ ପର୍ଯ୍ୟାୟର ନାଟକ ହେଉଛି, ରୋମିଓ ଜୁଲିଏଟ୍, ମଧ୍ୟ ଗ୍ରୀଷ୍ମ ରାତ୍ରିର ସ୍ୱପ୍ନ, ୨ୟ ରିଚାର୍ଡ଼ ଓ ଭିନିସର ବଣିକ ଶେଷ ପର୍ଯ୍ୟାୟରେ ଷୋଡ଼ଶ ଶତାବ୍ଦୀର ଶେଷ ଦଶନ୍ଧିରେ ସେ ଲେଖିଥିଲେ—୪ର୍ଥ ହେନେରୀ, 'As you like it' ଜୁଲିଅସ ସିଜର ଓ ୫ମ ହେନେରୀ । ଖ୍ରୀ: ୧୬୦୦ରୁ ଖ୍ରୀ: ୧୬୦୬ ମଧ୍ୟରେ ସେ ହ୍ୟାମଲେଟ,

ଦ୍ୱାଦଶୀରାତ୍ରୀ ଓ ଅଥେଲୋ ନାଟକ ଏବଂ ୧୬୦୬ରୁ ୧୬୦୯ ମଧ୍ୟରେ କିଂଗ ଲିଅର, ମ୍ୟାକ୍‌ବେଥ, ଆଣ୍ଟୋନି ଓ କ୍ଲିଓ ପାଟ୍ରା ଏବଂ କାଉରିଓ ଲେନସ୍ ରଚନା କରିଥିବା ଜଣାଯାଇଅଛି । ତାହାଙ୍କ ଶେଷ ପର୍ଯ୍ୟାୟର ନାଟକ ହେଉଛି ସିମ୍ବେଲାଇନ, The winter's tale, ଝଡ଼ ଓ ୮ମ ହେନେଶ୍ୱ ! ସେ ସର୍ବମୋଟ ୩୭ଟି ନାଟକ ପ୍ରଣୟନ କରି ଯାଇଅଛନ୍ତି ।

ପ୍ରଣୀତ ନାଟକାବଳୀରୁ ତାହାଙ୍କ ସୃଜନଶକ୍ତିର ବିକାଶ ସ୍ପଷ୍ଟ ବାରି ହୋଇଯାଏ । ପ୍ରାଥମିକ ନାଟକାବଳୀରେ କବି ଶବ୍ଦଯୋଜନା ଓ ଛନ୍ଦ ବିଷୟରେ ଅଧିକ ସଚେତନ ଥିବା ଜଣାଯାଏ । ମାତ୍ର କ୍ରମେ ତାହାଙ୍କ ମିଳନାତ୍ମକ ନାଟକଗୁଡ଼ିକ ହୋଇଥିଲା ଅଧିକ ଚିନ୍ତା ଉଦ୍ଦୀପକ ଓ ଟ୍ରାଜେଡ଼ିଗୁଡ଼ିକ ହୋଇଥିଲା ଗାମ୍ଭୀର୍ଯ୍ୟର ପ୍ରତୀକ । ବିମୁକ୍ତ ଓ ମାନବିକ, ଶକ୍ତିର ଗୁରୁତ୍ୱ ସୂଚକ । ତାହାଙ୍କ ଶେଷ ପର୍ଯ୍ୟାୟର କୃତି ବିଶେଷତଃ କିଂଗଲିଅର ଟ୍ରାଜେଡ଼ିରେ ତାହାଙ୍କ ଭାଷା ଓ ଅର୍ଥର ଯେଉଁ ସାନ୍ଦ୍ରତା ସମ୍ପାଦିତ ହୋଇଛି ତାହା ଅତୁଳନୀୟ । The Tempestରୁ ତାହାଙ୍କ ଦାର୍ଶନିକ ସଚେତନାର ପରିଚୟ ମିଳିଥାଏ ।

ସ୍ୱୟଂ ଅଭିନେତା ଥିବାଯୋଗୁ ମଞ୍ଚଶିଳ୍ପୀ ସମ୍ପର୍କରେ ସେ ଥିଲେ ପ୍ରତ୍ୟକ୍ଷ ଅଭିଜ୍ଞତାର ଅଧିକାରୀ । ନାଟକ କିପରି ରଚିତ ହେଲେ ତାହା ସଫଳତାର ସହ ପ୍ରଦର୍ଶିତ ହୋଇପାରିବ ଏ ବିଷୟରେ ସେ ଥିଲେ ଅଭିଜ୍ଞ । ମାତ୍ର କେବଳ ଜନପ୍ରିୟ ନାଟକ ଲେଖିବାରେ ସେ ମନୋନିବେଶ କରି ନ ଥିଲେ ତାହାଙ୍କ ନାଟକାବଳୀ ମଞ୍ଚକଳା ଦୃଷ୍ଟିରୁ ଯେପରି ସାର୍ଥକ ସେହିପରି ବିବିଧଭାବ ଓ ଚିନ୍ତାରେ ସୁସମୃଦ୍ଧ ।

ଏଲିଜାବେଥ ଯୁଗରେ ରଙ୍ଗମଞ୍ଚ ସେପରି ଉନ୍ନତ ନ ଥିଲା । ସେକ୍ସପିଅର ତତ୍କାଳୀନ ମଞ୍ଚ ଉପଯୋଗୀ ନାଟକ ରଚନା କରିବା ଏକାନ୍ତ ସ୍ୱାଭାବିକ । ଆଧୁନିକ ମଞ୍ଚଠାରୁ ସେ ଯୁଗର ମଞ୍ଚଥିଲା ଭିନ୍ନ ଓ ଅନୁନ୍ନତ । ଏଥିରେ ଚରିତ୍ରମାନେ ସ୍ୱଗତ ଭାଷଣ କରୁଥିଲେ ଓ ସେଥିରେ (asides) ବ୍ୟବହାର ହେଉଥିଲା । ବ୍ୟବସାୟିକ ଥିଏଟରର ମୁକ୍ତାକାଶ ତଳେ ଦିନରେ ଅଭିନୟ ପ୍ରଦର୍ଶିତ ହେଉଥିଲା । ଏଣୁ ଏଥିରେ ଆଲୋକ ସମ୍ପାତର ଆବଶ୍ୟକତା ପଡ଼ୁନଥିଲା । ପ୍ରଚୁର ପୋଷାକ ବ୍ୟବହୃତ

ହେଉଥିଲା । ଦୃଶ୍ୟପଟ ସଂଯୋଜନା ଥିଲା ଏକପ୍ରକାର ଅଜ୍ଞାତ । ଫଳରେ
କୌଣସି ଏକ ଦୃଶ୍ୟର ସ୍ଥାନ; ସମସ୍ତ ପ୍ରଭୃତି ଚରିତ୍ରମାନଙ୍କ ଉକ୍ତିରେ
ସୂଚିତ ହେଉଥିଲା । ରଙ୍ଗମଞ୍ଚରେ ପର୍ଦ୍ଦା ପଡ଼ିବାର ବ୍ୟବସ୍ଥା ନ ଥିଲା ।
ଚରିତ୍ରମାନେ ମଞ୍ଚକୁ କେବଳ ଆଗମନ କରୁଥିଲେ ଓ ଅଭିନୟ ଶେଷ
ହେଲାପରେ ପ୍ରସ୍ଥାନ କରୁଥିଲେ । କେହି ଯଦି ମଞ୍ଚଉପରେ ପଡ଼ିରହୁଥିଲା
ତେବେ ଅନ୍ୟ ଜଣେ ଆସି ତାକୁ ନେଇଯାଉଥିଲା । ମୁଖ୍ୟ ମଞ୍ଚଟି
ଏକାଧାରରେ ଗ୍ରାମାଞ୍ଚଳ, ସହରର ରାଜପଥ, ଛକ, ପ୍ରକୋଷ୍ଠ ପ୍ରଭୃତି
ବିଭିନ୍ନ ରୂପରେ ଗୃହୀତ ହେଉଥିଲା । ମୁଖ୍ୟ ମଞ୍ଚର ପୃଷ୍ଠଭାଗରେ ଯେଉଁ
ସ୍ୱଳ୍ପପରିମିତ ସ୍ଥାନ ଥିଲା ତାହାକୁ ପର୍ଦ୍ଦାଦ୍ୱାରା ଆବୃତ୍ତ କରାଯାଇ ଏହାକୁ
କ୍ଷୁଦ୍ର ପ୍ରକୋଷ୍ଠ, ଗଳିର ଦୋକାନଘର, ସମାଧି ପ୍ରଭୃତି ରୂପେ ଗ୍ରହଣ
କରାଯାଉଥିଲା । ଏହା ଉପରେ ଥିଲା ଉପର ମଞ୍ଚ । ଏହା ଗଳିରାସ୍ତା;
ଉପରମହଲାର ଝରକା, ଯୁଦ୍ଧକ୍ଷେତ୍ର ଆଡକୁ ଥିବା ପାହାଚର ଉପରିଭାଗ,
ପ୍ରଭୃତି ରୂପେ ବ୍ୟବହୃତ ହେଉଥିଲା । ଦୃଶ୍ୟ ସମ୍ପର୍କୀୟ ଅଧିକ ବିବରଣୀ
ଚରିତ୍ରମାନଙ୍କ ସଂଳାପରେ ହିଁ ସଂଯୋଜିତ ହେଉଥିଲା । ଦୃଶ୍ୟପଟର
ଅଭାବଯୋଗୁ ଚରିତ୍ରମାନଙ୍କ କାର୍ଯ୍ୟକଳାପ ଅବ୍ୟାହତ ରହୁଥିଲା । ଏହା
ଫଳରେ ବାସ୍ତବତା ସମ୍ପର୍କୀୟ ଭ୍ରମ ଅଧିକ ସଫଳ ହୋଇପାରୁଥିଲା ।
ନାଟକ ହୋଇପଡ଼ୁଥିଲା ଅଧିକ ଗତିଶୀଳ ଓ କେନ୍ଦ୍ରୀଭୂତ ।

ସେକ୍‌ସପିଅର ତାହାଙ୍କ ଜୀବିତ କାଳରେ ବିଶିଷ୍ଟ ଲେଖକ ଭାବେ
ସମ୍ମାନିତ ହୋଇଥିଲେ । ରେଷ୍ଟୋରେସନ୍ ଯୁଗରେ ଓ ୧୮ଶ ଶତାବ୍ଦୀର
ଯୁଗ ରୁଚିକୁ ଦୃଷ୍ଟି ତାହାଙ୍କ ରଚନା ସଂଶୋଧିତ ଓ ପରିମାର୍ଜିତ ହୋଇ-
ଥିଲେହେଁ କ୍ରମେ ତାହାଙ୍କ ଯଶ ବିସ୍ତାର ଲାଭ କରିଥିଲା ମାତ୍ର ନବକ୍ଲାସିକାଲ
ଯୁଗରେ ସେ କ୍ଲାସିକାଲ ନାଟ୍ୟରୀତି ଅନୁସରଣ ନ କରିଥିବା ଯୋଗୁଁ
ଆଶାନୁରୂପ ସ୍ୱୀକୃତି ଲାଭ କରିପାରିନଥିଲେ । ରୋମାଣ୍ଟିକ ଆନ୍ଦୋଳନ
କାଳରେ କବିଙ୍କ ପ୍ରତିଷ୍ଠା ଅଧିକ ବଢ଼ିଯାଇଥିଲା ଓ ସେ ଆନ୍ତର୍ଜାତିକ
ବ୍ୟକ୍ତିରେ ପରିଣତ ହୋଇଥିଲେ । ୧୯ଶ ଶତାବ୍ଦୀରେ ତାହାଙ୍କ ମହତ୍ତ୍ୱ
ବିଶ୍ୱବ୍ୟାପି ସ୍ୱୀକୃତି ଅର୍ଜନ କରିଥିଲା ।



# ଡେନ୍‌ମାର୍କର ରାଜକୁମାର ହାମ୍‌ଲେଟ୍‌

କଥାବସ୍ତୁ—ରୋମାଣ୍ଟିକ ବିୟୋଗାନ୍ତକ

ମୁଖ୍ୟ ଚରିତ୍ର—

ହାମ୍‌ଲେଟ୍‌—ଡେନମାର୍କର ରାଜକୁମାର

କ୍ଲଡ଼ିଅସ—ଡେନମାର୍କ ରାଜାଙ୍କ ସାନଭାଇ ଓ ପରବର୍ତ୍ତୀ ରାଜା

ହୋରାସିଓ—ହାମଲେଟଙ୍କ ବନ୍ଧୁ

ମାତ୍ର ଦୁଇ ମାସ ପୂର୍ବେ ଡେନ୍‌ମାର୍କର ରାଜାଙ୍କର ହଠାତ୍ ଅସମୟରେ ମୃତ୍ୟୁ ହୋଇଗଲା । ଏବେ ତିନଦିନ ହେଲା ତାହାଙ୍କ ପ୍ରେତାତ୍ମା ରାଜପ୍ରାସାଦ ଗମ୍ବୁଜ ଉପରେ ଆସି ରାତିରେ ଖୁବ୍ ଜୋର୍‌ରେ ବୁଲବୁଲ କରୁଛି । ଚତୁର୍ଥ ଦିନ ରାତିରେ ରାଜକୁମାର ହାମଲେଟଙ୍କ ବନ୍ଧୁ ହୋରାସିଓ ରାଜକୁମାରଙ୍କୁ ବାପାଙ୍କ ପ୍ରେତାତ୍ମାକୁ ଦେଖାଇବାକୁ ଆସିଛନ୍ତି । ପିତାଙ୍କ ଆକସ୍ମିକ ମୃତ୍ୟୁଯୋଗୁ ରାଜକୁମାର ଖୁବ ଦୁଃଖାଭିଭୂତ ଓ ଅବସାଦଗ୍ରସ୍ତ ହୋଇ ପଡ଼ିଥାନ୍ତି । ପିତାଙ୍କ ରହସ୍ୟଜନକ ମୃତ୍ୟୁ ତାଙ୍କୁ ବିଚଳିତ କରି ଦେଇଥାଏ । ଇତିମଧ୍ୟରେ ତାଙ୍କ ମାଆ ବାପାଙ୍କ ମୃତ୍ୟୁ ପରେ ପରେ ତାଙ୍କ ଦାଦାଙ୍କୁ ବିବାହ କରିଛନ୍ତି । ମାଆଙ୍କର ଏପରି କାର୍ଯ୍ୟକୁ ମଧ୍ୟ ସେ ପସନ୍ଦ କରି ପାରୁନଥାନ୍ତି ।

ଗମ୍ଭୀର ରାତ୍ରରେ ହାମ୍‌ଲେଟ ପିତାଙ୍କ ପ୍ରେତାତ୍ମାକୁ ଦେଖିବାକୁ ପାଇଛନ୍ତି । ପ୍ରେତାତ୍ମା ତାଙ୍କୁ ଯାହା କହିଲେ ତାହା ଶୁଣି ସେ ଭୟ ପାଇଗଲେ । ପିତାଙ୍କର ସର୍ପାଘାତରେ ମୃତ୍ୟୁ ହୋଇଛି ବୋଲି ଅନୁମାନ କରାଯାଉଥିଲା । ମାତ୍ର ପ୍ରେତାତ୍ମାଙ୍କ ଠାରୁ ଶୁଣି ସେ ଜାଣିପାରିଲେ ଯେ ସର୍ପାଘାତରେ ତାଙ୍କର ମୃତ୍ୟୁ ହୋଇ ନାହିଁ । ତାର ଦାଦା ହିଁ ବାପାଙ୍କୁ ହତ୍ୟା କରିଛନ୍ତି । ତାର ସେଇ ଦାଦା ଏବେ ରାଜଗାଦିରେ ବସିଛନ୍ତି । ପ୍ରେତ କହିବା ଅନୁସାରେ ସେ କେବଳ ପିତାଙ୍କ ହତ୍ୟାକାରୀ ନୁହନ୍ତି—ସେ କାମୁକ, ନଷ୍ଟଚରିତ୍ର ଓ ତାର ମାତାଙ୍କ ସହ ପୂର୍ବରୁ ଅବୈଧ ସମ୍ପର୍କ ରଖିଛନ୍ତି । ଏହା ଶୁଣି ବିସ୍ମୟରେ ରାଜକୁମାର ହତବାକ୍ ହୋଇଗଲେ । ପ୍ରେତ ତାଙ୍କୁ ଶେଷରେ ଉପଦେଶ ଦେଇ କହିଲେ—"ଯାହାହେବାର ତ ହୋଇଗଲା, ତୁ ଆଉ ତୋର ମାଆ ଗେଟ୍ରୁଡଙ୍କୁ ଦଣ୍ଡ ଦେବୁ ନାହିଁ ବା କଷ୍ଟ ଦେବୁ ନାହିଁ । ସେ ଯେଉଁ ଅପରାଧ କରିଛି ସେଥିପାଇଁ ଭଗବାନ ତାଙ୍କୁ ଦଣ୍ଡ ଦେବେ ।"

ଏହା ଶୁଣିବା ପରେ ଏଇ ରହସ୍ୟଜନକ ଘଟଣା ସମ୍ପର୍କରେ ହାମଲେଟଙ୍କ ମନରେ ଜନ୍ମିଥିବା ସବୁ ସନ୍ଦେହ ଦୂର ହୋଇଯିବା କଥା । ଏଭଳି ଦୁରାତ୍ମା ଦାଦାଙ୍କୁ ହତ୍ୟା କରିବାକୁ ସେ ଇଚ୍ଛା କରିବା ସ୍ୱାଭାବିକ । ମାତ୍ର ହାମଲେଟ ଥିଲେ ଖୁବ୍ ଆତ୍ମନିଷ୍ଠ ଓ ବିଚାରପ୍ରବଣ । ତା ମନରେ ପୁଣି ଏକ ସନ୍ଦେହ ଜାତ ହେଲା । ଏଇ ପ୍ରେତ ତାର ପିତାଙ୍କ ପ୍ରେତ ନ ହୋଇ ବି ପାରେ । ହୁଏତ ଆଉ କାହାର ପ୍ରେତାତ୍ମା ତାଙ୍କୁ କଷ୍ଟଦେବା ପାଇଁ ଏପରି କହିବା ମଧ୍ୟ ସମ୍ଭବପର । ଏଣୁ ପ୍ରେତାତ୍ମାର ନିର୍ଦ୍ଦେଶ ପାଳନ କରିବେ କି ନାହିଁ, ଏହାର ସମାଧାନ କରିବା ତା ପକ୍ଷେ ଏକ ଜଟିଳ ସମସ୍ୟା ହୋଇପଡ଼ିଲା । ମନରେ ଚାଲିଲା ତୁମୁଳ ସଂଘର୍ଷ । ସେ ଆପଣାର ଅନ୍ତରଙ୍ଗ ବନ୍ଧୁ ହୋରାସିଓ ପ୍ରଭୃତିଙ୍କ ନିକଟରେ ଆପଣାର ମନକଥା ପ୍ରକାଶ କରିଛି ଓ ପ୍ରେତାତ୍ମାର ନିର୍ଦ୍ଦେଶ ବିଷୟ ଅନ୍ୟ କେଉଁଠି ପ୍ରକାଶ ନ କରିବାକୁ ଅନୁରୋଧ କରିଛି । ଘଟଣାଟିର ପ୍ରକୃତ ରହସ୍ୟ ଜାଣିବା ଲାଗି ସେ ଏକ ପରିକଳ୍ପନା କରି ବନ୍ଧୁମାନଙ୍କୁ କହିଛି—"ମୁଁ ଆଜଠାରୁ ବିଚିତ୍ର ଭାବେ କଥାବାର୍ତ୍ତା କରିବି । ଏଣୁ ମୋ ଆଚରଣରୁ ତମେ ଭାବିବ ନାହିଁ ଯେ ମୁଁ ପାଗଳ ହୋଇଯାଇଛି ।'

ଏଣେ କ୍ଲଡ଼ିଅସ୍ ରାଜା ହେବା ପରେ ଡେନମାର୍କ ସହ ନରଓ୍ୱେର ସମ୍ପର୍କ ଖରାପ ହୋଇଯାଇଥାଏ । ସେ ଯୁଦ୍ଧର ଆଶଙ୍କା କରୁଥାଆନ୍ତି । ତା'ଛଡ଼ା ଗେଟ୍ରୁଡ଼ଙ୍କୁ ଏତେ ଶୀଘ୍ର ବାହା ହୋଇ ପଡ଼ିଥିବାରୁ ମଧ୍ୟ ତାଙ୍କ ମନରେ ଅନୁଶୋଚନା ଜାତ ହୋଇଥାଏ । ବିବେକର ଦଂଶନ ସେ ତୀବ୍ର ଭାବରେ ଅନୁଭବ କରୁଥାନ୍ତି । ରାଜକୁମାର ହାମଲେଟଙ୍କ ବିଷଣ୍ଣତା ଓ ଏହି ବିବାହରେ ତାଙ୍କର ଅନିଚ୍ଛା ବିଷୟ ଜାଣି ତାଙ୍କ ହୃଦୟ ଦୁଶ୍ଚିନ୍ତାଗ୍ରସ୍ତ ହୋଇପଡ଼ିଥାଏ । ତାଙ୍କର ଆଶଙ୍କା; ହାମଲେଟ ହୁଏତ କିଛି ଗୋଟାଏ ଗଣ୍ଡଗୋଳ ସୃଷ୍ଟି କରି ରାଜଗାଦି ଦଖଲ କରିନେଇପାରେ ।

ଏବେ ପୁଣି କୁମାରଙ୍କ ହାବଭାବ ଆହୁରି ବିଚିତ୍ର ହୋଇ ପଡ଼ୁଛି, ଅସଂଲଗ୍ନ ଭାବେ ସେ କଥାବାର୍ତ୍ତା କରୁଛନ୍ତି । କ୍ଲଡ଼ିଅସ ଭାବିଲେ କୁମାର ବୋଧହୁଏ ପାଗଳ ହୋଇଯାଇଛି । ତଥାପି ସେ ଏ ବିଷୟରେ ସୁନିଶ୍ଚିତ ହୋଇପାରୁ ନଥାନ୍ତି । ପାଗଳ ହୋଇଯାଇଥିବାରୁ ତାର କଥାବାର୍ତ୍ତା ଓ କାର୍ଯ୍ୟକଳାପ ଏପରି ହୋଇଛି ଅଥବା ଏହା ପଛରେ ତାର କିଛି ମତଲବ ରହିଛି ଏହା ଜାଣିବା ଦରକାର । କିଛି ଗୋଟାଏ ଉଦ୍ଦେଶ୍ୟ ରଖି ସେ ହୁଏତ ଏପରି କରିବା ମଧ୍ୟ ସମ୍ଭବପର । ଏହା ଜାଣିବାଲାଗି ସେ ହାମଲେଟର ଦୁଇଜଣ ବନ୍ଧୁଙ୍କ ସାହାଯ୍ୟ ନେଉଟଲେ । ଏଇ ଦୁଇ ବନ୍ଧୁଙ୍କ ନାମ ହେଉଛି ରୋଜେନକ୍ରାଞ୍ଜ ଓ ଗିଲଡେନଷ୍ଟର୍ନ । କୁମାରଙ୍କ କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବା ଲାଗି ଏ ଦୁହିଁଙ୍କୁ ନିଯୁକ୍ତ କରାଗଲା । ମାତ୍ର ହାମଲେଟ ଖୁବ୍ ବୁଦ୍ଧିମାନ । ଦାଦାଙ୍କ ଅଭିପ୍ରାୟ ସେ ବୁଝିପାରିଲା । ଦାଦା ନିଯୁକ୍ତ କରିଥିବା ବନ୍ଧୁମାନଙ୍କ ପ୍ରଶ୍ନର ସେ ଏପରି ଉତ୍ତର ଦେଲା ଯେ ସେମାନେ ଅଡ଼ୁଆରେ ପଡ଼ିଗଲେ । ହାମଲେଟର ପ୍ରକୃତ ଅବସ୍ଥା ଧାରଣା କରିପାରିଲେ ନାହିଁ ।

ରାଜଭବନର ମୁଖ୍ୟ ପରିଚାଳକଙ୍କ ନାମ ହେଉଛି ପଲନିଅସ । ବୟସରେ ସେ ବୃଦ୍ଧ ଓ ମହା ଗପୁଡ଼ି । ତାଙ୍କ ଝିଅର ନାମ ଅଫିଲିଆ । ସେ ଦେଖିବାକୁ ଖୁବ୍ ସୁନ୍ଦରୀ । ପଲନିଅସଙ୍କ ଧାରଣା ହେଲା, ବୋଧହୁଏ ଅଫିଲିଆ ପ୍ରତି ଅତ୍ୟନ୍ତ ପ୍ରେମାଶକ୍ତ ହେବା ଫଳରେ ହାମଲେଟର ବ୍ୟବହାର ଏପରି ହୋଇପଡ଼ୁଛି । ହାମଲେଟ ପ୍ରକୃତରେ ଇତିମଧ୍ୟରେ ଅଧିକ ବିଚଳିତ ଓ ଅବସାଦଗ୍ରସ୍ତ, ଦୁଃଖରେ ସେ ଏକପ୍ରକାର ଭାଙ୍ଗି

ପଡ଼ୁଥାଏ । ପଲନିଅସ ଓ ତାର ଦୁଇ ବନ୍ଧୁ ତାଙ୍କୁ ପଦେ ପଦେ ଜଗି ଥାଆନ୍ତି । କାହାର ବିଷୟରେ ସେ କିଛି ସ୍ଥିର କରିପାରୁନଥାଏ । ଏପରି ସେ ଭାବିଲା; ଅଫିଲିଆ ମଧ୍ୟ ତା ବିରୁଦ୍ଧରେ ଯାଉଛି । କଣ ଘଟିଛି ତାହା ତ ଠିକ୍ ଭାବେ ଜାଣି ହେଉ ନାହିଁ । ଏପରି ଅବସ୍ଥାରେ ସୁଯୋଗ ଉଣ୍ଡି ଦାଦାଙ୍କୁ ହତ୍ୟା କରିବା ବିଷୟକୁ ତା ମନ ସ୍ୱୀକାର କରିପାରୁ ନଥାଏ ।

ହାମଲେଟ ମନ ଏହିପରି ଆନ୍ଦୋଳିତ ହେଉଥିବା ସମୟରେ ଥରେ ଗୋଟାଏ ଯାତ୍ରାଦଳ ରାଜଭବନକୁ ଆସିଲେ । ହାମଲେଟ ଭାବିଲା, ଯାହେଉ ଗୋଟାଏ ସୁଯୋଗ ମିଳିଗଲା । ଏଇ ଯାତ୍ରାଦଳ ସାହାଯ୍ୟରେ ସେ ତା' ଦାଦାଙ୍କ ପ୍ରକୃତ ରୂପ ବୁଝିପାରିବ, ଜାଣିପାରିବ ସେ ଦୋଷୀ କି ନିର୍ଦ୍ଦୋଷୀ । ପ୍ରେତାତ୍ମା କହିବା ଅନୁଯାୟୀ ତାର ବାପା ଯେପରି ମଲେ ସେଇ ଦିନର ବିଷୟକୁ ନେଇ ଗୋଟାଏ ନାଟକ ଲେଖିବ ଓ ଏଇ ଯାତ୍ରାଦଳ ଦାଦା ଓ ଦରବାରର ଲୋକଙ୍କ ଆଗରେ ତାହାର ଅଭିନୟ ପ୍ରଦର୍ଶନ କରାଇବେ । ଅଭିନୟ ହେଲାବେଳେ ଦାଦାଙ୍କ ଭାବଭଙ୍ଗୀ ଓ ଆଚରଣକୁ ଭଲ ଭାବେ ଲକ୍ଷ୍ୟ କଲେ ସେ ଦୋଷୀ କି ନିର୍ଦ୍ଦୋଷୀ ତାହା ଜଣା ପଡ଼ିଯିବ ।

ତାହାହିଁ କରାଗଲା । ବାସ୍ତବିକ ହାମଲେଟ୍‌ର ଏଇ ପରିକଳ୍ପନାଟି ବେଶ୍ ଫଳପ୍ରଦ ହେଲାଭଳି ମନେହେଲା । ଅଭିନୟ ବେଳେ ତାର ଦାଦା ଏପରି ବିଚଳିତ ହୋଇପଡ଼ିଲେ ଯେ ଶେଷ ଦୃଶ୍ୟ ଅଭିନୀତ ହେବା ପୂର୍ବରୁ ସେ ନିଜ ସ୍ଥାନରୁ ଉଠି ଚାଲିଗଲେ । ରାଜାଙ୍କ ପ୍ରତିକ୍ରିୟାରୁ ହାମଲେଟ ଭାବିଲା, ତାର ଦାଦା ପ୍ରକୃତରେ ଦୋଷୀ; ପ୍ରେତାତ୍ମା ଯାହା କହିଛି ତାହା ସମ୍ପୂର୍ଣ୍ଣ ଠିକ୍ । ଏଣୁ ସେ ପିତାଙ୍କ ହତ୍ୟାକାରୀ ଲମ୍ପଟ ଦାଦାଙ୍କୁ ହତ୍ୟା କରିବାକୁ ମନସ୍ଥ କଲା । ପ୍ରକୃତରେ ଆଉ ବିଳମ୍ବ ବା କାହିଁକି କରିବ ? ପ୍ରଥମେ ସେ ଭାବିଲା, ଦାଦା ଖେଳୁଥିବା ବେଳେ ତାଙ୍କୁ ମାରିବ; ମାତ୍ର ଯଥାସମୟରେ ସେ ଏହାକୁ କାର୍ଯ୍ୟକାରୀ କରିପାରିଲା ନାହିଁ । ସେ ପୁଣି ଭାବିଲା, ଦାଦା ପ୍ରାର୍ଥନା କରୁଥିବା ବେଳେ ତାଙ୍କ ପଛଆଡ଼ୁ ଛୁରିଭୁସି ହତ୍ୟା କରିବା ସବୁଠାରୁ ସହଜ । ମାତ୍ର ଏହାକୁ କାର୍ଯ୍ୟରେ

ପରିଣତ କରିବାକୁ ଯିବା ମୁହୂର୍ତ୍ତରେ ସେ ସ୍ଥିର କଲା, ଏପରି ଭାବରେ ହତ୍ୟା କରିବାଟା ଅନୋଚିତ୍ୟ । ଏମିତି ହେଲେ ବାପାଙ୍କ ଭଳି ପାପୀ ଭଗବାନଙ୍କ କୃପା ଲାଭ କରିବେ ।

ପୁଅର ଆଚରଣ ଦିନକୁ ଦିନ ବିଚିତ୍ରକର ହୋଇ ପଡ଼ୁଛି । ରାଣୀ ମଧ୍ୟ ଏଥିପାଇଁ ଚିନ୍ତିତା । ହାମଲେଟଙ୍କୁ ଗାଳିଦେଇ ତାଙ୍କୁ ଠିକ୍ ବାଟକୁ ଆଣିବା ଦରକାର । ଏଣୁ ସେ ଦିନେ ତାଙ୍କୁ ଅନ୍ତଃପୁରକୁ ଡକାଇ ନେଲେ । ସାବଧାନ କରାଇଦେବା ଲାଗି କହିଲେ, "ତୋର ବାପା ଏବେ ରାଜା—ମାତ୍ର ତାଙ୍କ ପ୍ରତି ତୋର ଆଚରଣ ଖୁବ୍ ଔଦ୍ଧତ୍ୟପୂର୍ଣ୍ଣ ହେଉଛି । ଏ ବିଷୟରେ ତୋର ସତର୍କ ହେବା ଉଚିତ ।"

ଏହା ଶୁଣିବା ମାତ୍ରେ ପ୍ରେତ ବାପାଙ୍କ ସମ୍ପର୍କରେ ଯାହା କହିଥିଲା ତାହା ହାମ୍‌ଲେଟର ମନକୁ ଆସିଗଲା । ସେ ନରମ ଭାବରେ କଥାବାର୍ତ୍ତା କରିବା ପରିବର୍ତ୍ତେ ଏପରି ଉଚ୍ଚକଣ୍ଠରେ ଓ ଉଗ୍ରଭାବରେ କଥାବାର୍ତ୍ତା କଲା ଯେ ରାଣୀ ଡରିଗଲେ । ସେ ଚିତ୍କାର କଲେ— 'ମୋତେ ରକ୍ଷାକର' । ରାଣୀ ଚିତ୍କାର କଲା ପରେ ଘରର ପର୍ଦ୍ଦା ପଛ ପଟେ କୋଳାହଳ ସୃଷ୍ଟି ହେଲା । ହାମଲେଟର ଧାରଣା ହେଲା, ପର୍ଦ୍ଦା ପଛ ପଟେ ତାର ବାପା ଲୁଚିରହି ସେମାନଙ୍କ କଥାବାର୍ତ୍ତା ଶୁଣୁଛନ୍ତି । ଏହା ଭାବି ସେ ଖୋଳରୁ ଖଣ୍ଡା କାଢ଼ି ପର୍ଦ୍ଦାକୁ ଲକ୍ଷ୍ୟକରି ଖୁବ୍ ଜୋର୍‌ରେ ଆଘାତ କରିଛି ।

ପର୍ଦ୍ଦା ପଛପଟେ ପ୍ରକୃତରେ ପଲନିଅସ ଆସି ଠିଆ ହୋଇଥିଲେ । ଖଣ୍ଡାଟି ତାଙ୍କ ଦେହରେ ବିଦ୍ଧ ହୋଇଯିବାରୁ ସଙ୍ଗେ ସଙ୍ଗେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ରାଜା ଦେଖିଲେ, ହାମଲେଟ୍ କ୍ରମେ ଦୁର୍ଦ୍ଦାନ୍ତ ହୋଇପଡ଼ୁଛି । ଯେ କୌଣସି ମୁହୂର୍ତ୍ତରେ ସେ ତାଙ୍କୁ ଆକ୍ରମଣ କରିପାରେ । ଏଣୁ ସେ ତାକୁ ସଙ୍ଗେ ସଙ୍ଗେ ତାର ଦୁଇ ବନ୍ଧୁ ରୋଜେନ କ୍ରାଞ୍ଜ ଓ ଗିଲଡେନଷ୍ଟର୍ନଙ୍କ ସଙ୍ଗେ ଇଂଲଣ୍ଡକୁ ପଠାଇ ଦେବାକୁ ସ୍ଥିର କଲେ । ବନ୍ଧୁ ଦ୍ୱୟଙ୍କ ହାତରେ ଗୋପନରେ ଏକ ପତ୍ର ପଠାଇଥିଲେ । ସେଥିରେ ଲେଖାଥିଲା—"ହାମଲେଟ ଇଂଲଣ୍ଡରେ ପହଞ୍ଚିଲା ପରେ ତାକୁ ହତ୍ୟା କରିବ ।" ଯୋଗକୁ ଚିଠିଟି ହାମଲେଟ ହାତରେ

ପଡ଼ିଗଲା । ସେ ରାଜାଙ୍କ ଚିଠିକୁ ସାମାନ୍ୟ ପରିବର୍ତ୍ତନ କରିଦେଲା, ଯାହାର ଅର୍ଥହେଲା, "ଇଂଲଣ୍ଡରେ ପହଞ୍ଚିଲା ପରେ ପତ୍ରବାହକ ଦୁହିଁଙ୍କୁ ହତ୍ୟା କରିବ ।' ଏତକ କରିଦେଇ ସେ ଇଂଲଣ୍ଡରୁ ଡେନମାର୍କକୁ ଫେରି ଆସିଲା ।

ଏଣେ ହାମ୍‌ଲେଟ୍‌ର ଅନୁପସ୍ଥିତିରେ ସେଇ ଆନନ୍ଦବିହୀନ ରାଜ୍ୟରେ ବହୁ ଘଟଣା ଘଟି ଯାଇଥାଏ । ଅଫେଲିଆକୁ ପୂର୍ବରୁ ଜଣେ ଭଲ ପାଉଥିଲେ । ସେଇ ପ୍ରେମିକ ବ୍ୟକ୍ତି ତାକୁ ପ୍ରତ୍ୟାଖ୍ୟାନ କଲେ । ଏଣୁ ସେ ପାଗଳିନୀ ହୋଇଗଲା । ଏହାପରେ ହଠାତ୍ ଦିନେ ପାଣିରେ ବୁଡ଼ି ମୃତ୍ୟୁ ମୁଖରେ ପଡ଼ିଲା । ପୋଲନିଅସଙ୍କ ପୁତ୍ର ଲେଏରଟିସ୍ ସ୍ୱଭାବତଃ ରାଗୀ । ପିତାଙ୍କ ହତ୍ୟା ଖବର ଶୁଣି ସେ ଏହାର ପ୍ରତିଶୋଧ ନେବାଲାଗି ଫ୍ରାନ୍‌ସରୁ ଡେନମାର୍କ ଫେରି ଆସିଥାଏ ଓ ଦଳେ ଲୋକ ଯୋଗାଡ଼ କରିଥାଏ । ସେ ଭାବିଥିଲା, ରାଜା କ୍ଲଡ଼ିଅସ ହିଁ କୁଟିଳମନା, ସିଏ ତାର ବାପାଙ୍କୁ ହତ୍ୟା କରିଛନ୍ତି । ମାତ୍ର ରାଜା ତାକୁ ଜଣାଇଦେଲେ—"ମୁଁ ଏଇ କାମ କରି ନାହିଁ । ଏହା ହେଉଛି ସେଇ ବଦମାସ ହାମଲେଟ୍‌ର କାମ । ସେଇ ପାଗଳଟାକୁ ହତ୍ୟା ନ କଲେ କେହି ଶାନ୍ତିରେ ରହି ପାରିବେ ନାହିଁ । ମୁଁ ତାକୁ ମାରିବାଲାଗି ଗୋଟାଏ ଚକ୍ରାନ୍ତ କରିଛି । ତୁମେ ବରଂ ମୋତେ ଏ ବିଷୟରେ ସାହାଯ୍ୟ କର ।

ରାଜାଙ୍କ ଉଦ୍ୟମରେ ହାମ୍‌ଲେଟ୍ ଓ ଲେଏରଟିସ୍‌ଙ୍କ ମଧ୍ୟରେ ଖଣ୍ଡାରେ ଯୁଦ୍ଧ ହେବା ସ୍ଥିରହେଲା । ହାମ୍‌ଲେଟ୍ ଖଣ୍ଡା ଚାଳନାରେ ସୁଦକ୍ଷ । ତାକୁ ହରାଇବା ସହଜ କଥା ନୁହେଁ । ରାଜା ଏଥିପାଇଁ ଲେଏରଟିସ୍‌ଙ୍କୁ ଏକ କୁପରାମର୍ଶ ଦେଇଛନ୍ତି । ତାଙ୍କର ପ୍ରରୋଚନାରେ ଲେଏରଟିସ୍ ତା ଖଣ୍ଡାଧାରକୁ ବିଷଲିପ୍ତ କରିଦେଲା । ଏଇ ଯୁଦ୍ଧରେ କାଳେ ଅନ୍ୟାୟ ହେବ ବୋଲି ସନ୍ଦେହ ଜନ୍ମିପାରେ, ସେଥିପାଇଁ ରାଜା ହାମ୍‌ଲେଟ୍ ଉପରେ ବାଜି ରଖିଲେ । ଯୁଦ୍ଧବେଳେ ହାମ୍‌ଲେଟ୍ ଶ୍ରାନ୍ତ ତୃଷାର୍ତ୍ତ ହେଲେ ନିଶ୍ଚୟ ପାଣି ଖୋଜିବ । ଏଣୁ ତା ହାତ ପାହାନ୍ତାରେ ପାଣି କପ୍‌ଟିଏ ରଖାଗଲା । ସେଥିରେ ମଧ୍ୟ ରାଜାଙ୍କ ନିର୍ଦ୍ଦେଶରେ ବିଷ ମିଶାଇ ଦିଆଯାଇଥିଲା । ରାଜା ଏପରି ବ୍ୟବସ୍ଥା କରିଛନ୍ତି ବୋଲି

ରାଣୀଙ୍କୁ ଜଣା ନଥିଲା । ଦୁର୍ଯୋଗକ୍ରୁ ସେ ସେଇ ବିଷମିଶା ପାଣି ପିଇ ଦେଲେ । ଅନତି ବିଳମ୍ବେ ତାଙ୍କର ମୃତ୍ୟୁ ହେଲା ।

ଏଣେ ହାମଲେଟ ଓ ଲେଏରେଟସଙ୍କ ମଧ୍ୟରେ ଯୁଦ୍ଧ ଚାଲିଥାଏ । ଏଥିରେ ହାମଲେଟ ବିଷଲିପ୍ତ ଅସ୍ତ୍ରାଘାତ ଯୋଗୁ ସାଂଘାତିକ ଭାବେ ଆହତ ହୋଇପଡ଼ନ୍ତି । ତଥାପି ସେ ଯୁଦ୍ଧରୁ ନିବୃତ୍ତ ହେଉ ନଥାଏ । ସୁଯୋଗ କ୍ରମେ ସେ ମଧ୍ୟ ଲେଏରେଟସଙ୍କୁ ସାଂଘାତିକ ଭାବେ ଅସ୍ତ୍ରାଘାତ କରୁଛି । ମୃତ୍ୟୁ ପୂର୍ବରୁ ସେ ଅନୁତପ୍ତ ହୃଦୟରେ ହାମଲେଟ ନିକଟରେ ସ୍ୱୀକାର କରୁଛି, କ୍ଲଡ଼ିଅସ ପ୍ରବର୍ତ୍ତାଇବାରୁ ହିଁ ସେ ବିଷଲିପ୍ତ ଖଣ୍ଡାରେ ଅନ୍ୟାୟ ଯୁଦ୍ଧ କରୁଛି । ହାମଲେଟ ସେ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଶକ୍ତି ହରାଇ ନଥାଏ । ଏହା ଶୁଣିବାପରେ ତାର ଦାଦାଙ୍କ ପ୍ରତି ଘୃଣା ଓ କ୍ରୋଧରେ ଅନ୍ତର ପୂରି ଉଠିଛି । ସୁଯୋଗ ଉଣ୍ଡି ସେ ତାର ଦାଦାଙ୍କୁ ଖଣ୍ଡାରେ ଭୂଷି ଦେଇଛି । ରାଜାଙ୍କର ଅବସ୍ଥା ହୋଇଛି ସଙ୍କଟାପନ୍ନ । ଏହାପରେ ହାମଲେଟ ଟଳି ପଡ଼ୁଛି ଓ ତାର ପ୍ରାଣବାୟୁ ଉଡ଼ିଯାଇଛି । ପ୍ରକୃତ ଦୋଷୀ ଶାସ୍ତି ପାଇଥିବା ଯୋଗୁଁ ତାର ପିତାଙ୍କ ପ୍ରେତାତ୍ମା ପରିତୋଷ ଲାଭ କରୁଛି ।



# ଭଲଟେୟାର

ମହାନ ଚିନ୍ତାଶୀ, ସଂସ୍କାରକ ଓ ଫରାସୀ ସାହିତ୍ୟର ଅନୁପମ ବ୍ୟଙ୍ଗରସ ସ୍ରଷ୍ଟା ଭାବେ ଭଲଟେୟାରଙ୍କ ଖ୍ୟାତି ବିଶ୍ୱବିଶ୍ରୁତ । ଦୁର୍ବଳ ଦେହସତ୍ତ୍ୱେ ସେ ଦୀର୍ଘ ୭୦ ବର୍ଷର ସାଧନାକାଳ ମଧ୍ୟରେ ୟୁରୋପର ବିଭିନ୍ନ ରାଜ୍ୟରେ ଭାବର ଯେଉଁ ଝଡ ବୁହାଇ ଦେଇଥିଲେ ତାହାର ପଟାନ୍ତର ନାହିଁ । ଦେଖିବାକୁ ଅସୁନ୍ଦର ଥିଲେ ହେଁ ତାହାଙ୍କ ରଚନାରେ ଅଭିବ୍ୟକ୍ତ ସରସତା, ବୁଦ୍ଧିର କୌତୁକ ପ୍ରବଣତା ଓ ଜନସାଧାରଣଙ୍କ ପ୍ରତି ପ୍ରଗାଢ଼ ହୃଦୟବତ୍ତା ହିଁ ତାହାଙ୍କୁ କରିଥିଲା ଜନପ୍ରିୟ ଓ ସର୍ବାଧିକ ଆକର୍ଷଣୀୟ । ତେୟାଅଶୀ ବର୍ଷ ବୟସରେ ମଧ୍ୟ ତାଙ୍କର ଚିନ୍ତା ଓ ଭାବନା ଥିଲା ସର୍ବୋତଭାବେ ସକ୍ରିୟ । ସେ ଥିଲେ ଯେପରି ସୂକ୍ଷ୍ମଦର୍ଶୀ, ଅନୁସନ୍ଧିତ୍ସୁ ସେହିପରି ସନ୍ଦେହବାଦୀ ଓ ବ୍ୟଙ୍ଗାତ୍ମକ ଦୃଷ୍ଟିସମ୍ପନ୍ନ । ଜନ ସମର୍ଥନକୁ ତିଳେମାତ୍ର ଭ୍ରୂକ୍ଷେପ ନ କରି ନିର୍ଭୀକ, କୁଣ୍ଠାହୀନ ଭାବରେ ହିଁ ସେ ଆପଣାର ଧାରଣା, ବିଶ୍ୱାସ ଓ ଉପଲବ୍ଧିକୁ ପ୍ରକାଶ କରିଯାଇ ଅଛନ୍ତି ।

ତାଙ୍କର ବ୍ୟକ୍ତିତ୍ୱ, ଚିନ୍ତାଧାରା, ଜୀବନଦର୍ଶନ ତଥା ଆଚରଣ ଥିଲା ଯେପରି ଜଟିଳ ସେହିପରି ଦୁର୍ଜ୍ଞେୟ । ତାଙ୍କ ବିଷୟରେ ଏଣୁ କୁହାଯାଇଛି—"ଏକ ବିଚଳିତ ବା ଫୁରୁଡ଼ା ମାଛ ଜଳାଶୟକୁ ମନ୍ଥନ କଲାଭଳି ସେ ସମଗ୍ର ୟୁରୋପକୁ ଆଲୋଡ଼ିତ କରିଯାଇଛନ୍ତି" । ତାହାଙ୍କ ସମଗ୍ର ଜୀବନ ଥିଲା ସାମାଜିକ ଅସହିଷ୍ଣୁତା, କୁସଂସ୍କାର ବିରୁଦ୍ଧରେ

ବିପ୍ଳବ । ଏହାର ପରିଣାମ ସ୍ୱରୂପ ଜୀବନର ଅଧିକାଂଶ ଭାଗ ତାଙ୍କୁ ନିଜ ଦେଶ ପରିତ୍ୟାଗ କରି ଅନିଶ୍ଚିତଭାବେ ବିଭିନ୍ନ ସ୍ଥାନରେ ଘୂରିବୁଲିବାକୁ ପଡ଼ିଥିଲା ।

ଆପଣାର ନିର୍ଭୀକ ସ୍ୱାଧୀନ ଚିନ୍ତାଧାରା ଯୋଗୁ କୋଡ଼ିଏ ବର୍ଷ ବୟସରୁ ସେ ହୋଇପାରିଥିଲେ ସୁବିଦିତ । ସେହିକାଳରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ୟୁରୋପର ତତ୍କାଳୀନ ସଂଘର୍ଷସଂକୁଳ ଯୁଗରେ ଆପଣାର ପ୍ରଗତିଶୀଳ ଚିନ୍ତାଧାରା ଓ ଜୀବନଦର୍ଶନକୁ ପ୍ରଚାର କରିବା ସଙ୍ଗେ ସଙ୍ଗେ ତାହାକୁ ଜନପ୍ରିୟ କରାଇବାରେ ନିରବଚ୍ଛିନ୍ନ ଉଦ୍ୟମ କରିଯାଇଛନ୍ତି । ଭଲଟେୟାରଙ୍କ ଜୀବନକାଳ ଥିଲା ବିଜ୍ଞାନର ଅଭୂତପୂର୍ବ ଅଗ୍ରଗତିର ଯୁଗ । ସେ କୌଣସି ନୂତନ ଭାବନା ଉଦ୍ଭାବନ କରି ନଥିଲେ ହେଁ ବହୁ ନୂତନ ଚିନ୍ତାଧାରାକୁ ସରସଭାବେ ବ୍ୟାଖ୍ୟା କରିବାରେ ଓ ସମାଜ ସଂଗଠନର ନେତୃତ୍ୱ ନେବାରେ ଏକ ମହାନ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଆପଣାର ଯୁଗକୁ ସେ ଯେପରି ବାଖ୍ୟା ଓ ବିଶ୍ଳେଷଣ କରିଯାଇଛନ୍ତି ତାହା ଅନବଦ୍ୟ । ସେଥିପାଇଁ ସେ ତତ୍କାଳୀନ ବହୁ ବିଶିଷ୍ଟ ବ୍ୟକ୍ତିଙ୍କଠାରୁ ଗୁରୁଜନ ସୁଲଭ ସମ୍ମାନ ମଧ୍ୟ ଲାଭ କରିଥିଲେ ।

ଏହି ପ୍ରସଙ୍ଗରେ ଭଲଟେୟାରଙ୍କ ସମକାଳୀନ ଫ୍ରାନ୍ସର ରାଜନୈତିକ ଓ ସାମାଜିକ ପରିବେଶ ପ୍ରସଙ୍ଗ ଉଲ୍ଲେଖଯୋଗ୍ୟ । ଫ୍ରାନ୍ସର ରାଜା ଚତୁର୍ଦ୍ଦଶ ଲୁଇଙ୍କ (୧୬୩୮-୧୭୧୫) ଦୀର୍ଘ ରାଜତ୍ୱ କାଳ ମଧ୍ୟରେ (୧୬୪୩-୧୭୧୫) ଫ୍ରାନ୍ସର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇ-ପାରିଥିଲା, ମାତ୍ର ଏହାଙ୍କ ରାଜତ୍ୱର ଶେଷ ଭାଗଟି ଥିଲା ଅତୀବ ଦୁଃଖ-ଦାୟକ । ଆପଣାର ଜୀବଦଶାରେ ହିଁ ତାହାଙ୍କ ପୁତ୍ର, ପୌତ୍ର ମୃତ୍ୟୁ ବରଣ କଲେ । ଫଳରେ ତାହାଙ୍କ ଅନ୍ତେ ମାତ୍ର ପାଞ୍ଚବର୍ଷ ବୟସର ତାହାଙ୍କ ପ୍ରପୌତ୍ର ପଞ୍ଚଦଶ ଲୁଇ ନାମ ଧାରଣ କରି ଫ୍ରାନ୍ସ ସିଂହାସନରେ ଆରୂଢ଼ ହୋଇଥିଲେ । ଶାସକଭାବେ ସେ ଥିଲେ ଦୁର୍ବଳ । ତଥାପି ସେ ୬୦ ବର୍ଷ ରାଜତ୍ୱ କରିଥିଲେ (୧୭୧୫-୭୪) ଓ ଏହାଙ୍କ ରାଜତ୍ୱ କାଳରେ ଫ୍ରାନ୍ସର ରାଜନୈତିକ ସାମାଜିକ ଜୀବନର ବହୁ ବିପର୍ଯ୍ୟୟ ସଂଘଟିତ ହୋଇଥିଲା । ଅସାଧୁ କର୍ମଚାରୀ, ବିଳାସବ୍ୟସନ-ମତ୍ତ-ଧନିକ

ଗୋଷ୍ଠୀଙ୍କ ଅତ୍ୟାଚାର ଓ ଶୋଷଣ ଫଳରେ ଦେଶର ଜନସାଧାରଣଙ୍କ ଜୀବନ ହୋଇପଡ଼ିଥିଲା ଦୁର୍ଗତିପୂର୍ଣ୍ଣ ଓ ଅସହନୀୟ । ଏହିପରି ଏକ ସଂଘାତମୟ ଜଟିଳ ପରିବେଶରେ ଭଲଟେୟାର ଓ ରୁଷୋ ପ୍ରଭୃତିଙ୍କ ଆବିର୍ଭାବ ଓ ସାହିତ୍ୟ ସାଧନା । ସେମାନଙ୍କ ରଚନାବଳୀ ଜନ-ଜୀବନରେ ଯେଉଁ ବିପ୍ଳବର ଅଗ୍ନି ପ୍ରଜ୍ଜ୍ୱଳିତ କରିଥିଲା ତାହା ହିଁ ଅଳ୍ପକାଳ ମଧ୍ୟରେ ଏକ ବିରାଟ ବିସ୍ଫୋରଣରୂପେ ଆତ୍ମପ୍ରକାଶ କରିଥିଲା । ଏହା ଫରାସୀ ବିପ୍ଳବ ନାମରେ ପୃଥିବୀ ଇତିହାସରେ ଏକ ସ୍ମରଣୀୟ ଘଟଣା ଭାବେ ଚିହ୍ନିତ । ଖ୍ରୀ: ୧୭୮୯ରେ ସଂଘଟିତ ଏହି ବିପ୍ଳବ ଫଳରେ ହତଭାଗ୍ୟ ଷୋଡ଼ଶ ଲୁଇଙ୍କୁ 'ଗିଲୋଟିନ' ନାମକ ଯନ୍ତ୍ରଦ୍ୱାରା ତାଙ୍କୁ ମୃତ୍ୟୁବରଣ କରିବାକୁ ପଡ଼ିଥିଲା । ଫ୍ରାନ୍‌ସର ରାଜବଂଶ ହେଲା ବିଲୁପ୍ତ ।

ଭଲଟେୟାରଙ୍କ ପ୍ରକୃତ ନାମ ହେଉଛି ଫ୍ରାଁ ମାରି ଆରୁଏ । ମାତ୍ର ଆପଣାର ଛଦ୍ମ ନାମରେ ହିଁ ସେ ହେଲେ ବିଶ୍ୱବିଶ୍ରୁତ । ଖ୍ରୀ: ୧୬୯୪ରେ ସେ ପ୍ୟାରିସର ଏକ ଧନୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତା ଥିଲେ ଆଇନ ବ୍ୟବସାୟୀ ଓ ପୁତ୍ରକୁ ଆଇନ-ଜୀବୀ କରାଇବା ଲାଗି ବହୁଚେଷ୍ଟା କରିଥିଲେ; ମାତ୍ର ଭଲଟେୟାର ଆବାଲ୍ୟରୁ ଥିଲେ ଭିନ୍ନ ଉପାଦାନରେ ଗଢା । ସାହିତ୍ୟକୁ ହିଁ ସେ ଆପଣାର ବୃତ୍ତି ଭାବେ ଗ୍ରହଣ କରି ନେଇଥିଲେ । ସବୁ ବିଷୟରେ ବିରୋଧ କରିବା ଥିଲା ତାଙ୍କର ସ୍ୱଭାବ । ସେ ପ୍ରୟୋଜନବୋଧରେ ପିତାଙ୍କ ମତ ବିରୁଦ୍ଧରେ ଯିବାକୁ ମଧ୍ୟ ପଶ୍ଚାତପଦ ହୋଇନଥିଲେ । ସ୍ୱାଧୀନଚେତା ଭଲଟେୟାର ତରୁଣ ବୟସରୁ ହିଁ ଥିଲେ ସମାଜ ସଚେତନ । ଏଣୁ ଫ୍ରାନ୍‌ସର ତତ୍‌କାଳୀନ ରାଜନୈତିକ ବିଚାରଧାରା, ଅନ୍ୟାୟ ଅବିଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଏକାନ୍ତ ସ୍ୱାଭାବିକ । ତାହାଙ୍କ ରଚନାବଳୀ ପ୍ରାଚୀନ ରୀତିନୀତି ବିରୁଦ୍ଧରେ ଅଗ୍ନି ବର୍ଷଣ କରିବା ସଙ୍ଗେ ସଙ୍ଗେ ଏକ ନୂତନ ବିଚାରଧାରା ଯେ ପ୍ରବର୍ତ୍ତନ କରିବାକୁ ସମର୍ଥ ହୋଇଥିଲା ଏହା କହିବା ଅନାବଶ୍ୟକ । ଏହା ସମାଜ,ସାହିତ୍ୟ ଓ ରାଷ୍ଟ୍ରରେ ବିପ୍ଳବ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ପରିଣାମରେ ହୋଇଥିଲା ଶୁଭପ୍ରଦ ।

ସେତେବେଳେ ଫ୍ରାନ୍‌ସର ଶାସନ ବିଭାଗ କଳୁଷିତ ହୋଇ-ଯାଇଥିଲା । ଜନସାଧାରଣ କରଭାରରେ ନିର୍ଯ୍ୟାତିତ ହେଉଥିଲେ । ବିନା ବିଚାରରେ ସେମାନଙ୍କୁ କାରାଦଣ୍ଡରେ ଦଣ୍ଡିତ କରାଯାଉଥିଲା । ପୁରୋହିତମାନଙ୍କ ଆଳସ୍ୟ, ଉଦାସୀନତା ଯୋଗୁ ଜନସାଧାରଣଙ୍କ ଧାର୍ମିକ ଜୀବନ ଓ ନୈତିକ ଜୀବନ ମଧ୍ୟ କଳୁଷିତ ହୋଇଯାଉଥିଲା । ତୀକ୍ଷ୍ଣ ଦୃଷ୍ଟିସମ୍ପନ୍ନ ଭଲଟେୟାର ସମାଜର ପ୍ରତ୍ୟେକ ବିଷୟକୁ ପର୍ଯ୍ୟାଲୋଚନା କରିବା ସଙ୍ଗେ ସଙ୍ଗେ ନିର୍ଭୀକଭାବେ ଏହି ପ୍ରସଙ୍ଗରେ ଆପଣାର ସ୍ୱାଧୀନମତ ପ୍ରକାଶ କରିବାକୁ ଆରମ୍ଭକଲେ । ଅଳ୍ପ ବୟସରୁ କବିତା ଓ ନାଟକ ଲେଖିବାରେ ସେ ଆପଣାକୁ ନିୟୋଜିତ କରିଥିଲେ । ତାହାଙ୍କ ନାନାବିଧ କବିତାରେ ଯେପରି ଶ୍ଳେଷାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଥିଲା ସେହିପରି ତାହାଙ୍କ ନାଟକରେ ପ୍ରକାଶ ପାଇଥିଲା ଧନିକ, କ୍ଷମତାସୀନ ଓ ସମ୍ଭ୍ରାନ୍ତ ବୋଲାଉଥିବା ଗୋଷ୍ଠୀଙ୍କ ଅନ୍ୟାୟ ଓ ଭ୍ରଷ୍ଟାଚାର ପ୍ରତି ବ୍ୟଙ୍ଗବିଦ୍ରୂପ । ସେଥିପାଇଁ ୧୭୧୬ ସାଲରେ ତାଙ୍କୁ ଫ୍ରାନ୍‌ସର ଏକ ସ୍ଥାନରେ ନିର୍ବାସିତ କରାଯାଇଥିଲା ଓ ପରେ ପ୍ୟାରିସରେ ବାସ୍ତି (Bastille) ବନ୍ଦିଶାଳାରେ ଆବଦ୍ଧ କରାଯାଇଥିଲା । ଯେଉଁ ଏଗାର ମାସ ସେ ବନ୍ଦିଶାଳାରେ ଥିଲେ ସେହି ସମୟରେ ମଧ୍ୟ ସେ ସାହିତ୍ୟ ସୃଷ୍ଟିରୁ ବିରତ ହୋଇନଥିଲେ । ଏହି ସମୟରେ ହିଁ ସେ ରଚନା କରିଥିଲେ ଫରାସୀ ଭାଷାର ପ୍ରଥମ ମହାକାବ୍ୟ (La Henride) ତାହାଙ୍କ ରଚିତ ଏକ ବିୟୋଗାତ୍ମକ ନାଟକ (Oedipe) ମଧ୍ୟ ସେହି ସମୟରେ ପ୍ରକାଶିତ ହୋଇ ବିପୁଳ ଜନପ୍ରିୟତା ଅର୍ଜନ କରିଥିଲା ଓ ସେ ଏଥିରୁ ପ୍ରଚୁର ଅର୍ଥଲାଭ କରିପାରିଥିଲେ ।

ଦେଶର କଳାକାର ଓ ଲେଖକଙ୍କ ଦରିଦ୍ର ଜୀବନଧାରଣକୁ ସେ ପସନ୍ଦ କରୁନଥିଲେ । ବନ୍ଦୀଶାଳାରୁ ମୁକ୍ତ ହେବା ପରେ ଧନଲାଭ କରିବାକୁ ସେ ହେଲେ ଅଭିଳାଷୀ ଓ ଏଥିପାଇଁ କେତେକ ବ୍ୟବସାୟରେ ଅର୍ଥ ବିନିଯୋଗ କରିଥିଲେ । ଆପଣାର ବୁଦ୍ଧିବଳରେ ଅଳ୍ପକାଳ ମଧ୍ୟରେ ସେ ବହୁ ଲାଭବାନ ଓ ବିଭବଶାଳୀ ହୋଇପାରିଥିଲେ । ଆଜି ପର୍ଯ୍ୟନ୍ତ ତାଙ୍କ ଭଳି କୌଣସି ଲେଖକ ବ୍ୟବସାୟ କରି ଏପରି ଅଜସ୍ର ଲାଭ କରିବାର ଦୃଷ୍ଟାନ୍ତ ବିରଳ । ସମାଜର ଜଣେ ସୁପ୍ରତିଷ୍ଠିତ ନାଗରିକ

ଭାବରେ ସେ ପୁଣି ରାଜଦରବାରରେ ସ୍ଥାନ ପାଇଲେ; ମାତ୍ର ଅଳ୍ପ ଦିନ ମଧ୍ୟ ଜନୈକ ସମ୍ଭ୍ରାନ୍ତ ଯୁବକଙ୍କ ସହ ତାଙ୍କର ସଂଘର୍ଷ ଲାଗିଗଲା । ସେ ଥିଲେ ରୋହାନର ଶିଭଲିଅର, ତାଙ୍କୁ ବାଷ୍ଟିଲରେ ପିଟି ସେ ବନ୍ଦୀ କରି ରଖିଲେ । ଭଲଟେୟାର ଏହାର ପ୍ରତିବାଦ ରାଜଦରବାରକୁ ଜଣାଇଲେ । ତାହାଙ୍କ ସ୍ୱଭାବସୁଲଭ ଭଙ୍ଗୀରେ ସେ ଯେଉଁ ଆବେଦନ କରିଥିଲେ ତାହାର କିୟଦଂଶ ଥିଲା ଏହିପରି—"ମୁଁ ନମ୍ରତାର ସହିତ ସ୍ପଷ୍ଟ ଜଣାଉଛି ଯେ, ସାହସୀ ଶିଭଲିଅର ରୋହାନ ଛଅଜଣ ଗୁଣ୍ଡାଙ୍କ ଦ୍ୱାରା ମୋତେ ପ୍ରାଣାନ୍ତକ ଭାବେ ଆକ୍ରମଣ କରିଛନ୍ତି । ସାହସର ସହ ଏହି ଗୁଣ୍ଡାଙ୍କ ପଛରେ ରହି ସେ ଏହା କରାଇଲେ । ସେହିଦିନରୁ ମୁଁ ସର୍ବଦା ମୋ ନିଜର ନୁହେଁ ତାଙ୍କର ସମ୍ମାନ ସଜାଡ଼ିବାକୁ କାମନା କରୁଛି । ମାତ୍ର ଏହି କାମଟି ଅତ୍ୟନ୍ତ କଠିନ ହୋଇପଡ଼ିଛି ।" ମାତ୍ର ଏହି ବିରୋଧର ପରିଣାମ ହୋଇଥିଲା ତାହାଙ୍କର ପ୍ରଥମେ ବାସ୍ତିକାରାଗାରରେ ବନ୍ଦୀଜୀବନ ଯାପନ ଓ ପରେ ତିନିବର୍ଷ ପାଇଁ ସ୍ୱଦେଶରୁ ନିର୍ବାସନ ।

ଫ୍ରାନସ୍ ପରିତ୍ୟାଗ କରି ଖ୍ରୀ: ୧୭୨୬ରେ ଇଂଲଣ୍ଡରେ ଯାଇ ଆଶ୍ରୟ ନେଲେ । ସେଠାରେ ସେ ଇଂରାଜୀ ଭାଷା ଅଧ୍ୟୟନ କଲେ । ଇଂଲଣ୍ଡର ତତ୍କାଳୀନ ବିଶିଷ୍ଟ ଦାର୍ଶନିକ ଲକ୍ ଓ ହ୍ୟୁମଙ୍କ ସହ ପରିଚୟ ଓ ସମ୍ପର୍କ ସ୍ଥାପନ କଲେ । ଇଂଲଣ୍ଡର ପରିସ୍ଥିତି ଅନୁଧ୍ୟାନ କରି ସେ ବୁଝିପାରିଲେ ଯେ ଫ୍ରାନ୍ସ ଅପେକ୍ଷା ଇଂଲଣ୍ଡର ସମାଜ ଓ ଶାସନ ବ୍ୟବସ୍ଥା ଉତ୍କୃଷ୍ଟ ଓ ଏଠାରେ ଧର୍ମ ଓ ରାଜନୀତି ସମ୍ପର୍କରେ ମତ ପ୍ରକାଶ କରିବାର ପ୍ରଚୁର ସ୍ୱାଧୀନତା ରହିଛି । ସ୍ୱଦେଶର ଜନସାଧାରଣ ପଞ୍ଚଦଶ ଲୁଇଙ୍କ ଅସହିଷ୍ଣୁତା, ହତ୍ୟାଭୂଷରରେ ନିପରି ନିର୍ଯ୍ୟାତିତ, ଉପେକ୍ଷିତ ଓ ଧର୍ମାନ୍ଧତାର ବଶବର୍ତ୍ତୀ ହୋଇ ଭ୍ରଷ୍ଟ ଓ ବିପଥଗାମୀ ହୋଇ ପଡ଼ିଛନ୍ତି ଏହା ସେ ଅଧିକ ଭାବେ ହୃଦୟଙ୍ଗମ କରିପାରିଲେ । ଇଂରାଜୀ ସାହିତ୍ୟର ଉତ୍କର୍ଷ ତଥା ଏଠାରେ ବିଜ୍ଞାନର ଅଗ୍ରଗତି ଦେଖି ସେ ହେଲେ ଏହି ଦେଶର ମୁଗ୍ଧ ପ୍ରଶଂସକ ।

ତିନିବର୍ଷ ପରେ ସେ ସ୍ୱଦେଶକୁ ଫେରିଯାଇ ଦେଶବାସୀଙ୍କ ନିକଟରେ ଇଂଲଣ୍ଡ ସଂସ୍କୃତିର ଗୁଣଗାନ କରିବାକୁ ଲାଗିଲେ । ପରୋକ୍ଷଭାବେ ଏହା ଥିଲା ଫ୍ରାନ୍ସର ସ୍ୱେଚ୍ଛାଚାରୀ ଶାସନ ଓ କଳୁଷିତ ସମାଜ ବିରୁଦ୍ଧରେ ଏକ

ବିଷୋଦ୍‌ଗାର । ଏହା ଫ୍ରାନ୍‌ସର ଜନ ସାଧାରଣଙ୍କୁ ଏକ ନୂତନ ଚେତନାରେ ଉଦ୍‌ବୁଦ୍ଧ କରିଥିଲା । ଆପଣାର ଉପଲବ୍‌ଧିକୁ ସେ ତାଙ୍କର ସୁବିଖ୍ୟାତ ଗ୍ରନ୍ଥ "ଇଂରାଜୀ ସମ୍ପର୍କରେ ଦାର୍ଶନିକ ପତ୍ରାବଳୀ" (Letters philosophiques of letters anglaises) ମାଧ୍ୟମରେ ବ୍ୟକ୍ତ କରିଥିଲେ । ଏହାର ଇଂରାଜୀ ସଂସ୍କରଣ ଖ୍ରୀ: ୧୭୩୩ ଓ ଫରାସୀ ସଂସ୍କରଣ ଖ୍ରୀ: ୧୭୩୪ରେ ପ୍ରକାଶ ପାଇଥିଲା । ଏଥିରେ ଅଭିବ୍ୟକ୍ତ ତାହାଙ୍କ ଦୃଷ୍ଟିଭଙ୍ଗୀ ଓ ବିଚାରଧାରାର ଉପାଦେୟତା ଏବେ ମଧ୍ୟ ସ୍ୱୀକୃତ ହୁଏ । ଏଥିରୁ ଇଂରାଜୀ ସାହିତ୍ୟ ସମାଜ, ଧର୍ମ, ରାଷ୍ଟ୍ରନୀତି ଓ ଇଂଲଣ୍ଡର ବୈଜ୍ଞାନିକ ପ୍ରଗତି, ବିଶେଷରେ ଲେଖକଙ୍କ ଗମ୍ଭୀର ଅନୁଧ୍ୟାନର ମହତ୍ତ୍ୱ ଉପଲବ୍‌ଧ ହୁଏ । ଏହା ପ୍ରକାଶିତ ହେବା ପରେ ଫ୍ରାନ୍‌ସର ବିଭିନ୍ନ ଅନୁଷ୍ଠାନକୁ ଯେ ଏଥିରେ ପରୋକ୍ଷ ଭାବେ ସମାଲୋଚନା କରାଯାଇଛି ତାହା ସରକାର ଉପଲବ୍‌ଧି କରିପାରିଲେ । ସରକାରୀ ନିର୍ଦ୍ଦେଶକ୍ରମେ ପୁସ୍ତକକୁ ପୋଡି ଦିଆଗଲା ଓ ଲେଖକ ଦୈବକ୍ରମେ ବନ୍ଦୀ ହେବାରୁ ରକ୍ଷା ପାଇଗଲେ ।

ଭଲଟେୟାର ସ୍ୱାଧୀନ ରାଜ୍ୟ ଲୋରେନକୁ ପଳାଇଯାଇ ସେଠାରେ କେତେଦିନ ରହିଲେ ଓ ଖ୍ରୀ: ୧୭୩୪ରେ ତାହାଙ୍କ ଗୁଣ ମୁଗ୍‌ଧ ଜନୈକା ବିଦୁଷୀ ମହିଳାଙ୍କ ବାସଭବନରେ ଯାଇ ଆଶ୍ରୟ ନେଲେ । ଏହି ନିଭୃତ ସ୍ଥାନରେ ରହି ସେ ବିଜ୍ଞାନ ଚର୍ଚ୍ଚା; ସାହିତ୍ୟ ସୃଷ୍ଟି, ନାଟ୍ୟ ପ୍ରଯୋଜନା ଓ ଇତିହାସ ଗବେଷଣାରେ ପୂର୍ଣ୍ଣ ପ୍ରାଣରେ ଆତ୍ମନିୟୋଗ କରିଥିଲେ । ଏହି ସ୍ଥାନରେ ଥିବା ସମୟରେ ସେ 'Merope' ନାମକ ଏକ ସୁବିଖ୍ୟାତ ନାଟକ ରଚନା କରିଥିଲେ । ନାଟ୍ୟ ପ୍ରଯୋଜନା ଓ ମଞ୍ଚ ଶିଳ୍ପ କ୍ଷେତ୍ରରେ ମଧ୍ୟ ସେ ବହୁ ବୈପ୍ଲବିକ ପରିବର୍ତ୍ତନ ଆନୟନ କରିଥିଲେ । ନାଟକକୁ କାଳ୍ପନିକ ଓ ପୌରାଣିକତାର ବନ୍ଧନରୁ ମୁକ୍ତ କରି ତାହାକୁ ଜନସାଧାରଣଙ୍କ ନିକଟବର୍ତ୍ତୀ କରାଇବାରେ ଭଲଟେୟାରଙ୍କ କୃତିତ୍ୱ ମଧ୍ୟ ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ଖ୍ରୀ: ୧୭୪୪ରେ ତାଙ୍କୁ ପୁଣି ପ୍ୟାରିସକୁ ଫେରିଆସିବା ଲାଗି ଅନୁମତି ମିଳିଲା । ସେତେବେଳକୁ ତାହାଙ୍କ ଖ୍ୟାତି ସାରା ୟୁରୋପରେ ବିଚ୍ଛୁରିତ ହୋଇଯାଇଥାଏ । ସଗୌରବରେ ସେ ପ୍ୟାରିସକୁ ଫେରି-

ଆସିଥିଲେ; ମାତ୍ର ପ୍ୟାରିସର ରକ୍ଷଣଶୀଳ ଗୋଷ୍ଠୀଙ୍କ ସହ କ୍ରମେ ତାଙ୍କର ବିବାଦ ବଢ଼ିବାକୁ ଲାଗିଲା । ଏଇ ସମୟରେ ତାଙ୍କର ଆଶ୍ରୟଦାତାଙ୍କ ମୃତ୍ୟୁ ହେଲା ଓ ସେ ପ୍ରୁସିଆର ଯୁବରାଜ ଫ୍ରେଡେରିକଙ୍କ ଆମନ୍ତ୍ରଣ ରକ୍ଷାକରି ତାହାଙ୍କ ଦରବାରରେ ଯାଇ ଯୋଗ ଦେଇଥିଲେ । (୧୭୫୦) । ସେତେବେଳେ ପ୍ରୁସିଆ ଥିଲା, ଜର୍ମାନ ରାଜ୍ୟର ଅନ୍ତର୍ଭୁକ୍ତ । ଏଇଠି ସେ ପ୍ରାପ୍ତ ରାଜକର୍ମ ବେଶ୍ ସ୍ୱାଚ୍ଛନ୍ଦ୍ୟ ଓ ନିଶ୍ଚିନ୍ତ ଭାବେ ରହିଥିଲେ ଓ ପ୍ରଚୁର ଧନ ସମ୍ପତ୍ତି ମଧ୍ୟ ଲାଭ କରିଥିଲେ । ମାତ୍ର ଏଠାରେ ମଧ୍ୟ ଫ୍ରେଡେରିକଙ୍କ ଔଦ୍ଧତ୍ୟ ଓ ଅନ୍ୟାୟ ଆଚରଣକୁ ସେ ସମର୍ଥନ କରିପାରିଲେ ନାହିଁ ଓ ଏଥିପାଇଁ ତାଙ୍କୁ ବନ୍ଦୀ ହେବାକୁ ପଡ଼ିଥିଲା ।

ଅବଶେଷରେ ସେ ଖ୍ରୀ: ୧୭୬୦ରେ ଫ୍ରାନସର ସୀମାନ୍ତ ଓ ସୁଇଜରଲଣ୍ଡର ସନ୍ନିକଟବର୍ତ୍ତୀ ଫର୍ଣ୍ଣେନାମକ ସ୍ଥାନରେ ସ୍ଥାୟୀ ଭାବରେ ବାସ କଲେ । ଏହା ଥିଲା ଜେନେଭା ହ୍ରଦକୂଳରେ ଏକ ସୁନ୍ଦର ସ୍ଥାନ । ସ୍ଥାୟୀ ବାସ ପାଇଁ ଏହି ସ୍ଥାନଟି ନିର୍ବାଚନ କରିବାର ପ୍ରଧାନ କାରଣ ହେଉଛି ଆବଶ୍ୟକ ପଡ଼ିଲେ ଏଠାରୁ ସହଜରେ ଅନ୍ୟ ରାଜ୍ୟକୁ ପଳାଇ-ଯାଇ ଆତ୍ମରକ୍ଷା କରିହେବ । ଏଠାରେ ସେ ଦୁଇଟି ଦୁର୍ଗଭବନ ଓ ବିରାଟ ଜମିଦାରୀ କିଣିଥିଲେ । ଏହି ନିରାପଦ ଆଶ୍ରୟପୀଠରୁ ଏହାପରେ ଅବିରତ ଭାବେ ତାଙ୍କର ରଚନାବଳୀ ପ୍ରସ୍ତିକା ଆକାରରେ ପ୍ରକାଶିତ ହେବାକୁ ଲାଗିଲା ଓ ଏଗୁଡ଼ିକ ଝାଉଁ ଭଳି ରାଜଧାନୀ ପ୍ୟାରିସ ଉଦ୍ଦେଶ୍ୟରେ ଛୁଁ ପ୍ରେରିତ ହେଉଥିଲା । ନିଜକୁ ଗୋପନ କରିବା ଲାଗି ସେ ବହୁ ଛଦ୍ମ ନାମରେ ଏଗୁଡ଼ିକ ପ୍ରକାଶ କରାଉଥିଲେ; ମାତ୍ର ଏହାଦ୍ୱାରା କାହାକୁ ଭୁଲାଇବା ସମ୍ଭବ ହୋଇପାରି ନ ଥିଲା । ବୁଦ୍ଧିର ବିଚ୍ଛୁରଣ ଓ ରଚନା ଶୈଳୀରୁ ଏଇ ଲେଖାସବୁ କାହାର ତାହା ପାଠକମାନେ ଠିକ୍ ବୁଝି ପାରୁଥିଲେ । ଯାହାହେଉ, ଏହାଦ୍ୱାରା ସେ କୌଣସିମତେ ରାଜକୀୟ ଦଣ୍ଡବିଧାନରୁ ଆତ୍ମରକ୍ଷା କରିପାରିଥିଲେ । ପ୍ରଚ୍ଛନ୍ନ ପତ୍ର ଭିତରେ ପ୍ରକାଶ ପାଇଥିବା ତାହାଙ୍କ ରଚନାବଳୀ ମଧ୍ୟରେ ଗୋଟିଏ ସୁପ୍ରସିଦ୍ଧ ଗ୍ରନ୍ଥ ହେଉଛି ଦାର୍ଶନିକ ଅଭିଧାନ (Dictionaire philosoqhique) ଏହା ଖ୍ରୀ ୧୭୬୪ରେ ଏକ ସଂକ୍ଷିପ୍ତ ରୂପରେ ପ୍ରକାଶ ପାଇଥିଲା । ପରେ ପରିବର୍ତ୍ତିତରୂପେ ୭ଟି ଖଣ୍ଡରେ ଏହା ପ୍ରକାଶିତ ହୋଇଥିଲା । ବିବିଧ

ପ୍ରସଙ୍ଗରେ ଲିଖିତ କ୍ଷୁଦ୍ର ପ୍ରବନ୍ଧାବଳୀ ଏଥିରେ ବର୍ଣ୍ଣମାଳା କ୍ରମରେ ସଜ୍ଜିତ ହୋଇ ପ୍ରକାଶିତ ।

ଭଲଟେୟାର ଇତିହାସ ରଚନା କ୍ଷେତ୍ରରେ ଏକ ନୂତନ ରୀତିର ପ୍ରବର୍ତ୍ତକ ଓ ମତବାଦର ସ୍ରଷ୍ଟାରୂପେ ସୁବିଦିତ । ତାହାଙ୍କର ସିଦ୍ଧାନ୍ତ ଇତିହାସ ରଚନାର ଧାରାକୁ ପରିବର୍ତ୍ତିତ କରି ଦେଇଥିଲା । ଇତିହାସ କେବଳ ରାଜାଙ୍କ ଜୀବନର କାହାଣୀ ନୁହେଁ କିମ୍ବା ସେନାପତିଙ୍କ ଯୁଦ୍ଧ ଜୟର ବିବରଣୀ ନୁହେଁ; ଏଥିରେ ଯୁଗର ଚେତନା ଓ ମାନବର ଆଶା ଆକାଂକ୍ଷା ବିଶେଷତଃ ତାହାର କଳାତ୍ମକ ଓ ସାହିତ୍ୟିକ ପ୍ରତିଭାର ପ୍ରତିଫଳିତ ହେବା ବାଞ୍ଛନୀୟ । ଏତଦ୍ବ୍ୟତୀତ ଏଥିରେ ଅର୍ଥନୈତିକ ଚିତ୍ର ମଧ୍ୟ ପ୍ରତିଫଳିତ ହେବା ଉଚିତ । ଭଲଟେୟାରଙ୍କ ଦୃଷ୍ଟିରେ ଇତିହାସ ହେଉଛି ମାନବର ପ୍ରଥମ ସଙ୍ଘବଦ୍ଧ ଜୀବନରୁ ଆରମ୍ଭ କରି ତାହାର ଭୌତିକ ଓ ଆଧ୍ୟାତ୍ମିକ ବିମନା କ୍ରମରେ ଆଧୁନିକ ସଭ୍ୟତା ବୋଲିଭଥିବା ଯୁଗ ପର୍ଯ୍ୟନ୍ତ ବିବିଧ ଚିତ୍ରାବଳୀର ଉଦ୍‌ଘାଟନ । ତାହାଙ୍କର ଆଚରଣ ସମ୍ପର୍କୀୟ ପ୍ରବନ୍ଧ (Essai surles moeurs et pesprit des nations 1756) ପୁସ୍ତକରେ ସେ ସର୍ବପ୍ରଥମେ ଜାତି ଓ ଯୁଗର କ୍ରମବିବର୍ତ୍ତନ ସମ୍ପର୍କୀୟ ଏତାଦୃଶ ଧାରଣା ଲିପିବଦ୍ଧ ହେବା ବାଞ୍ଛନୀୟ ବୋଲି ମତବ୍ୟକ୍ତ କରିଅଛନ୍ତି । ତାହାଙ୍କ ଗଭୀର ଅନୁଶୀଳନ, ଗବେଷଣା ଓ ଅପୂର୍ବ ବିଶ୍ଳେଷଣ ନିପୁଣତା ଏଥିରେ ସୁପ୍ରକଟିତ । ପାଶ୍ଚାତ୍ୟ ସଭ୍ୟତା ବ୍ୟତୀତ ପୃଥିବୀରେ ଯେ ବହୁ ଉନ୍ନତ ସଭ୍ୟତା ରହିଛି ଏହା ସେ ବହୁତଥ୍ୟ ପ୍ରମାଣ ଦ୍ୱାରା ଏଥିରେ ପ୍ରତିପାଦନ କରିଯାଇଛନ୍ତି ।

ତାହାଙ୍କର ଅଦ୍ଭୁତ ମନୀଷା, ଦୀର୍ଘକାଳ କଠିନ ପରିଶ୍ରମ କରିବା ଭଳି ଶକ୍ତି ଏବଂ ସୁଦୀର୍ଘ ଜୀବନ ଯୋଗୁ ସେ ୭୦ ଖଣ୍ଡରେ ବିଭକ୍ତ ତାହାଙ୍କ ବିପୁଳ ସାହିତ୍ୟକୃତିକୁ ରଚନା କରିବାକୁ ସମର୍ଥ ହୋଇପାରିଥିଲେ । ତାହାଙ୍କର ସମଗ୍ର ରଚନାବଳୀ ମଧ୍ୟରୁ କାଳଜୟୀକୀର୍ତ୍ତି ଭାବରେ ଦାର୍ଶନିକତତ୍ତ୍ୱ ସବଳିତ କାହାଣୀ ବିଶେଷତଃ ଜାଡ଼ିକ୍ (Zadic—1748) ଓ କ୍ୟାନଡ଼ିଡ଼୍ ( Candid—1769 ) ର ନାମ ଉଲ୍ଲେଖଯୋଗ୍ୟ । ଏତାଦୃଶ ଅଭିନବ ରଚନା ପଦ୍ଧତି ମାଧ୍ୟମରେ ସେ ଚତୁରତା ସହିତ ଏକାଧାରରେ ଦୁଇଟି କଠିନ ଦାୟିତ୍ୱ ସମ୍ପାଦନ କରିଅଛନ୍ତି । ଏକ

ବଦଳରେ ବଞ୍ଚିବା ଅପେକ୍ଷା ହିଂସାପଥରେ କଳ୍ପନା କରିଛନ୍ତି ଏବଂ ଏହଦ୍ୱାରା ଲକ୍ଷ୍ମନୋବୃତ୍ତି ସମ୍ପନ୍ନ ପାଠକମାନଙ୍କୁ ଭାବିବା ଲାଗି କେତେକ ଉପାଦାନ ଦେବାକୁ ସମର୍ଥ ହୋଇ ପାରିଛନ୍ତି । ଏକ ଅଦ୍ଭୁତ କାହାଣୀ ମାଧ୍ୟମରେ ଚିତ୍ତାକର୍ଷକ ରୂପରେ ଗୁରୁତ୍ୱପୂର୍ଣ୍ଣ ନୈତିକ ଓ ଦାର୍ଶନିକ ଚିନ୍ତାଧାରାକୁ ପ୍ରକାଶ କରିବା ଦ୍ୱାରା ତାଙ୍କର ଏହି ଉଦ୍ଦେଶ୍ୟ ସଫଳ ହୋଇଅଛି । ଖ୍ରୀ: ୧୭୫୯ରେ ଲେଖକଙ୍କ ନାମ ନଥାଇ କ୍ୟାନ୍‌ଡ଼ିଡ଼ ପ୍ରକାଶ ପାଇଥିଲା । ଅର୍ଥହୀନ, ଅସାମ୍ୟ, ଅସାମଞ୍ଜସ୍ୟ ଓ ଅବିଚାରପୂର୍ଣ୍ଣ ପୃଥିବୀର ଏକ ନୈରାଶ୍ୟଜନକ ଚିତ୍ର ସେ ଏଥିରେ ଅଙ୍କନ କରିଅଛନ୍ତି । କିନ୍ତୁ ଉପସଂହାରରେ ମନୁଷ୍ୟର ସୁଖୀ ହେବାର ଗୋଟାଏ ବାଟର ମଧ୍ୟ ନିର୍ଦ୍ଦେଶ ଦେଇଛନ୍ତି । ବାଟଟା ହେଉଛି ସତ୍ୟ କଣ, ଜୀବନର ରହସ୍ୟ କଣ, ଏ ସମ୍ପର୍କରେ ମୁଣ୍ଡ ନ ଖେଳେଇ ଯେ ଯାହାର ନିଜକାମ କରିଯିବା ।'

( କ୍ୟାନଡ଼ିଡ଼—ଅନୁବାଦ-ଅଧ୍ୟାପକ ଡକ୍ଟର ଅରୁଣ ମିଶ୍ର ଭୂମିକା ପୃ—୧୩ )

ଅଷ୍ଟାଦଶ ଶତକର ଯୁରୋପରେ ରାଷ୍ଟ୍ରିକ, ସାମାଜିକ ଓ ଧାର୍ମିକ ଜୀବନରେ ଭଲଟେୟାର ଯେଉଁ ସାର୍ବିକ ଅଧଃପତନର ନଗ୍ନ ଓ ବୀଭତ୍ସ ରୂପ ପ୍ରତ୍ୟକ୍ଷ କରିଥିଲେ କାଁ ଡିଡ ତାହାର ପ୍ରତିଛବି । ଜନାଥନ ସୁଇଫଟଙ୍କ ଅନୁସରଣରେ ଏକ ମନଗଢ଼ା ଉପାଖ୍ୟାନର ପୃଷ୍ଠଭୂମିକାରେ ଭଲଟେୟାର ସେହି କ୍ଷୟିଷ୍ଣୁ ସମାଜର ମୂଢ଼ତା, ଲୋଭ ଓ ସ୍ୱାର୍ଥପରତାକୁ ପ୍ରଚଣ୍ଡ ବିଦ୍ରୂପରେ ଆଘାତ କରିଛନ୍ତି—ଯାହା ଫଳରେ ମଣିଷ ଆତ୍ମ ସମୀକ୍ଷା ଲାଗି ଉଦ୍‌ବୁଦ୍ଧ ହୋଇପାରିବ ।

ପତ୍ର ଲେଖିବାରେ ମଧ୍ୟ ଭଲଟେୟାର ଅଦ୍ୱିତୀୟ । କେତେକ ଆଲୋଚକ ତାହାଙ୍କ ପତ୍ରାବଳୀକୁ ତାହାଙ୍କର ଶ୍ରେଷ୍ଠ ସାହିତ୍ୟ କୀର୍ତ୍ତି ବୋଲି ମଧ୍ୟ ନିର୍ଦ୍ଧାରଣ କରିଅଛନ୍ତି । ଅଠର ବର୍ଷରୁ ଚଉରାଅଶୀ ବର୍ଷ ମଧ୍ୟରେ ସେ ବିଭିନ୍ନ ବ୍ୟକ୍ତିଙ୍କ ନିକଟକୁ ବିଭିନ୍ନ ପ୍ରସଙ୍ଗରେ ଯେତେ ଚିଠି ଲେଖିଛନ୍ତି ତାହାର ପରିମାଣ ଯେପରି ବିପୁଳ ସେହିପରି ତାହା ବୈଚିତ୍ର୍ୟପୂର୍ଣ୍ଣ । ଏହାର ପରିମାଣ ପ୍ରାୟ ଦଶହଜାରରୁ ଅଧିକ ଓ ଏଥିରୁ

ତାହାଙ୍କ ବ୍ୟକ୍ତିଗତ ତଥା ତତ୍କାଳୀନ ସାମାଜିକ ଜୀବନର ବହୁ ମୂଲ୍ୟବାନ ଉପାଦାନ ମିଳିଥାଏ । ତାହାଙ୍କ ସାହିତ୍ୟକୃତିର ସମସ୍ତ ବୈଶିଷ୍ଟ୍ୟ ଏହି ପତ୍ରଗୁଡ଼ିକରେ ମଧ୍ୟ ପରିଲକ୍ଷିତ ହୁଏ ।

ଭଲଟେୟାର ଥିଲେ ମୁଖ୍ୟତଃ ପ୍ରଗତି ଓ ସ୍ୱାଧୀନତାର କାଣ୍ଡାରୀ । ସର୍ବୋପରି ଭାଷଣର ସ୍ୱାଧୀନତା ଏବଂ ମୁକ୍ତ ଆଲୋଚନା ଯେ ଏକାନ୍ତ କାମ୍ୟ ଏହା ଥିଲା ତାଙ୍କର ଅଖଣ୍ଡ ବିଶ୍ୱାସ । ତାଙ୍କର ଏ ସମ୍ପର୍କରେ ଗୋଟିଏ ଉକ୍ତି ହେଉଛି "ତମେ ଯାହା କହୁଛ ସେ ସମ୍ପର୍କରେ ମୁଁ ଏକମତ ନହୋଇ ପାରେ; କିନ୍ତୁ ତୁମର ଏକଥା କହିବାର ଅଧିକାର ଅଛି କି ନାହିଁ ଏହାକୁ ପ୍ରତିପାଦନ କରିବା ଲାଗି ମୁଁ ମୃତ୍ୟୁ-ପର୍ଯ୍ୟନ୍ତ ଲଢ଼ିବି ।"

ଭଲଟେୟାରଙ୍କ ରଚନାଶୈଳୀ ଥିଲା ଅତୁଳନୀୟ । ଅନ୍ୟ କୌଣସି ଲେଖକ ଫରାସୀ ଭାଷାରେ ଏପରି ସାବଲୀଳ ଭାବରେ ଲେଖିପାରି ନାହାନ୍ତି । ତାହାଙ୍କ ଗଦ୍ୟ ରଚନାର ପ୍ରତ୍ୟେକଟି ପୃଷ୍ଠା ପ୍ରତିଭାର ବୁଦ୍ଧିଦୀପ୍ତ ମନୋଜ୍ଞ ବାଚନ ଭଙ୍ଗୀରେ ଉଦ୍‌ଭାସିତ ହୋଇଥିବା ଯୋଗୁ ଅତୀବ ଆକର୍ଷଣୀୟ । ତାହାଙ୍କ ରଚନା ବିରୁଦ୍ଧରେ ଯେଉଁ ପ୍ରତିକୂଳ ଅଭିମତ ପ୍ରକାଶ କରାଯାଉନା କାହିଁକି ଏହା ଯେ ଚିତ୍ତାକର୍ଷକ ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । କବିଭାବରେ ତାହାଙ୍କ କୃତିତ୍ୱ ଓ ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ । ଆପଣାର ନିରବଚ୍ଛିନ୍ନ ସୃଷ୍ଟିସମ୍ଭାରରେ ସେ ଫରାସୀ ସାହିତ୍ୟର ପ୍ରତ୍ୟେକଟି ବିଭାବକୁ ସମୃଦ୍ଧ ଓ ରସବନ୍ତ କରିଯାଇଅଛନ୍ତି ।

ତାହାଙ୍କ ସମକାଳୀନ ଫରାସୀ ସାହିତ୍ୟିକ ଓ ଅନ୍ୟତମ ଖ୍ୟାତନାମା ଲେଖକ ହେଉଛନ୍ତି ରୁଷୋ ( ୧୭୧୨—୭୮ ) । ରୁଷୋ ଥିଲେ ମରମୀ ଓ ଆବେଗପ୍ରବଣ । ଏଣୁ ବ୍ୟଙ୍ଗପ୍ରବଣ ଓ ବସ୍ତୁନିଷ୍ଠ ବିଶ୍ଳେଷକ ଭଲଟେୟାରଙ୍କର ରୁଷୋଙ୍କ ସହ ସମ୍ପର୍କ ବେଳେବେଳେ ଅମଧୁର ଜନିତ ହେଉଥିଲା; ତଥାପି ସେ ଦୁହେଁ ଏକ ଉଦ୍ଦେଶ୍ୟରେ ହିଁ ଲେଖନୀ ଚାଳନ କରିଛନ୍ତି । ତତ୍କାଳୀନ ସମାଜର ସମସ୍ୟା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ଓ ନୂତନ ସମାଜ ଗଠନ ଲାଗି ସୃଷ୍ଟି ପ୍ରେରଣା ଦେବା ଥିଲା ଉଭୟଙ୍କର ଲକ୍ଷ୍ୟ ।

କେତେକ ସମାଲୋଚକ ତାଙ୍କ ସନ୍ଦେହସଙ୍କୁଳ ଦୋଷଦର୍ଶୀ ବ୍ୟଙ୍ଗାତ୍ମକ ଭ୍ରୂକୁଟିକୁଟିଳ ଦୃଷ୍ଟିକୋଣକୁ ସମର୍ଥନ କରିପାରି ନାହାନ୍ତି । ଏହାକୁ ସେମାନେ ଅକ୍ଷମଣୀୟ ବର୍ଣ୍ଣନା ବାହୁଲ୍ୟ ଅତିରଞ୍ଜନ ବୋଲି ଉପହାସ ମଧ୍ୟ କରିଛନ୍ତି । ତଥାପି ଦୀର୍ଘ ଏକ ଶତାବ୍ଦୀ ବ୍ୟାପୀ ତାଙ୍କର ପ୍ରଭାବ ଯେ ସୁଦୂରପ୍ରସାରୀ ଏହା ଅନସ୍ୱୀକାର୍ଯ୍ୟ । ଅଷ୍ଟାଦଶ ଶତାବ୍ଦୀ ମାନବ ଜାତିର ମୁକ୍ତି, ଜାଗରଣ ଓ ବୌଦ୍ଧିକ ବିକାଶ କ୍ଷେତ୍ରରେ ଯାହାକିଛି ସମ୍ଭାବନ କରିପାରିଥିଲେ । ଭଲଟେୟାର ଥିଲେ ତାହାର ପ୍ରତୀକ ।

ଖ୍ରୀ ୧୭୭୮ରେ ସେ ପ୍ୟାରିସ ଫେରିବାକୁ ସ୍ଥିର କଲେ । ସେତେବେଳେ ପ୍ୟାରିସରେ ତାହାଙ୍କ ନବପ୍ରଣୀତ ଏକ ବିୟୋଗାତ୍ମକ ନାଟକ ( Irene ) ଅଭିନୟ ହେବାର ପ୍ରସ୍ତୁତି ଚାଲିଥାଏ । ସେତେ-ବେଳକୁ ପଞ୍ଚଦଶ ଲୁଇଙ୍କର ମୃତ୍ୟୁ ହୋଇ ସାରିଥାଏ ଓ ଶାସକବର୍ଗ ତାଙ୍କ ପ୍ରତି ପ୍ରତିକୂଳ ମନୋଭାବ ପୋଷଣ କରୁ ନଥାନ୍ତି । ପ୍ୟାରିସରେ ଜନସାଧାରଣ ତାଙ୍କୁ ଯେଉଁପରି ସମ୍ବର୍ଦ୍ଧନା ଜଣାଇଥିଲେ ତାହାଥିଲା ଅଭୂତପୂର୍ବ । ଫ୍ରାନ୍‌ସର ସର୍ବଶ୍ରେଷ୍ଠ ସାହିତ୍ୟିକ ସମ୍ମାନ, ଫରାସୀ ଏକାଡେମୀର ପରିଚାଳକ ଭାବେ ତାଙ୍କୁ ନିର୍ବାଚନ କରାଯାଇଥିଲା । ଭଲଟେୟାର ଆପଣାର ନାଟକ ମଞ୍ଚସ୍ଥ ହେବାର ସାଫଲ୍ୟରେ ଓ ଉଚ୍ଛ୍ୱସିତ ସମ୍ବର୍ଦ୍ଧନାରେ ଅଭିଭୂତ ହୋଇପଡ଼ିଲେ । ଚଉରାଅଶୀ ବର୍ଷ ବୟସରେ ଏତେ ଉତ୍ତେଜନା ସହିବା ତାଙ୍କ ପକ୍ଷେ ସମ୍ଭବ ହୋଇପାରି ନଥିଲା ଓ ସେ ଅସୁସ୍ଥ ହୋଇ ପଡ଼ିଲେ । ଏହି ଅସୁସ୍ଥ ଅବସ୍ଥାରେ ମଧ୍ୟ ସେ ଆଉ ଏକ ନାଟକ ରଚନାରେ ମନୋନିବେଶ କରିଥିଲେ; ମାତ୍ର ଏହି ନାଟକଟି ଅପୂର୍ଣ୍ଣ ରହିଗଲା—ପ୍ରାୟ ଦୁଇମାସ ଶଯ୍ୟାଶାୟୀ ହୋଇ ରହିବାପରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ପ୍ରଚଳିତ ସ୍ଥିତି ବିରୁଦ୍ଧରେ ତାହାଙ୍କର ନିରବଚ୍ଛିନ୍ନ ସଂଗ୍ରାମର ପରିଣାମ ସ୍ୱରୂପ ତାହାଙ୍କ ମୃତ୍ୟୁର ଏଗାରବର୍ଷ ପରେ ଫରାସୀ ବିପ୍ଳବ ( ୧୭୮୯ ) ସଙ୍ଘଟିତ ହେଲା । ମୃତ୍ୟୁପରେ ତାହାଙ୍କ ମରଶରୀରକୁ ମଧ୍ୟ ସମ୍ମାନଜନକ ପ୍ୟାରିସର ସମାଧି କ୍ଷେତ୍ରରେ ସ୍ଥାନ ଦିଆଯାଇ ନଥିଲା । ଏହାକୁ ସନ୍ନ୍ୟାସିନୀମାନଙ୍କ ଏକ ଉପାସନା ଗୃହରେ ପ୍ରଥମେ ରଖା-

ଯାଇଥିଲା । ମାତ୍ର ବିପ୍ଳବ ପରେ ଖୁବ୍ ଆଡ଼ମ୍ବର ଓ ମର୍ଯ୍ୟାଦା ସହକାରେ ଭଲ୍ଟେୟାରଙ୍କ ଶବ ଆଣି ପ୍ୟାରିସର ସମାଧି କ୍ଷେତ୍ରକୁ ତାହା ଅଣାଯାଇଥିଲା ଓ ତାହାଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀଙ୍କର ସମାଧି ନିକଟରେ ହିଁ ସମାଧିସ୍ଥ କରାଯାଇଥିଲା । ତାହାଙ୍କ ସମାଧିରେ ଯଥାର୍ଥତଃ ଖୋଦିତ ହୋଇଛି "ଏ ହେଉଛନ୍ତି ସେହି କବି, ଦାର୍ଶନିକ ଓ ଐତିହାସିକ ଯିଏ ମାନବିକ ପ୍ରଜ୍ଞାର ମୁକ୍ତ ବ୍ୟବହାରରେ ସମର୍ଥନ କରି ପାରିଥିଲେ ଓ ଆମକୁ ମୁକ୍ତି ପାଇଁ ପ୍ରସ୍ତୁତ କରି ପାରିଥିଲେ ।"

ମୁଖ୍ୟ ଚରିତ୍ର—

କାଁଡିଡ—ବ୍ୟାରନଙ୍କ ଭଉଣୀଙ୍କ ଅବୈଧ ସନ୍ତାନ ।

କ୍ୟୁନେ ଗଁଡ—ବ୍ୟାରନଙ୍କ କନ୍ୟା ।

ପାଁଗ୍ଲସ—କାଁଡିଡଙ୍କ ଗୃହଶିକ୍ଷକ ଓ ବନ୍ଧୁ ।

କାକାଁବୋ—କାଁଡିଡଙ୍କ ଚାକର ।

ସ୍ଥାନ—ୟୁରୋପ ଓ ଦକ୍ଷିଣ ଆମେରିକା ।

ବିଧାତାଙ୍କ ରଚିତ ଏଇ ଜଗତ ସବୁଠାରୁ ଶ୍ରେଷ୍ଠ ଓ ତାହାଙ୍କ ଇଚ୍ଛାରେ ସବୁ ବିଷୟ ଭଲ ପାଇଁ ହେଉଛି—ଜର୍ମାନ ଦାର୍ଶନିକ ଲାଇବନିଜ୍‌ଙ୍କ ଏଇ ଆଶାବାଦୀ ତତ୍ତ୍ୱର ଅସାରତା ପ୍ରତିପାଦନ ଉଦ୍ଦେଶ୍ୟରେ ଲେଖକ ଏଇ ଉପନ୍ୟାସଟି ରଚନା କରିଥିଲେ । ପାଁଗ୍ଲସଙ୍କ ଚରିତ୍ର ମାଧ୍ୟମରେ ଏହା ପ୍ରକଟିତ । ମନୁଷ୍ୟର ଦୋଷ ତ୍ରୁଟି ସମ୍ପର୍କରେ ଏହା ଏକ ଚମତ୍କାର ବ୍ୟଙ୍ଗ ରଚନା । ଲେଖକ ମନୁଷ୍ୟ ଜୀବନକୁ ନିୟନ୍ତ୍ରଣ କରୁଥିବା ପ୍ରଣୟ, ବିଜ୍ଞାନ, ଦର୍ଶନ, ଧର୍ମ, ରାଷ୍ଟ୍ରନୀତି ପ୍ରଭୃତି ବିଭିନ୍ନ ପ୍ରସଙ୍ଗକୁ ଏହାର ଅନ୍ତର୍ଭୁକ୍ତ କରାଇ ଅଛନ୍ତି । ଅର୍ଥହୀନ ଅସାମ୍ୟ, ଅସାମଞ୍ଜସ୍ୟ ଓ ଅବିଚାରପୂର୍ଣ୍ଣ ପୃଥିବୀର ଏକ ବୈରାଗ୍ୟଜନକ ଚିତ୍ର ଏଥିରେ ଅଙ୍କିତ; ତଥାପି ଗ୍ରନ୍ଥଟିର ଉପସଂହାରରେ ଲେଖକ ମନୁଷ୍ୟର ଆଦର୍ଶ ଭାବରେ, ସୁଖମୟ ଜୀବନ ଯାପନର ପନ୍ଥା ଭାବରେ ଯାହା ନିର୍ଦ୍ଦେଶ କରିଛନ୍ତି ତାହା ହେଉଛି ପ୍ରକୃତ ସତ୍ୟ କଣ; ଜୀବନର ରହସ୍ୟ କଣ

ଏ ବିଷୟରେ ଈଶ୍ୱରଙ୍କ ବା ଚିନ୍ତା ନ କରି ନିଜ କାମ କରିଯିବା ଶ୍ରେୟ-ସ୍କର । କୃଷକର ଜୀବନ ହେଉଛି ସର୍ବୋତ୍କୃଷ୍ଟ ଓ ଶାନ୍ତିପ୍ରଦ ।

କାଁଦିଦର ଜନ୍ମ ଓ୍ୱେଷ୍ଟଫେଲିଆରେ । ସେ ହେଉଛି ବ୍ୟାରନ ଭଉଣୀଙ୍କ ଅବୈଧ ସନ୍ତାନ । ବ୍ୟାରନ ଗୃହରେ ସେ ପ୍ରତିପାଳିତ ହେଉଥାଏ । ତାର ଗୃହ ଶିକ୍ଷକ ଡ. ପାଁଗ୍ଲସ ଥିଲେ ଦାର୍ଶନିକ ଲାଇବନିଜ୍‌ଙ୍କ ମତର ସମର୍ଥକ । ସିଏ କାଁଦିଦକୁ ଧର୍ମ, ଦର୍ଶନ, ବିଶ୍ୱରହସ୍ୟ ପ୍ରଭୃତି ବିଷୟରେ ଶିକ୍ଷା ଦିଅନ୍ତି । ଛାତ୍ରକୁ କହନ୍ତି ଏଇ ଜଗତ ହେଉଛି ସବୁଠାରୁ ଶ୍ରେଷ୍ଠ ଓ ଭଗବାନ ଯାହା କରନ୍ତି ସବୁ ଭଲ ପାଇଁ ।

ବ୍ୟାରନଙ୍କ ଝିଅ ନା କ୍ୟୁନେଗଁଦ ( ଏଇ ସଂକ୍ଷିପ୍ତ କଥାବସ୍ତୁରେ ତାହାକୁ ସଂକ୍ଷେପରେ କୁନେ ଭାବରେ ଲେଖା ଯାଉଛି) । ଦିନେ ପର୍ଦ୍ଦା ପଛପଟେ କୁନେ ଓ କାଁଦିଦଙ୍କ ଦେଖା ହୋଇଗଲେ । ଦୁହେଁ ଭାବାତି-ଶଯ୍ୟରେ ପରସ୍ପରକୁ ଚୁମ୍ବନ କଲେ । ଏହା ବ୍ୟାରନଙ୍କ ଦୃଷ୍ଟିରେ ପଡ଼ିଗଲା । ସେ ରାଗିଯାଇ କାଁଦିଦକୁ ଦୁର୍ଗ ଭବନରୁ ତଡ଼ିଦେଲେ ।

କାଁଦିଦ ସେଠାରୁ ଯାଇ ବୁଲଗେରିଆ ରାଜାଙ୍କ ସୈନ୍ୟ-ବାହିନୀରେ ଯୋଗ ଦେଇଛି । ବୁଲଗେରିଆ ରାଜା ଓ ଆବାରେସର ରାଜାଙ୍କ ମଧ୍ୟରେ ଯୁଦ୍ଧ ଲାଗିଥିବା ସମୟରେ କାଁଦିଦ ସେଠାରୁ ପଳାଇଛି । ବାଟରେ ଜେମସ ନାମକ ଜଣେ ବ୍ୟକ୍ତିଙ୍କ ସହ ତାହାର ବନ୍ଧୁତ୍ୱ ସ୍ଥାପିତ ହୋଇଛି ଓ ରାଜପଥରେ ସେ ଦେଖିବାକୁ ପାଇଛି ଭିକ୍ଷୁକ ଭାବରେ ବୁଲୁଥିବା ତାର ପୂର୍ବତନ ଶିକ୍ଷକ ପାଁଗ୍ଲସଙ୍କୁ ।

ଏହାପରେ କାଁଦିଦ, ଜେମ୍‌ସ ଓ ପାଁଗ୍ଲସ ଜାହାଜରେ ବସି ଲିସବନକୁ ଯାତ୍ରା କରିଛନ୍ତି । ବାଟରେ ପର୍ତ୍ତୁଗାଲ ଉପକୂଳରେ ଝଡ଼ ହେଲା ଓ ସେମାନଙ୍କ ଜାହାଜ ବି ପାଣିରେ ବୁଡ଼ିଗଲା । ଜେମସ ସମୁଦ୍ର ପାଣିରେ ବୁଡ଼ିଯାଇ ମୃତ୍ୟୁ ବରଣ କଲା । କାଁଦିଦ ଓ ପାଁଗ୍ଲସ ପହଁରି ପହଁରି କୌଣସି ମତେ ଆସି କୂଳରେ ଲାଗିଲେ । ସେତେବେଳକୁ ଲିସବନ ସହରଟି ଭୂମିକମ୍ପରେ ବିଧ୍ୱସ୍ତ ହୋଇ ଯାଇଥାଏ । ଲିସବନର ଶାସକ ଥିଲେ ଏକାଧାରରେ ଧାର୍ମିକ ଓ ଧର୍ମ ନିରପେକ୍ଷ । ସେ

ଏହାଦ୍ୱାରା ସ୍ଥିର କରିଥିଲେ ଯେ ଦୁଷ୍ଟ ଲୋକଙ୍କ ଯୋଗୁ ଏଇ ଭୂମିକମ୍ପ ହୋଇଛି । ଏଣୁ ସେମାନଙ୍କୁ ଦଣ୍ଡ ଦେବା ଆବଶ୍ୟକ । କାଁଡିଡ ଓ ପାଁଗ୍ଲସଙ୍କୁ ମଧ୍ୟ ଦୋଷୀ ବୋଲି ସାବ୍ୟସ୍ତ କରାଗଲା । ପାଁଗ୍ଲସଙ୍କୁ ଫାଶି ଦିଆଗଲା, କାଁଡିଡଙ୍କୁ ବେତ୍ରାଘାତରେ ଭୟଙ୍କର ଭାବେ ପିଟାଗଲା । କାଁଡିଡର ଦେହ ହେଲା କ୍ଷତବିକ୍ଷତ ଓ ରକ୍ତାକ୍ତ ।

କାଁଡିଡର କ୍ଷତ ସବୁ ଶୁଖି ଆସିଲା ବେଳକୁ ଜଣେ ବୃଦ୍ଧା ତାକୁ ଦେଖିବାକୁ ପାଇଲେ । ସେ ତାକୁ ଆଶ୍ୱାସନା ଦେଲେ ଓ ଆପଣା ଘରକୁ ଡାକିଲେ । କାଁଡିଡ ବୁଢ଼ୀଙ୍କୁ ଅନୁସରଣ କରି ତାଙ୍କ ସଂଗରେ ଆସି ପହଞ୍ଚିଲା । ବୁଢ଼ୀ ତାକୁ ଖାଇବାକୁ ଦେଲେ ଓ ପିନ୍ଧିବାକୁ ଲୁଗାପଟା ଦେଲେ । ଏଇଠି କୁନେ ସଂଗେ ତାର ଆକସ୍ମିକ ଭାବେ ଦେଖା ହୋଇଯାଇଛି । ଏହା ପୂର୍ବରୁ କୁନେର ମୃତ୍ୟୁ ହୋଇଯାଇଛି ବୋଲି ସେ ପାଁଗ୍ଲସଠାରୁ ଶୁଣିଥିଲା । ଏଣୁ କୁନେକୁ ସଶରୀରେ ଦେଖି ସେ ବିସ୍ମିତ ହୋଇଗଲା ।

କୁନେ ତାର କରୁଣ ଜୀବନ କାହାଣୀ ବର୍ଣ୍ଣନା କଲା । କାଁଡିଡ ଚାଲି ଆସିବାଠାରୁ ତା ଜୀବନରେ ଯାହା ଘଟିଥିଲା ସେ କାଁଡିଡ ନିକଟରେ ସବୁକଥା ବର୍ଣ୍ଣନା କଲା । ଦିନେ ରାତିରେ ବୁଲଗେରିଆର ଦସ୍ୟୁମାନେ ଆସି ତାର ପିତା ମାତା ଭାଇଙ୍କୁ ହତ୍ୟା କଲାପରେ ତାକୁ ନିର୍ଯ୍ୟାତିତ କରିଛନ୍ତି ଓ ପରେ ତାକୁ ଜଣେ ୟୁହୁଦୀ ବେପାରୀକୁ ବିକ୍ରୀ କରିଦେଲେ । ସେ ଏବେ ଏଠାରେ ତାକୁ ଆଣି ତାର ଭବନରେ ରକ୍ଷିତା ଭାବେ ରଖିଛି । ମାତ୍ର ସେଠାରେ ଧର୍ମଯାଜକ କୁନେପ୍ରତି ଆକୃଷ୍ଟ ହୋଇ ୟୁହୁଦୀ ବେପାରୀକୁ ଅଡୁଆରେ ପକାଇ ସପ୍ତାହରେ ତିନିଦିନ ପାଇଁ ତାକୁ ରକ୍ଷିତା କରି ରଖିଛନ୍ତି । କୁନେ ତାର ବୃଦ୍ଧା ପରିଚାରିକାକୁ ପଠାଇ ହେ କାଁଡିଡର ସେବା ଶୁଶ୍ରୂଷା କରାଇଛି ବୋଲି ପ୍ରକାଶ କଲା । ଏଇ ସମୟରେ ସେଇ ୟୁହୁଦୀ ଓ ତାପରେ ସେଇ ଧର୍ମାଚାର୍ଯ୍ୟ କୁନେକୁ ଭୋଗ କରିବା ଲାଗି ସେଠାକୁ ଆସିଛନ୍ତି । ମାତ୍ର ଏଇ ସୁଯୋଗରେ କାଁଡିଡ ସେଇ ଦୁଇଜଣଙ୍କୁ ହତ୍ୟା କରିଛି ।

ସେଠାରେ ରହିବା ବିପଦଜନକ ଜାଣି କାଁଡିଡ ବୁଢ଼ୀ ଓ କୁନେକୁ ସାଙ୍ଗରେ ନେଇ କାଡ଼ିଜ ସହରକୁ ପଳାଇ ଯାଇଛି ।

ଜାହାଜରେ ସେମାନେ ଡକାୟତ ହାବୁଡ଼ରେ ପଡ଼ନ୍ତି ଓ ଡକାୟତ ଦଳ ସେମାନଙ୍କ ସମସ୍ତ ଜିନିଷପତ୍ର ନେଇ ଚାଲିଗଲେ । ଏଣୁ ସେମାନେ ନିଃସ୍ୱ ହୋଇ ସମୁଦ୍ର ପଥରେ ପାରାଗୁଏ ସହରକୁ ଯାତ୍ରାକଲେ । କାଣ୍ଡିଡ ଭାବିଥିଲା ସେଠାରେ ପହଞ୍ଚି ସେ ସ୍ପେନୀୟ ସୈନ୍ୟ ବିଭାଗରେ ଯୋଗଦେବ । ସେତେବେଳେ ସ୍ପେନ ସୈନ୍ୟ ଓ ବିଦ୍ରୋହୀ ଯେସୁଇଟ-ମାନଙ୍କ ମଧ୍ୟରେ ଲଢ଼େଇ ଚାଲିଥାଏ । ନୌ ଯାତ୍ରାକାଳରେ ବୁଢ଼ୀଠାରୁ ତାର ଜୀବନ କାହାଣୀ ଶୁଣିବାକୁ ମିଳିଲା । କାଣ୍ଡିଡ ଓ କୁନେ ଜାଣିବାକୁ ପାଇଲେ ଯେ ବୁଢ଼ୀ ହେଉଛି ପୋପ ଅର୍ବାନଙ୍କ ଝିଅ ଓ ପାଲେଷ୍ଟ୍ରିନାର ରାଜକୁମାରୀ ଦୁର୍ଭାଗ୍ୟ ବଶତଃ ତାକୁ ଆଜ ପରିଚାରିକା ବୃତ୍ତି ଗ୍ରହଣ କରିବାକୁ ପଡ଼ୁଛି ।

ଏହାପରେ ସେମାନେ ଆସି ବୁଏନ୍‌ସ ଏରିସରେ ପହଞ୍ଚିଲେ । ସେଠାରେ ଗଭର୍ଣ୍ଣର କୁନେକୁ ଦେଖି ତାହା ପ୍ରତି ଆକୃଷ୍ଟ ହୋଇ ପଡ଼ନ୍ତି । କାଣ୍ଡିଡକୁ କପରି କୁନେଠାରୁ ହଟେଇଦେବେ ସେଥିପାଇଁ ସେ ତା ବିରୁଦ୍ଧରେ ଏକ ମିଥ୍ୟା ଅଭିଯୋଗ ଆଗତ କରନ୍ତି । ତାହା ହେଉଛି, କାଣ୍ଡିଡ ସ୍ପେନରେ ଥିବାବେଳେ ଡକାୟତି କରୁଥିଲା । ବିପଦର ଆଶଙ୍କା ଦେଖି କୁନେ ଓ ବୁଢ଼ୀକୁ ସେଇଠି ରଖାଇ କାଣ୍ଡିଡ ତାହାର ବିଶ୍ୱାସୀ ଚାକର କାକାମ୍ବୋ ସହ ପଳାଇ ଯାଇଛି । ସେ ଯେସୁଇଟଙ୍କ ସପକ୍ଷରେ ଯୁଦ୍ଧ କରିବାକୁ ରାଜି ହୋଇ ଯାଇଛି । ଏହା ମଧ୍ୟ ସେ ଜାଣିପାରିଛି ଯେ, ଏଇ ଯେସୁଇଟ ଦଳର ସେନା ନାୟକ ହେଉଛନ୍ତି କୁନେର ବଡ଼ ଭାଇ । ସେ ଅତ୍ୟନ୍ତ ଅଭିମାନୀ ଓ କୁନେ ସହ କାଣ୍ଡିଡର ବିବାହକୁ ଆଦୌ ସମର୍ଥନ କରିପାରିନାହାନ୍ତି । କାଣ୍ଡିଡର ଅନୁରୋଧକୁ ସେ କର୍ଣ୍ଣପାତ କଲେ ନାହିଁ । ଏଥିପାଇଁ କାଣ୍ଡିଡ ଓ ତାଙ୍କ ମଧ୍ୟରେ କଳହ ହୋଇଛି । କାଣ୍ଡିଡ ତାଙ୍କୁ ଅସ୍ତ୍ରାଘାତ କରିଛି ଓ ତଦ୍ଦ୍ୱାରା ମୃତ୍ୟୁ ହୋଇଯାଇଛି ଭାବି ଚାକର ସହ ସେଠାରୁ ପଳାଇ ଯାଇଛି ।

ଦୁହେଁ କିଛିଦୂର ଗଲାପରେ ବଣୁଆ ଭାରତୀୟ ଅର୍ଲିଅନ ମାନେ ସେମାନଙ୍କୁ ଯେସୁଇଟ ଦଳୀୟ ଭାବି ବନ୍ଦୀ କରନ୍ତି । ମାତ୍ର ସେମାନଙ୍କୁ ଯେସୁଇଟ ନୁହନ୍ତି ବୋଲି କାକାମ୍ବୋ ବୁଝେଇ ଦେବାରୁ ଅର୍ଲିଅନମାନେ ସେମାନଙ୍କୁ ଛାଡ଼ି ଦେଇଛନ୍ତି । ସେଠାରୁ ସେମାନେ ଯାଇ ଏଲଡୋରା-

ରାଡୋ ନାମକ ଏକ ଅପୂର୍ବ ରାଜ୍ୟରେ ପହଞ୍ଚିଲେ । ଏଇଠି ସେମାନେ ସଉକଭାବେ ଓ ଶାନ୍ତିରେ କାଳ କଟାଇଲେ । କେବଳ କୁନେକୁ ହରାଇଥିବା ଯୋଗୁଁ ହିଁ କାଣ୍ଡିଡର ମନରେ ଦୁଃଖ ହେଉଥାଏ । ଶେଷରେ ସେ ସ୍ଥିରକଲା କୁନେକୁ ଖୋଜିବା ଲାଗି ସେ ସେଠାରୁ ଗୁଡ଼ାଏ ଚକଚକ କରୁଥିବା ବାଲିଗରଡ଼ା ଓ ସୁନେଲି ମାଟି ନେଇ ବୁଏନ୍‌ସ ଏରିସକୁ ଫେରିଯିବ । ଶହେଟି ମେଣ୍ଢା ଉପରେ ଖାଦ୍ୟ ଓ ଏଇ ସବୁ ଜିନିଷ ଲଦି ସେମାନେ ସେ ଦେଶ ରାଜାଙ୍କଠାରୁ ବିଦାୟ ନେଇ ବାହାରିଲେ; ମାତ୍ର କେବଳ ଦୁଇଟି ମେଣ୍ଢା ଛଡ଼ା ସେମାନେ ସେମାନଙ୍କର ସବୁ ଧନସମ୍ପଦ ବାଟରେ ହରାଇ ବସିଲେ !

କାଣ୍ଡିଡର ଅନୁରୋଧକ୍ରମେ ଦିନାମାର ବେପାରୀମାନେ ସେ ଦୁହିଁଙ୍କୁ ସାହାଯ୍ୟ କଲେ । ସେମାନଙ୍କ ସାହାଯ୍ୟରେ କାଣ୍ଡିଡ ବୁଏନ୍‌ସ ଏରିସ୍‌ରେ ପହଞ୍ଚିଲା; ମାତ୍ର ବେପାରୀମାନେ କାଣ୍ଡିଡକୁ ଛାଡ଼ିଦେଇ ତା'ର ସବୁ ଧନସମ୍ପତ୍ତି ନେଇ ଜାହାଜରେ ଚାଲିଗଲେ । କାକମ୍ବୋ ବୁଏନ୍‌ସ ଏରିସ୍‌ରେ କୁନେକୁ ଖୋଜିବାକୁ ଯାଇଛି । ସ୍ଥିରହେଲା କାକାମ୍ବୋ 'କାଙ୍କା ସେଠାରୁ କୁନେକୁ ନେଇ ଭେନିସ୍ ଯିବ । କାଣ୍ଡିଡ ଯାଇ ଭେନିସରେ ପହଞ୍ଚିଲେ ସେଇଠି କୁନେକୁ ଭେଟିବ । ସମୁଦ୍ରରେ ଯୁଦ୍ଧ ଓ ବହୁ ବିପଦପୂର୍ଣ୍ଣ ନୌଯାତ୍ରା ପରେ କାଣ୍ଡିଡ ବର୍ଡୋକ୍ସ ସହରରେ ପହଞ୍ଚିଛି । ଗୋଟିଏ ବୁଡ଼ିଯାଉଥିବା ଜାହାଜରୁ ସେ ଉଦ୍ଧାର କରି ପାରିଛି ତାର ଗୋଟିଏ ମେଣ୍ଢାକୁ । ପାରିସ୍ ବାଟ ଦେଇ ସେ ଭେନିସ୍ ଯାଉଥିଲା ବେଳେ ପାରିସ୍‌ରେ ପୁଲିସ ତାକୁ ଗିରଫ କରିଛି; ମାତ୍ର କାଣ୍ଡିଡ ପୋଲିସକୁ କିଛି ଘାବ ଲାଞ୍ଚ ଦେବାରୁ ସେ ତାକୁ ଛାଡ଼ିଦେଇଛି ।

ଏହାପରେ ଏକ ଦିନାମାର ଜାହାଜରେ ସେ ଇଂଲଣ୍ଡର ପୋର୍ଟସ୍ ମାଉଥ ସହରରେ ଆସି ପହଞ୍ଚିଛି । ସେଠାରେ ଜଣେ ଇଂରେଜ ସେନାପତିଙ୍କୁ କପଟ ଫାଶି ଦିଆଯାଉଥିଲା ତାହା ସେ ଦେଖିଛି । ସେଠାରୁ ଯାଇ ସେ ଭେନିସ୍‌ରେ ପହଞ୍ଚିଛି, ମାତ୍ର ସେଠାରେ ସେ କାକାମ୍ବୋକୁ ଅଥବା କୁନେ କାହାକୁ ଦେଖିବାକୁ ପାଇନାହିଁ । ଯୋଗକୁ କୁନେର ପରିଚାରିକା ପାକେଟ ସଙ୍ଗେ ତାର ଦେଖା ହୋଇଛି ଓ ପରେ ସେ

ଦେଖିବାକୁ ପାଇଛୁ ଜାକାମ୍ବୋକୁ । ଜାକାମ୍ବେ ସେତେବେଳେ ଜଣେ ବ୍ୟକ୍ତିଙ୍କର କ୍ରୀତଦାସ । କାଁଡିଡ ଜାକାମ୍ବୋଠାରୁ ତାର କୁନେଁର ଦୁର୍ଦ୍ଦଶାର କାହାଣୀ ଶୁଣିବାକୁ ପାଇଛୁ । ତା'ଆଠାରୁ ଜାଣିବାକୁ ପାଇଲା, କୁନେ ଏବେ କନଷ୍ଟାଣ୍ଟିନୋପଲରେ ଦାସୀବୃତ୍ତି କରୁଛି, ସେ ହୋଇ ପଡ଼ିଛି ସୌନ୍ଦର୍ଯ୍ୟହୀନା ।

ଯାହାହେଉ, କାଁଡିଡ ତାର ପୂର୍ବ ପ୍ରଣୟିନୀକୁ ଉଦ୍ଧାର କରିବ । ଜାକାମ୍ବୋକୁ ନେଇ ଗୋଟାଏ ପାଲଟଣା ଡଙ୍ଗାରେ ସେ କନଷ୍ଟାଣ୍ଟିନୋପଲକୁ ଯାତ୍ରାକଲା । ସେଇ ଡଙ୍ଗାରେ ଯାଉଥିଲା ବେଳେ ସେ କୁନେର ଭାଇ ଓ ପାଁଗ୍ଲସକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସେ ଦୁହେଁ ଡଙ୍ଗାମାଲିକର କ୍ରୀତଦାସ ଭାବେ ଡଙ୍ଗା ଚଳାଉଥାନ୍ତି । କାଁଡିଡ ଜାଣିଥିଲା ସେ ଦୁଃହିଁଙ୍କର ମୃତ୍ୟୁ ହୋଇସାରିଛି । ଫାଶି ଦଉଡ଼ି ଦାୟିତ୍ୱରେ ଥିବା ଲୋକର ତ୍ରୁଟି ଯୋଗୁ କପରି ପାଁଗ୍ଲସ ଫାଶି ଦଣ୍ଡ ପାଇ ମଧ୍ୟ ଆଶ୍ଚର୍ଯ୍ୟଜନକଭାବେ ରକ୍ଷା ପାଇଗଲେ ତାହା କାଁଡିଡ ନିକଟରେ ବର୍ଣ୍ଣନା କରିଛନ୍ତି । କୁନେର ଭାଇ କହୁଛନ୍ତି—ତୁମେ ମୋତେ ଅସ୍ତ୍ରରେ ଆଘାତ କରିଥିଲ; ମାତ୍ର ଏଇ ଆଘାତ ସେପରି ମାରାତ୍ମକ ନଥିଲା । ଏଣୁ ମୁଁ ବଞ୍ଚିଗଲି । ଡଙ୍ଗାମାଲିକ ଭିନ୍ନଦେଶୀୟ । କାଁଡିଡ ଡଙ୍ଗା ମାଲିକଙ୍କୁ ଟଙ୍କା ଦେଇ କ୍ରୀତଦାସଭାବେ ଥିବା ପାଁଗ୍ଲସ ଓ କୁନେର ଭାଇକୁ ମୁକ୍ତକରି ଆଣିଲା ।

ସମସ୍ତେ ଆସି କନଷ୍ଟାଣ୍ଟିନୋପଲରେ ପହଞ୍ଚିଲେ । କାଁଡିଡ, ଟଙ୍କାଦେଇ ବୁଢ଼ୀ ଓ କୁନେକୁ ତା ମାଲିକଙ୍କଠାରୁ ମୁକ୍ତକରି ଆଣିଲା । ସେଠାରେ ସେ ଗୋଟିଏ ଛୋଟ ବଗିଚା କଣିଛି ଓ ସେଇଠି ଘରଦ୍ୱାର କରି ସମସ୍ତଙ୍କୁ ନେଇ ରହୁଛି । ସେଠ ସମସ୍ତେ ଯେ ଯାହାର ନିର୍ଦ୍ଦିଷ୍ଟ କାମ କରୁଥିଲେ ଓ ଶାନ୍ତିରେ ରହୁଥିଲେ । ଜୀବନରେ ଏତେ ଲୋକଙ୍କ ସମ୍ପର୍କରେ ଆସି ଓ ଏତେ ସ୍ଥାନକୁ ଯାଇ କାଁଡିଡ ଶେଷରେ ଏଇ ଗୋଟିଏ କଥା ଶିଖିଥିଲା—ସେ ଏହା ସିଦ୍ଧାନ୍ତ କରିଥିଲା ଯେ, ନିଜ ବଗିଚାରେ ଚାଷ କରିବା ହେଉଛି ଜଗତରେ ସର୍ବୋତ୍କୃଷ୍ଟ କାର୍ଯ୍ୟ ।



# ଗେଟେ

ଜର୍ମାନର ଶ୍ରେଷ୍ଠ କବି ଓ ନାଟ୍ୟକାର ଭାବେ ଗେଟେ ବିଶ୍ୱ-ବିଶ୍ରୁତ । ସେ ଥିଲେ ଏକାଧାରରେ କବି, ନାଟ୍ୟକାର ଆଲୋଚକ, ଔପନ୍ୟାସିକ ଓ ବୈଜ୍ଞାନିକ । ଗେଟେଙ୍କ ପ୍ରତିଭା ଥିଲା ଅପୂର୍ବ ଓ ଅସାଧାରଣ—ବିଶ୍ୱରେ ଏପରି ବ୍ୟକ୍ତିତ୍ୱ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସାହିତ୍ୟିକ ପ୍ରତିଭା ବ୍ୟତୀତ ସେ ବହୁ କଳାରେ ଥିଲେ ଧୁରନ୍ଧର । ଦକ୍ଷପ୍ରଶାସକ ଭାବେ ବିଭିନ୍ନ ଦାୟିତ୍ୱପୂର୍ଣ୍ଣ ପଦବୀରେ ମଧ୍ୟ ସେ ତାଙ୍କର କୃତିତ୍ୱ ଦର୍ଶାଇ ଯାଇଛନ୍ତି । ବିଜ୍ଞାନ ପ୍ରତି ତାଙ୍କର ଅନୁରାଗ ଯୋଗୁ ଖଣିଜ ବିଜ୍ଞାନ, ଚକ୍ଷୁବିଜ୍ଞାନ (optines) ତୁଳନାତ୍ମକ ଶରୀର-ବିଜ୍ଞାନ (anatomy) ଓ ଉଦ୍ଭିଦ (morphology) କ୍ଷେତ୍ରକୁ ମଧ୍ୟ ତାଙ୍କର ଅବଦାନ ଗୁରୁତ୍ୱପୂର୍ଣ୍ଣ ।

ଫରାସୀ (ଅଧ୍ୟୁଷିତ) ଅଧିକୃତ ଫ୍ରାଙ୍କଫୁର୍ଟ୍ ଆମ-ମେଁ ସହରରେ ଏକ ଉନ୍ନତ ଏବଂ କଳା ଓ ସଂସ୍କୃତିସଂପନ୍ନ ମଧ୍ୟବିତ୍ତ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ଶୈଶବରେ ସେ ଉତ୍ତମ ଶିକ୍ଷାଲାଭର ସୁଯୋଗ ଲାଭ କରିଥିଲେ । ଏହି ସହରର ଏକ ଫରାସୀ ଥିଏଟର ସହିତ ଅତି ଅଳ୍ପ ବୟସରୁ ସେ ଘନିଷ୍ଠ ଭାବେ ସଂପୃକ୍ତ ହୋଇ ପଡ଼ିଥିଲେ ଓ ଏହି ସଂପର୍କ ତାଙ୍କୁ ନାଟକ ରଚନା ପ୍ରତି ଆକୃଷ୍ଟ କରିଥିଲା । ଏହାର ପରିଣାମସ୍ୱରୂପ ସେ ଫରାସୀ ନବ୍ୟ କ୍ଲାସିସିଜମ ଧାଞ୍ଚରେ ଏକ ନାଟକ ପ୍ରଣୟନ କରିଥିଲେ । ଏହା ହିଁ ତାଙ୍କର ପ୍ରଥମ ରଚନା ।

ପିତାଙ୍କ ପରାମର୍ଶକ୍ରମେ ୧୬ବର୍ଷ ବୟସରେ ସେ ଲିପ୍‌ଜିଗ୍ ବିଶ୍ୱବିଦ୍ୟାଳୟରେ ଆଇନ ଶାସ୍ତ୍ର ଅଧ୍ୟୟନ କରିବାକୁ ଯାଇଥିଲେ; ମାତ୍ର ସେଠାରେ କେତେବର୍ଷ ଅଧ୍ୟୟନ କଲାପରେ ସେ ଗୁରୁତର ପୀଡ଼ାଗ୍ରସ୍ତ ହୋଇପଡ଼ିଲେ । ବାଧ୍ୟହୋଇ ତାଙ୍କୁ ବିଶ୍ୱବିଦ୍ୟାଳୟରୁ ଫେରିଆସିବାକୁ ପଡ଼ିଥିଲା ଓ ପ୍ରାୟ ଏକବର୍ଷ ପାଇଁ ସେ ଏକ ପ୍ରକାର ଅକର୍ମଣ୍ୟ ହୋଇ-ପଡ଼ିଥିଲେ, ମାତ୍ର ଏହି ସମୟ ମଧ୍ୟରେ ସେ ରସାୟନ ବିଦ୍ୟା ଅଧ୍ୟୟନ କରିଥିଲେ ଓ ପ୍ରଚଳିତ ଧର୍ମଧାରା ଧାର୍ମିକ ଜୀବନଯାପନର ରୀତି ଦ୍ୱାରା ପ୍ରଭାବିତ ହୋଇଥିଲେ । ସୁସ୍ଥ ହେବା ପରେ ସେ ଷ୍ଟ୍ରାସବର୍ଗ ବିଶ୍ୱ-ବିଦ୍ୟାଳୟରେ ଯୋଗ ଦେଲେ ଓ ସେଠାରୁ ଆଇନ୍ ଶାସ୍ତ୍ରରେ ଉପାଧି ଲାଭ କଲେ (୧୭୭୦-୭୧) । ଏହି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ସେ ବିଶିଷ୍ଟ ଆଲୋଚକ ଓ ଭାବୁକ ଜନଗଟ୍‌ଫ୍ରେଡ଼-ହେଡ଼ରଙ୍କ (୧୭୪୪-୧୮୦୩) ସମ୍ପର୍କରେ ଆସିଲେ । ହେଡ଼ର ଥିଲେ ନବ୍ୟ କ୍ଲାସିସିଜମ୍ ରୀତିରେ ସାହିତ୍ୟ ସୃଷ୍ଟିର ବିରୋଧୀ ଓ କୃତ୍ରିମ ସାହିତ୍ୟ ସୃଷ୍ଟି ବିରୁଦ୍ଧରେ ସେ ଏକ ଆନ୍ଦୋଳନ ଆରମ୍ଭ କରିଥିଲେ । ଏହାଙ୍କ ଦ୍ୱାରା ଅନୁପ୍ରାଣିତ ହେବା ହିଁ ଥିଲା ଏହି ଅନୁଷ୍ଠାନର ପ୍ରଧାନ ଶିକ୍ଷା । ଏହା ଗେଟେଙ୍କର ପରବର୍ତ୍ତୀ ସାହିତ୍ୟିକ ଜୀବନକୁ ପ୍ରଭାବିତ କରିଥିଲା ।

ପରବର୍ତ୍ତୀ ପାଞ୍ଚବର୍ଷ ସେ ଆପଣା ଗୃହରେ ରହି ବେଳେ ବେଳେ ଆଇନ ବ୍ୟବସାୟରେ ଆତ୍ମନିୟୋଗ କରିଥିଲେ; ମାତ୍ର ସାହିତ୍ୟ ରଚନା ଥିଲା ତାଙ୍କର ଏହି ସମୟର ପ୍ରଧାନ କାର୍ଯ୍ୟ । ଏହି ସମୟ ମଧ୍ୟରେ ତାହାଙ୍କ ରଚିତ କେତେକ ପ୍ରଣୟ ପ୍ରଧାନ କବିତା ଓ ଅନ୍ୟାନ୍ୟ ରଚନା ପ୍ରକାଶିତ ହୋଇଥିଲା । ତାହାଙ୍କ ସୁପ୍ରସିଦ୍ଧ ରଚନା ଫଷ୍ଟ (Faust) ମଧ୍ୟ ସେ ଏହି ସମୟରେ ପରିକଳ୍ପନା କରିଥିଲେ । ଖ୍ରୀ. ୧୭୭୩ ତାଙ୍କର ଏକ ନାଟକ (Gotz Vou Berlichingeu) ପ୍ରକାଶିତ ହେଲା । ଏହା ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ସାହିତ୍ୟ କ୍ଷେତ୍ରରେ ସେ ହଠାତ୍ ସୁପରିଚିତ ହୋଇଗଲେ । ମଧ୍ୟଯୁଗର ଶେଷ ଭାଗରେ ଜଣେକି ସମ୍ଭ୍ରାନ୍ତ ଜମିଦାର କପରି କୃଷକମାନଙ୍କ ପକ୍ଷ ସମର୍ଥନ ପୂର୍ବକ ବିଦ୍ରୋହ କରି ବିଫଳକାମ ହୋଇଥିଲେ; ତାହା ହିଁ ଏହି ନାଟକର କଥାବସ୍ତୁ ।

ପ୍ରଚଳିତ ନାଟ୍ୟରୀତିକୁ ଉପେକ୍ଷା କରି ଏହି ନାଟକଟି ରଚିତ ହୋଇଥିଲେ ହେଁ ଏଥିରେ ମୁକ୍ତିର ଆଦର୍ଶକୁ ବଳିଷ୍ଠ ଭାବେ ଉପସ୍ଥାପିତ କରିବାରେ ସେ ହୋଇଥିଲେ ସଫଳକାମ । ଏହାପରେ ଗେଟେ ଅନ୍ୟ ଏକ ସମ୍ପୂର୍ଣ୍ଣ ଭିନ୍ନ ପ୍ରସଙ୍ଗକୁ ଭିତ୍ତିକରି ଏକ ଉପନ୍ୟାସ The Sorrow of youny werther) ୧୭୭୪ରେ ରଚନା କରିଥିଲେ । ଏହା ମଧ୍ୟ ପ୍ରଶଂସା ସାଫଲ୍ୟ ଅର୍ଜନ କରିଥିଲା । ପତ୍ରାକାରରେ ଲିଖିତ (epistolary) ଏହି ରଚନାଟି ଜନୈକ ତରୁଣ ପ୍ରେମିକର ବ୍ୟର୍ଥ ପ୍ରେମର ଏକ କରୁଣ କାହାଣୀ ଚମତ୍କାର ଉପସ୍ଥାପନା ଶୈଳୀ ଓ ମନସ୍ତାତ୍ତ୍ୱିକ ଅନ୍ତର୍ଦୃଷ୍ଟି ଦୃଷ୍ଟିରୁ ଏହାର ମହତ୍ତ୍ୱ ଏବେ ମଧ୍ୟ ସ୍ୱୀକୃତ । ଗେଟେଙ୍କ ବ୍ୟକ୍ତିଗତ ଜୀବନର ପ୍ରତିଲିପି ମଧ୍ୟ ଏଥିରେ ପ୍ରତିଫଳିତ ହୋଇଅଛି ।

ଗେଟେଙ୍କ ସାହିତ୍ୟିକ ପ୍ରତିଭାରେ ମୁଗ୍ଧ ହୋଇ ଖ୍ରୀ: ୧୭୭୫ରେ ଓ୍ୱେମାରର ତରୁଣ ଡ୍ୟୁକ ତାହାଙ୍କୁ ନିଜ ଦରବାରକୁ ଆମନ୍ତ୍ରଣ କରିଥିଲେ । ସେତେବେଳେ ଓ୍ୱେମାର ଥିଲା ଏକଲକ୍ଷ ଜନସଂଖ୍ୟାବିଶିଷ୍ଟ ଏକ ଛୋଟ ରାଜ୍ୟ । ଏପରି ବହିର୍ଭୂତ ଓ କ୍ଷୁଦ୍ର ରାଜଧାନୀର ଲୋକସଂଖ୍ୟା ଥିଲା ମାତ୍ର ନ' ହଜାର; ତଥାପି ଏହାର ତରୁଣ ଡ୍ୟୁକ କାର୍ଲ ଅଗଷ୍ଟଙ୍କ ଉଦ୍ୟମରେ ଏହି ସହରଟି ସେତେବେଳେ ସମଗ୍ର ଜର୍ମାନୀର ସାଂସ୍କୃତିକ ରାଜଧାନୀରେ ପରିଣତ ହୋଇଥିଲା । ଓ୍ୱାଇଲାଣ୍ଡ, ଗେଟେ, ହେର୍ଡ଼ର, ସିଲର ପ୍ରଭୃତି ବିଶିଷ୍ଟ କବି ଓ ଲେଖକଙ୍କ ସମାବେଶରେ ଏହା ଯଥାର୍ଥତଃ ଜର୍ମାନର 'ବୁଧହଂସକେଳି ସରିର' ରୂପଧାରଣ କରିଥିଲା । ଗେଟେ ଡ୍ୟୁକଙ୍କର ନିମନ୍ତ୍ରଣ ରକ୍ଷା କରି ଓ୍ୱେମାରକୁ ଆସି ଏଠାରେ ସ୍ଥାୟୀ ଭାବେ ରହିଲେ । ତାହାଙ୍କ ଯୋଗ୍ୟତାରେ ମୁଗ୍ଧ ହୋଇ ଡ୍ୟୁକ ତାଙ୍କୁ ରାଜ୍ୟର ବିବିଧ ପ୍ରଶାସନିକ ଗୁରୁଦାୟିତ୍ୱପୂର୍ଣ୍ଣ ପଦ ମଧ୍ୟ ଅର୍ପଣ କରିଥିଲେ । ଏହିସବୁ ଦାୟିତ୍ୱପୂର୍ଣ୍ଣ ପଦରେ ଅଧିଷ୍ଠିତ ହୋଇ ଗେଟେ କ୍ରମେ ବହିର୍ଜାଗତିକ ବିଷୟରେ ଅଭିଜ୍ଞ ହୋଇପାରିଥିଲେ । ଏହା ଫଳରେ ତାଙ୍କର ସୃଜନଶୀଳତା ବହୁପରିମାଣରେ ଶିଥିଳ ହୋଇପଡ଼ିଥିଲା । ଏହିପରି ପ୍ରାୟ ଦଶ ବର୍ଷ ଆବଦ୍ଧ ଜୀବନ ଅତିବାହିତ କଲାପରେ ଗେଟେ ହୋଇପଡ଼ିଲେ ଅସ୍ଥିର । ଅନେକ ଦିନରୁ ଦେଶଭ୍ରମଣ କରିବାକୁ ତାଙ୍କର ବଳବତ୍ତର ଇଚ୍ଛା । ଏବେ ସେଇ ସୁଯୋଗ ଉପସ୍ଥିତ ହେଲା ।

ଖ୍ରୀ: ୧୮୭୬ରେ ସେ ଇଟାଲି ଯାଇ ପ୍ରାୟ ଦୁଇ ବର୍ଷ ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନ ପରିଭ୍ରମଣରେ କଟାଇଦେଲେ । ତାହାଙ୍କର ଏହି ଅଭିଜ୍ଞତାକୁ ଉପଜୀବ୍ୟ କରି ସେ ରଚନା କରିଥିଲେ 'ଇଟାଲୀୟ ପରିଭ୍ରମଣ' । କ୍ରମେ ତାହାଙ୍କ ଦୃଷ୍ଟିଭଙ୍ଗୀ ପରିବର୍ତ୍ତିତ ହୋଇଥିଲା ଓ ସେ କ୍ଲାସିକ ରଚନା ପ୍ରତି ଅଧିକ ଅନୁରକ୍ତ ହୋଇଥିଲେ । ଏହି ସମୟରେ ଲିଖିତ କେତୋଟି ନାଟକରୁ ଏହାର ପ୍ରଭାବ ସହଜରେ ଜାଣିହୁଏ । ସେହି ନାଟକଗୁଡ଼ିକ ହେଉଛି (୧) ଏଗମେଣ୍ଟ (୧୭୮୮), (୨) ଏଫିଜେନିଆରେ ତା ଉରିସ (୧୭୮୭) ଓ (୩) ତରକ୍ୱ ଆଟୋତାସୋ (୧୭୯୦) । ତାହାଙ୍କର ସର୍ବଶ୍ରେଷ୍ଠ କୃତି ଫଷ୍ଟର ଗୋଟିଏ ଭାଗ (Faust a Fragment) ଆତ୍ମପ୍ରକାଶ କରିଥିଲା । ମାତ୍ର ଫଷ୍ଟର ପ୍ରଥମ ଭାଗ ପୂର୍ଣ୍ଣାଙ୍ଗରୂପେ ୧୮୦୮ରେ ଓ ୨ୟ ଭାଗ ୧୮୩୨ରେ ପ୍ରକାଶ ପାଇଥିଲା ।

ଇଟାଲୀରୁ ଓ୍ୱେମାରକୁ ଫେରିବା ପରେ ଗେଟେଙ୍କ ଜୀବନରେ ଆଉ କୌଣସି ଘଟଣାବୈଚିତ୍ର୍ୟ ପରିଲକ୍ଷିତ ହୁଏ ନାହିଁ । ସେ ଏହାପରେ ଓ୍ୱେମାରର ରାଜକୀୟ ଅଫିସ୍ ଦାୟିତ୍ୱରୁ ଅବ୍ୟାହତି ଲାଭ କରିଥିଲେ । ମାତ୍ର ରାଜାଙ୍କ ଥିଏଟରର ନିର୍ଦ୍ଦେଶକ ଭାବେ ପଚିଶ ବର୍ଷରୁ ଅଧିକ କାମ କରିଥିଲେ । ଖ୍ରୀ: ୧୭୯୪ରେ କବି ସିଲରଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା ଓ ଏହା ବନିଷ୍ଠ ବନ୍ଧୁତାରେ ପରିଣତ ହୋଇଥିଲା । ସିଲରଙ୍କ ମୃତ୍ୟୁ (୧୮୦୫) ପର୍ଯ୍ୟନ୍ତ ଏହି ସମ୍ପର୍କ ଥିଲା ଅକ୍ଷୁଣ୍ଣ ଓ ମଧୁମୟ । ବିଗତ ସତର ବର୍ଷ ଧରି କ୍ରିଷ୍ଟିୟାନେ ଭୂଲ୍‌ପିଅସ୍‌ଙ୍କ ସହିତ ତାଙ୍କର ଯେଉଁ ସମ୍ବନ୍ଧ ଗଢ଼ିଉଠିଥିଲା ତାହା ଖ୍ରୀ: ୧୮୧୬ରେ ଅନୁଷ୍ଠିତ ଆନୁଷ୍ଠାନିକ ବିବାହ ଉତ୍ସବ ଦ୍ୱାରା ଆଇନାନୁମୋଦିତ ହୋଇଥିଲା; ତଥାପି ଗେଟେଙ୍କର ଅନ୍ତିମ ଜୀବନ ନିଃସଙ୍ଗ ଓ ବନ୍ଧୁହୀନ ଭାବରେ ଅତିବାହିତ ହୋଇଥିବା ଜଣାଯାଏ । ଅବଶ୍ୟ ସେତେବେଳକୁ ସେ ବିଶ୍ୱବିଖ୍ୟାତ ଓ ବହୁପ୍ରଶଂସିତ ହୋଇସାରିଥାନ୍ତି । ସମକାଳୀନ ଲେଖକମାନଙ୍କ ମଧ୍ୟରୁ କେହି ତାଙ୍କ ଭଳି ବିରାଟ ପ୍ରତିଭାସମ୍ପନ୍ନ ବ୍ୟକ୍ତି ସହ ବନ୍ଧୁ ହେବାକୁ ସାହସ କରିପାରୁ ନ ଥିଲେ ।

ସୃଜନଶୀଳତା ଦୃଷ୍ଟିରୁ ତାହାଙ୍କ ଜୀବନର ଶେଷ ତ୍ରିଶ ବର୍ଷ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଅଷ୍ଟାଦଶ ଶତକର ଶେଷ ଦଶକରେ ତାହାଙ୍କ

ରଚିତ ଏକ ଉପନ୍ୟାସ (Wilhelm meister's Apprenticeship) ପ୍ରକାଶ ପାଇଥିଲା । ଥିଏଟରର ଯେ ଶିକ୍ଷାପ୍ରଦ ଭୂମିକା ରହିଛି ଏହା ସେ ଏଥିରେ ଉତ୍ତମ ରୂପେ ଦର୍ଶାଇ ଅଛନ୍ତି । ପରବର୍ତ୍ତୀ କାଳରେ ତାହାଙ୍କ ରଚିତ ଉଇଲହେମ ମେଇଷ୍ଟରଙ୍କ ଭ୍ରମଣ ବର୍ଷଗୁଡ଼ିକରେ (୧୮୨୧-୨୯)ରେ ମଧ୍ୟ ସେଇ ବିଷୟ ହିଁ ପ୍ରତିପାଦିତ ହୋଇଅଛି । ଖ୍ରୀ: ୧୭୯୮ରେ ତାହାଙ୍କ ରଚିତ ଆଖ୍ୟାନମୂଳକ କାବ୍ୟ 'ହରମାନ ଓ ଡୋରୋଥିଏ' ପ୍ରକାଶ ପାଇଥିଲା । ଏହି ଚିତ୍ତାକର୍ଷକ ରଚନାଟି ଗ୍ରାମ୍ୟ ଜୀବନ ଓ ପ୍ରଣୟ ସମ୍ବଳିତ ଏକ ପ୍ରସଙ୍ଗକୁ ଉପଜୀବ୍ୟ କରି ରଚିତ ।

ଜୀବନର ଶେଷ କୋଡ଼ିଏ ବର୍ଷ ଗେଟେ ଆତ୍ମଚରିତ ରଚନାରେ ମନୋନିବେଶ କରିଥିଲେ । ଦୁଇଟି ପୁସ୍ତକ ରୂପେ ଏହା ପ୍ରକାଶିତ । ଏହାର ନାମ ଦିଆଯାଇଛି 'ମୋ ଜୀବନର କବିତା ଓ ସତ୍ୟ' (Di chtung and wahr heit—୧୮୧୧-୧୮୩୨) । ଖ୍ରୀ: ୧୮୧୯ ତାଙ୍କର ଏକ ଗୀତିକବିତା ସଙ୍କଳନ ପ୍ରକାଶ ପାଇଥିଲା । ଆଂଶିକ ଭାବେ ପର୍ସିଆନ କବିତା (ଦିବାନ) ଦ୍ୱାରା ଅନୁପ୍ରାଣିତ ହୋଇ ସେ ଏହି କବିତାଗୁଡ଼ିକ ରଚନା କରିଥିଲେ । ଗୀତିକବିତା ରଚୟିତା ଭାବେ ଗେଟେ ସର୍ବାଧିକ ଖ୍ୟାତିର ଅଧିକାରୀ । ତରୁଣ ବୟସରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ସେ ସାମୟିକ ଭାବେ ବହୁ ଗୀତିକବିତା ରଚନା କରି ଯାଇଛନ୍ତି । ମୃତ୍ୟୁର ଅଳ୍ପ ପୂର୍ବରୁ ରଚିତ ଫଷ୍ଟର ୨ୟ ଭାଗର ସର୍ବୋତ୍ତମ ଅଂଶ ଗୀତିକବିତା ଧର୍ମୀ ।

ମୃତ୍ୟୁର ବହୁପୂର୍ବରୁ ବିଶ୍ୱ ସାହିତ୍ୟର ମହାନ ସ୍ରଷ୍ଟା ଭାବେ ଗେଟେ ଜର୍ମାନୀ ଓ ତା ବାହାରେ ସୁପରିଚିତ ହୋଇସାରିଥିଲେ । ସ୍କଟ, କାର୍ଲାଇଲ ପ୍ରଭୃତି ବହୁ ବିଶିଷ୍ଟ ଲେଖକ ତାହାଙ୍କ ରଚନାକୁ ଇଂରାଜୀରେ ଅନୁବାଦ କରିଯାଇଅଛନ୍ତି । ଆଲୋଚକମାନେ ତାଙ୍କୁ ହୋମର, ଦାନ୍ତେ, ସେକ୍ସପିଅର ପ୍ରଭୃତି ମହାନ୍ କବିମାନଙ୍କ ସମପର୍ଯ୍ୟାୟର ଭୁକ୍ତ ଭାବେ ଗଣନା କରିଅଛନ୍ତି ।

ଛନ୍ଦୋବଦ୍ଧ ନାଟ୍ୟକୃତି 'ଫଷ୍ଟ' ଦୁଇ ଭାଗରେ ବିଭକ୍ତ । ଏକ ଶାଶ୍ୱତ ଉପାଦାନକୁ ଭିତ୍ତିକରି ଏହାର କଥାବସ୍ତୁ ପରିକଳ୍ପିତ । ଏହା

ହେଉଛି ଆପଣାର ଶାରୀରିକ ଅକ୍ଷମତାକୁ ଉତ୍ତୀର୍ଣ୍ଣ ହେବାଲାଗି ମଣିଷର ଅଭିଳାଷ ଏବଂ ସେଇ ଚିରନ୍ତନ ପ୍ରଶ୍ନ ଜଗତ ଓ ଜୀବନର ଅର୍ଥ କଣ ଓ ଏହାର ଅର୍ଥ ଅନ୍ୱେଷଣ ଲାଗି ମନୁଷ୍ୟର ପ୍ରଚେଷ୍ଟା । ଏହିପରି ଏକ ବିଶ୍ୱଜନୀନ ବିଷୟକୁ ଏହି କାବ୍ୟରେ ରୂପ ଦେବାରେ କବି ଯେଉଁ କଳା-କଳ୍ପନାର ବିପୁଳ ଐଶ୍ୱର୍ଯ୍ୟ ଦର୍ଶାଇଛନ୍ତି ତାହା ଅପୂର୍ବ ଓ ଅତୁଳନୀୟ । ଏହା ତାହାଙ୍କ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ବ୍ୟାପୀ ସାଧନାର ପରିଣତି ।

ଡକ୍ଟର ଯୋହାନ ବା ଜର୍ଜ ଫଷ୍ଟ (୧୭୭୧-୧୮୩୧) କୁହୁକ ବିଦ୍ୟାରେ ପାରଙ୍ଗମ ଓ ଜଣେ ଦୁଷ୍ଟ ଯାଦୁକର ଭାବେ ବିଖ୍ୟାତ । ଏଇ ଜ୍ଞାନ ପାଇଁ ସେ ଆପଣା ଆତ୍ମାକୁ ଡେଭିଲ (Devil) ବା ଅସୁର ଶକ୍ତି ନିକଟରେ ଉତ୍ସର୍ଗ କରି ଦେଇଥିଲେ । ନାଟକର ପୂର୍ବାଭାଷ କ୍ରମେ ଆଦିସ୍ରଷ୍ଟା ଭଗବାନ ଓ ଧ୍ୱଂସର ସ୍ରଷ୍ଟା ମେଫିଷ୍ଟୋଫେଲିସ ମଣିଷର ଭାଗ୍ୟ ଓ ଆତ୍ମା ବିଷୟରେ ଆଲୋଚନା କରୁଥିବା ବର୍ଣ୍ଣିତ ହୋଇଛି । ମେଫିଷ୍ଟୋଫେଲିସ ଦୃଢ଼ ଭାବରେ କହୁଛି "ମଣିଷ ଭଗବାନଙ୍କୁ ଆଶ୍ରା କରିବା ନିରର୍ଥକ, ସେ ମଣିଷକୁ ଆପଣା ମାର୍ଗରେ ସହଜରେ ଚଳାଇ ନେଇପାରିବ" । ଭଗବାନ କହୁଛନ୍ତି—"ଉଦ୍ୟମ କରିବା ସଙ୍ଗେ ସଙ୍ଗେ ଦୋଷତ୍ରୁଟି କରିବା ହେଉଛି ମଣିଷର ଧର୍ମ । ସେ ହେଉଛି ଏକ ଦିବ୍ୟଦୃଷ୍ଟି । ନାନା ପ୍ରଲୋଭନର ବଶବର୍ତ୍ତୀ ହେଲେ ବି ସେ ଚିରଦିନ ବିପଥଗାମୀ ହେବ ନାହିଁ । ସତ୍ୟ ପଥରେ ଯିବା ହିଁ ତାର ସ୍ୱଧର୍ମ" । ତଥାପି ପରୀକ୍ଷା ସ୍ୱରୂପ ମଣିଷକୁ ତା ନିଜ ବାଟରେ ପରିଚାଳିତ କରାଇବା ଲାଗି ସେ ମେଫିଷ୍ଟୋ ଫେଲିସକୁ ଅନୁମତି ଦେଲେ ।

ଜାଗତିକ ଲୀଳାରେ ମେଫିଷ୍ଟୋ ଯେ ଭଗବାନଙ୍କର ସେବକ ସ୍ୱରୂପ ଏକଥା ସିଏ ଭୁଲିଗଲା । ମଣିଷ ଯେତେଦିନ ପର୍ଯ୍ୟନ୍ତ କର୍ମରତ, ଉଦ୍ୟମଶୀଳ, ସେ ପର୍ଯ୍ୟନ୍ତ ତାର ଆତ୍ମାକୁ ମେଫିଷ୍ଟୋ ପକ୍ଷେ କବଳିତ କରିବା ସମ୍ଭବ ନୁହେଁ । ଯାହାହେଉ ଫଷ୍ଟ ଓ ମେଫିଷ୍ଟୋ ମଧ୍ୟରେ ଚୁକ୍ତି ହେଲା । ଫଷ୍ଟର ସବୁ ଅଭିଳାଷକୁ ମେଫିଷ୍ଟୋ ପରିପୂର୍ଣ୍ଣ କରିଦେଲା ପରେ ସେ ଯଦି କହେ "ହେ ସଫଳ ମୁହୂର୍ତ୍ତ, ତୁମେ ସୁନ୍ଦର; ଏତେ ଶୀଘ୍ର ମୋଠାରୁ ବିଦାୟ ନ ନେଇ ଆଉ ଟିକିଏ ରହିଯାଅ" ତାହେଲେ

ମେଫିଷ୍ଟୋର ଜୟ ହେବ । ସେ ହେବ ଫଷ୍ଟ ଆତ୍ମାର ପ୍ରଭୁ । ମାତ୍ର ମଣିଷର ସ୍ୱଭାବ, ସେ କଦାପି ସନ୍ତୁଷ୍ଟ ହୁଏନା ଓ ସର୍ବଦା ଉଦ୍ୟମ ପରେ ଉଦ୍ୟମ କରି ଚାଲିଥାଏ । ଗେଟେ ଏଇ ବିଷୟରେ ହିଁ ଗୁରୁତ୍ୱ ଦେଇଛନ୍ତି । ଫଷ୍ଟ ଜଣାଇ ଦେଇଛି, ସେ କେବଳ ସୁଖ ବା ଅରୂପ ଜ୍ଞାନ ଅନ୍ୱେଷଣ କରୁନି; ସେ ଚାହେଁ ମାନବର ସମଗ୍ର ଅଭିଜ୍ଞତା ଉପଲବ୍ଧି ।

କାବ୍ୟର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଫଷ୍ଟରଙ୍କ ଦୀର୍ଘ ଯାତ୍ରାପଥ ହୋଇଛି ଅତୀବ ବନ୍ଧୁର ଓ କୁଟିଳ; ହେଲେ ଆପଣାର ଉଦ୍ୟମ ଯୋଗୁ ହିଁ ସେ ଜୟଯୁକ୍ତ ହୋଇଛନ୍ତି । ତରୁଣୀ ଗ୍ରିଚେନ ସହ ତାଙ୍କର ସମ୍ପର୍କ ତାଙ୍କର ଯାତ୍ରାପଥରେ ଆଣିଛି ଏକ ବିରାଟ ପରିବର୍ତ୍ତନ । ମେଫିଷ୍ଟୋ କୌଶଳ ଯୋଗୁ ହିଁ ଫଷ୍ଟ ଓ ଗ୍ରିଚେନଙ୍କ ମଧ୍ୟରେ ସମ୍ପର୍କ ସ୍ଥାପିତ ହୋଇଛି । ଗ୍ରିଚେନ ସହ ପ୍ରଣୟରେ ଆସକ୍ତ ହୋଇ ଫଷ୍ଟ ଲାଭ କରିଛି ଦୈହିକ ସୁଖାନୁଭୂତି । ତାହାର ଏଣୁ କାମବାସନା ଉଦ୍ଦୀପିତ ହୋଇଛି । ମାତ୍ର ସଙ୍ଗେ ସଙ୍ଗେ ଗ୍ରିଚେନର ଆତ୍ମୋତ୍ସର୍ଗ ପ୍ରବଣତା ଓ ମଧୁର ପ୍ରଣୟ ଯୋଗୁ ସେ ହୋଇଛି ଲଜ୍ଜିତ, ବିବ୍ରତ ଓ କିଂକର୍ତ୍ତବ୍ୟବିମୂଢ଼ ।

ମେଫିଷ୍ଟୋର ପ୍ରଲୋଭନରେ ପଡ଼ି ଫଷ୍ଟ ଗ୍ରିଚେନକୁ ପରିତ୍ୟାଗ କରି ଚାଲିଯାଇଛି । ମେଫିଷ୍ଟୋ ଭାବିଥିଲା, ଗ୍ରିଚେନର ମୁକ୍ତିପ୍ରଦ ପ୍ରଣୟ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଯିବ । ମାତ୍ର ଫଷ୍ଟର ଅନ୍ତର୍ନିହିତ ସଦ୍‌ଗୁଣ ଓ ପାପ-ପୁଣ୍ୟବୋଧ ତାହାକୁ ବିଳମ୍ବରେ ହେଲେହେଁ ଗ୍ରିଚେନ ପ୍ରତି ସମ୍ବେଦନଶୀଳ କରାଇଛି । ଆପଣାର ପାପ ଲାଗି ଗ୍ରିଚେନ ବେଦନା ପୀଡ଼ିତ ହୋଇଛି ଓ ଫଷ୍ଟ ଗ୍ରିଚେନର ଦୁର୍ଦ୍ଦଶା କ୍ଷେତ୍ରରେ ଆପଣାର ଭୂମିକାକୁ କଳନା କରି ନିଜ ଅପରାଧ ବିଷୟରେ ଅବହିତ ହୋଇ-ପାରିଛି । ଏହା ପରଠାରୁ ଫଷ୍ଟ ଓ ମେଫିଷ୍ଟୋଙ୍କ ସମ୍ପର୍କ ଏକ ସଂଘର୍ଷର ରୂପ ନେଇଛି । ଫଷ୍ଟରର ସମସ୍ତ ଅଭିଳାଷକୁ ପୂରଣ କରିବାକୁ ମେଫିଷ୍ଟୋ ବାଧ୍ୟ ହୋଇଛି । ମେଫିଷ୍ଟୋ ହୋଇଛି ପରାଜିତ—ଫଷ୍ଟକୁ ପ୍ରଲୋଭିତ କରିବାରେ ସେ ହୋଇଛି ବ୍ୟର୍ଥକାମ । ମେଫିଷ୍ଟୋର ବ୍ୟଙ୍ଗ ବିଦ୍ରୂପରେ ଫଷ୍ଟ ହୋଇଛି ଅବିଚଳିତ । ଦୈହିକ ଭୋଗ ଲାଳସା, ଭୌତିକ ପ୍ରଲୋଭନ ତୃପ୍ତିହୀନ ହେଲେହେଁ ତାହା ଆଉ ଫଷ୍ଟକୁ ଆକୃଷ୍ଟ କରିପାରି ନାହିଁ ।

ପରିଶେଷରେ ଦେବଦୂତମାନେ ଫଷ୍ଟର ଦେହକୁ ସ୍ୱର୍ଗକୁ ନେବା ବେଳେ ଗୀତ ଗାଇ ଚାଲିଛନ୍ତି—"ଏଇ ପବିତ୍ର-ଆତ୍ମା ଅସୁର ଶକ୍ତି କବଳରୁ ମୁକ୍ତି ପାଇଛି ଯିଏ ଦୃଢ଼ତାର ସହିତ ଉଦ୍ୟମ କରିଯାଏ ଆମେ ତାକୁ ଦେଉ ମୁକ୍ତି"।

ଫଷ୍ଟ କାବ୍ୟର ଦ୍ୱିତୀୟ ଭାଗରେ ଫଷ୍ଟର କାମନା ବାସନାକୁ କିପରି ମେଫିଷ୍ଟୋ ଅବଧାରଣା କରିପାରି ନାହିଁ ତାହା ବର୍ଣ୍ଣନା କରାଯାଇଛି। ମେଫିଷ୍ଟୋ ପାର୍ଥିବ ବିଷୟ ସହ ସର୍ବଦା ସମ୍ପୃକ୍ତ ଥିବା ଯୋଗୁ ଏବଂ ଧ୍ୱଂସରେ ଆସକ୍ତ ହୋଇଥିବା ଯୋଗୁ ଫଷ୍ଟର ବୌଦ୍ଧିକ ବିଷୟ ଓ ସୌନ୍ଦର୍ଯ୍ୟାନୁରାଗକୁ ଅବଧାରଣ କରିବାକୁ ହୋଇଛି ଅସମର୍ଥ। ଫଷ୍ଟ ରୂପବତୀ ହେଲେନା ପ୍ରତି ଆକୃଷ୍ଟ ହୋଇଛି। ହେଲେନା ହେଉଛି ଆଦର୍ଶ କ୍ଳାସିକ ସୌନ୍ଦର୍ଯ୍ୟର ପ୍ରତୀକ। ପକ୍ଷାନ୍ତରରେ ଫଷ୍ଟ ହେଉଛି ମଧ୍ୟଯୁଗୀୟ ରୋମାଣ୍ଟିକ ଚେତନାର ପ୍ରତୀକ। ହେଲେନା ପ୍ରସଙ୍ଗ ମାଧ୍ୟମରେ କବି ଗ୍ରୀକ୍ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ସମଗ୍ର ମାନବ ଜାତିର ଇତିହାସ, ଫଷ୍ଟଙ୍କୁ ଏହା ସହ ସମ୍ପୃକ୍ତ କରିଅଛନ୍ତି।

ଫଷ୍ଟ ତଥାପି ଅସନ୍ତୁଷ୍ଟ। ଏହାଠାରୁ ଆଉ ଏକ ମହତ୍ତର ଆଦର୍ଶ ଅନ୍ୱେଷଣ ପାଇଁ ସେ ସଚେଷ୍ଟ। ଏହା ହିଁ ତାହାର ଅତୃପ୍ତିର ହେତୁ। ୧୦୦ ବର୍ଷ ବୟସରେ, ଦୁଶ୍ଚିନ୍ତା ଓ ନାନା ଝଞ୍ଜାଳର ଘାତ ପ୍ରତିଘାତ ଯୋଗୁ ସେ ଶେଷକୁ ଏକ ନୂତନ ଅବସ୍ଥାରେ ଉପନୀତ ହୋଇଛି। ସେତେବେଳେ ସେ ହୋଇପାରିଛି ଶକ୍ତିର ଅଧିକାରୀ, ଭୂମି ଓ ଜନସାଧାରଣଙ୍କୁ ସେ ନିୟନ୍ତ୍ରଣ କରି ଚାଲିଛି। ପ୍ରଥମ କରି ସେ ନିଜକୁ କର୍ମରତ ମଣିଷ ଭାବେ ଦେଖିବାର ସୁଯୋଗ ପାଇଛି। ଏକ ବିରାଟ ବିସ୍ତୀର୍ଣ୍ଣ ଭୂଖଣ୍ଡକୁ ବ୍ୟବହାର ଉପଯୋଗୀ କରାଇବାରେ ବସ୍ତୁଭାବରେ ସଫଳତା ଅର୍ଜନ କରି ସେ ବୁଝିପାରିଛି ଏହା ଅସଂଖ୍ୟ ଜନସାଧାରଣଙ୍କୁ ବାସଗୃହ ଓ ବଞ୍ଚିବାର ଉପକରଣ ଯୋଗାଇ ଦେବାକୁ ସମର୍ଥ ହେବ। ଏଣୁ ସେ ଭବିଷ୍ୟତର ଏହି କାମର ସାଫଲ୍ୟକୁ ଅନୁମାନ କରି ଭାବୁଛି, ସେ ବୋଧହୁଏ ସେତେବେଳେ କହିବ "ହେ ସମୟ ତୁମେ ଅପେକ୍ଷା କର, ତୁମେ ଚାଲିଯାଅନା—ତୁମେ ଅତି ସୁନ୍ଦର" ମାତ୍ର ସେ କଥା କହିପାରିନି। ସ୍ୱାଭାବିକ ଭାବରେ ତାର ମୃତ୍ୟୁ ହୋଇଛି। ମେଫିଷ୍ଟୋ ନିରାଶ ହୋଇଛି।

ଫଷ୍ଟର ନିରବଚ୍ଛିନ୍ନ ଉଦ୍ୟମପ୍ରବଣତା ଯୋଗୁ ଉଦ୍ଧାର ପାଇଯାଇଛୁ । ଦେବଦୂତମାନେ, ଅସୁର ଶକ୍ତି କବଳରୁ ତାର ଅବିନଶ୍ୱର ଆତ୍ମାକୁ ଉଦ୍ଧାର କରିନେବାକୁ ଓ ତାକୁ ସ୍ୱର୍ଗକୁ ନେଇ ଯାଇଛନ୍ତି ।

ଏହି ମହାନ କାବ୍ୟକ ନାଟକଟି ଗୀତିକାବ୍ୟର ଉପାଦାନରେ ଓ ବିବିଧ ଛନ୍ଦ ବୈଚିତ୍ର୍ୟରେ ମଧ୍ୟ ସମୃଦ୍ଧ । ଏଣୁ ଏହାର ବହୁ ଅଂଶ ଅଭିନୟ ଉପଯୋଗୀ ନୁହେଁ । ମନୁଷ୍ୟର ବୌଦ୍ଧିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ବିମ-ବିକାଶର ଇତିବୃତ୍ତକୁ ଏଥିରେ ଅତୀବ ଦକ୍ଷତାର ସହିତ ରୂପାୟିତ କରାଯାଇଅଛି । ଏହି ଦୃଷ୍ଟିରୁ ଫଷ୍ଟ ଏକ ଅଦ୍ୱିତୀୟ ଓ ଅତୁଳନୀୟ ସୃଷ୍ଟି ।

'ଯିଏ ଉଦ୍ୟମରତ ଓ କର୍ମପ୍ରବଣ ସେ କଦାପି ହାରିଏ ନାହିଁ'— ଏହାହିଁ ଗେଟେଙ୍କ ଏହି ମହାନ୍ କାବ୍ୟର ମର୍ମବାଣୀ ।



# ବାଲ୍‌ଜାକ

ଊନବିଂଶ ଶତାବ୍ଦୀର ଫରାସୀ ସାହିତ୍ୟର ଉଜ୍ଜ୍ୱଳତମ ଜ୍ୟୋତିଷ୍କ ଭାବେ ବାଲଜାକ ସୁପ୍ରସିଦ୍ଧ ହେଲେହେଁ ତାଙ୍କର ପରିଚୟ ଦେଶ କାଳରେ ସୀମିତ ହେବାର ବିଷୟ ନୁହେଁ । ପୃଥିବୀର ଶ୍ରେଷ୍ଠ ଔପନ୍ୟାସିକ ଓ କଥାକାର ଭାବେ ସେ ସ୍ୱୀକୃତ ଓ ସମ୍ମାନିତ । ଏ ଯୁଗର ଖ୍ୟାତନାମା ଔପନ୍ୟାସିକ ସମର ସେଟ୍ ମମ୍ ତାଙ୍କର 'Grert novelist and their novels' ପୁସ୍ତକରେ ବାଲ୍‌ଯାକ୍‌ଙ୍କ ମହତ୍ତ୍ୱ ଆଲୋଚନା ପ୍ରସଙ୍ଗରେ ଲେଖିଛନ୍ତି—'I think Balzac is the greatest novelist the world has ever known; but I think Tolstoy's 'War and peace' is the greatest novel" ବାସ୍ତବିକ୍ ବାଲଜାକଙ୍କ ରଚନାର ବିପୁଳତା, ଚରିତ୍ର ସମଷ୍ଟିର ଅଜସ୍ରତା ଓ ସଜୀବତା ଏବଂ ପରିକଳ୍ପନାର ବୈଚିତ୍ର୍ୟ ବିଷୟ ଅନୁଧ୍ୟାନ କଲେ ଏହି ଉକ୍ତିର ଯଥାର୍ଥ୍ୟତା ହୃଦୟଙ୍ଗମ କରିହୁଏ ।

ବାଲଜାକ୍ ଥିଲେ ନେପୋଲିଅନଙ୍କ ଉପାସକ । ତରୁଣ ବୟସରେ ସେ ନେପୋଲିଅନଙ୍କର ଏକ ଆବକ୍ଷ ମୂର୍ତ୍ତି ନିଜର ପ୍ରକୋଷ୍ଠରେ ସ୍ଥାପନ କରି ତା'ର ନିମ୍ନାଂଶରେ ନିମ୍ନୋକ୍ତ ଉକ୍ତିଟି ଖୋଦିତ କରିଥିଲେ—'What Napoleon could not achieve with his sword, I shall accomplish with my pen" ଏହାର ବହୁବର୍ଷ ପରେ ୧୪୦ ଖଣ୍ଡରେ ପରିକଳ୍ପିତ ତାଙ୍କର ସୁପ୍ରସିଦ୍ଧ ଧାରାବାହିକ ଉପନ୍ୟାସ

"Comedia Hmaine" ରଚିତ ହେଲା । ବହୁସଂଖ୍ୟକ ପ୍ରବନ୍ଧ, କ୍ଷୁଦ୍ରଗଳ୍ପ, ନାଟକ ବ୍ୟତୀତ ସେ ୯୦ଖଣ୍ଡ ଉପନ୍ୟାସ ରଚନା କରି ଯାଇଛନ୍ତି । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଉଚ୍ଚକୋଟୀର । ଏହି ସମସ୍ତ କଥା ସାହିତ୍ୟର ରଚୟିତା ଭାବେ ସେ ବିଶ୍ୱର କଥା ସାହିତ୍ୟ କ୍ଷେତ୍ରରେ ବସ୍ତୁତଃ ଏକ ସାମ୍ରାଜ୍ୟର ପ୍ରତିଷ୍ଠାତା ସ୍ୱରୂପ । ସ୍ୱଳ୍ପକାଳ ସ୍ଥାୟୀ, ନେପୋଲିଅନ୍‌ଙ୍କ ସାମ୍ରାଜ୍ୟ ବିଧ୍ୱସ୍ତ ହୋଇ ଯାଇଛି; ମାତ୍ର ବାଲଜାକଙ୍କ ସାମ୍ରାଜ୍ୟ ଏ ଯାବତ୍ ଅପ୍ରତିହତ, ସୁଦୃଢ ଓ ସର୍ବତୋଭାବେ ଅନବଦ୍ୟ ହୋଇ ରହିଅଛି ।

ବାଲ୍‌ଜାକଙ୍କ ଜୀବନକାଳ, ଅର୍ଥାତ୍ ୧୮ଶ ଶତାବ୍ଦୀର ଶେଷଭାଗରୁ ୧୯ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସମୟଟି ପାଶ୍ଚାତ୍ୟ ସାହିତ୍ୟ ଜଗତରେ ରୋମାଣ୍ଟିକ୍ 'ରିଭାଇଭାଲ'ର ଯୁଗ ଭାବେ ପରିଚିତ । ଏହି ସମୟରେ ସାହିତ୍ୟର ବିବିଧ ବିଭାବରେ ରୋମାଣ୍ଟିକ୍ ଭାବଧାରାର ବ୍ୟାପକ ପ୍ରଭାବ ପରିଲକ୍ଷିତ ହୁଏ । ମଧ୍ୟଯୁଗର କଥା, କିମ୍ବଦନ୍ତୀ ଓ ଗାର୍ଥାଭିତ୍ତିକ ତଥା ଐଶ୍ୱର୍ଯ୍ୟ ସମୃଦ୍ଧ ଐତିହାସିକ ବିଷୟବସ୍ତୁ, ପ୍ରେମ ଲାଗି ଦୁଃସାହସିକତା, ଭୀତି ଓ ବିସ୍ମୟୋତ୍ପାଦକ କାହାଣୀ, ରୋମାଞ୍ଚକର ଅଭିଯାନ, କାଳ୍ପନିକ, କମ୍ଭୂତକିମାକାର କାହାଣୀ ପ୍ରଭୃତି ଏ ଯୁଗର ସାହିତ୍ୟର ବୈଶିଷ୍ଟ୍ୟ । ବାଲଜାକ୍‌ଙ୍କ କଥା ସାହିତ୍ୟରୁ ମଧ୍ୟ ଆମ୍ଭେମାନେ ଏହାର ପୂର୍ଣ୍ଣ ପରିଚୟ ପାଇଥାଉ । ଫ୍ରାନ୍‌ସର ବିପ୍ଳବୀ ସାହିତ୍ୟିକ ରୁଷୋଙ୍କ ମତବାଦ ଓ ରଚନାବଳୀ ୧୯ଶ ଶତାବ୍ଦୀର ରୋମାଣ୍ଟିକ ଭାବଧାରାର ଜନକ ସ୍ୱରୂପ । ଏହାପରେ ବାଲ୍‌ଜାକ, ଆଲେକଜାଣ୍ଡାର, ଭିକ୍ଟର ହ୍ୟୁଗୋ ପ୍ରଭୃତି ଫରାସୀ ସାହିତ୍ୟିକମାନଙ୍କ ରଚନାବଳୀରେ ଏହି ଭାବଧାରା ବଳିଷ୍ଠ ଭାବେ ଆତ୍ମପ୍ରକାଶ କରିଥିଲା ।

ବାଲଜାକ୍‌ଙ୍କ ସମୟରେ ଫ୍ରାନ୍‌ସର ନାଗରିକମାନେ ନୂତନ ଗଣ ତନ୍ତ୍ର ପ୍ରତିଷ୍ଠା କରିଥାନ୍ତି । ଫ୍ରାନ୍‌ସର ଶିଳ୍ପ, ବାଣିଜ୍ୟ ସେତେବେଳେ ଦ୍ରୁତ ଗତିରେ ବିକଶିତ ହେଉଥାଏ । ଦେଶର ଧନିକ, ବଣିକ ଏବଂ ଶିଳ୍ପ ଉତ୍ପାଦନକାରୀମାନେ ସମାଜରେ ପ୍ରଭୂତ ପ୍ରତିଷ୍ଠା ଓ ସମ୍ମାନ ଲାଭ କରୁଥାନ୍ତି । ବାଲଜାକ୍ ମଧ୍ୟ ଏଥିରେ ପ୍ରଲୁବ୍ଧ ହୋଇ ଯାଇଥିଲେ । ଯଶ, ସୌଭାଗ୍ୟ ଓ ଅର୍ଥଲାଭର ଦୁର୍ବାର ଆକାଙ୍‌କ୍ଷାର

ବଶବର୍ତ୍ତୀ ହୋଇ ସେ ଅସଂଖ୍ୟ ପୁସ୍ତକ ରଚନା ଓ ତାହାର ପ୍ରକାଶନ ବିଷୟରେ ଆତ୍ମନିୟୋଗ କଲେ । କିନ୍ତୁ ବାଲଜାକ୍‌ଙ୍କ ଏହି ଉଦ୍ୟମ ସଫଳ ହୋଇପାରି ନଥିଲା । ପରନ୍ତୁ ଅସଂଯମ ଓ ଅମିତବ୍ୟୟିତା ଯୋଗୁ ସେ ସର୍ବଦା ଋଣଦାୟଗ୍ରସ୍ତ ହୋଇ ପଡ଼ିଥିଲେ । ଅର୍ଥ ଯେ ସଂସାରର ପରମାର୍ଥ, ପରମ ପ୍ରୟୋଜନ ମନୁଷ୍ୟର ପ୍ରତ୍ୟେକ ଉଦ୍ୟମର ଉଦ୍ଦୀପକ ଏହି ଦୃଢ଼ ବିଶ୍ୱାସ ତାଙ୍କର କେବେହେଲେ ଶିଥିଳ ହୋଇ ନଥିଲା । ଦୀର୍ଘ ୨୫ବର୍ଷ ଧରି ଦୈନିକ ୧୪ ଘଣ୍ଟାରୁ ୧୮ ଘଣ୍ଟା ପର୍ଯ୍ୟନ୍ତ ଅକ୍ଲାନ୍ତ ପରିଶ୍ରମ କରି ସେ ଅସଂଖ୍ୟ ଗଳ୍ପ ଓ ଉପନ୍ୟାସ ପରେ ଉପନ୍ୟାସ ଲେଖି ଚାଲିଲେ ।

ଏହି ଅମର କଥାକାରଙ୍କ ସୃଷ୍ଟି ସମ୍ଭାର ଭଳି ତାଙ୍କର ଜୀବନ ମଧ୍ୟ ବିଚିତ୍ର, ଘଟଣା ବହୁଳ ଓ ରୋମାଞ୍ଚକର । ଫ୍ରାନ୍‌ସର ଟୁରସ୍ ସହରରେ ୧୭୯୯ ଖ୍ରୀଷ୍ଟାବ୍ଦରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଥିଲେ ଜଣେ ସାମାନ୍ୟ ଆଟର୍ଣ୍ଣି । ଟୁରସ୍ ଓ ଭେଣ୍ଡୋମ୍‌ରେ କିଛିଦିନ ଅଧ୍ୟୟନ କଲାପରେ ସେ ପ୍ୟାରିର ଜଣେକ ଆଇନଜୀବୀଙ୍କ ଅଧୀନରେ କାର୍ଯ୍ୟ କରି ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ମାତ୍ର ଆଇନଜୀବୀ ହେବା ପରିବର୍ତ୍ତେ ସେ ସାହିତ୍ୟ ସାଧନାରେ ପୂର୍ଣ୍ଣ ଆତ୍ମନିୟୋଗ କଲେ । ଏଥିପାଇଁ ପରିବାରବର୍ଗଙ୍କ ସମସ୍ତ ବିରୋଧକୁ ମଧ୍ୟ ସେ ଭ୍ରୂକ୍ଷେପ କରି ନଥିଲେ । ସେ ସମୟର ଜନପ୍ରିୟ ଔପନ୍ୟାସିକ ସ୍କଟ୍‌ଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଛଦ୍ମ ନାମରେ ସର୍ବାଦୌ ସେ କେତେକ ଉପନ୍ୟାସ ରଚନା କରିଥିଲେ । ମାତ୍ର ସେଗୁଡ଼ିକ ବିଶେଷ ଆଦୃତ ହୋଇପାରି ନ ଥିଲା ।

ଏହି ସମୟରେ ମ୍ୟାଡ଼ାମ୍ ଡ଼ି ବର୍ଣ୍ଣେ ନାମକ ଜଣୈକା ବର୍ଷିୟସୀ ପ୍ରତିବେଶିନୀଙ୍କ ସଙ୍ଗେ ତାଙ୍କର ଘନିଷ୍ଠ ସମ୍ପର୍କ ସ୍ଥାପିତ ହୋଇଥିଲା । ଏହା ଏକ ବିଚିତ୍ର ସମ୍ପର୍କ । ମ୍ୟାଡାମ୍ ଥିଲେ ବାଲଜାକ୍‌ଙ୍କର ଏକାଧାରରେ ପ୍ରିୟ ବାନ୍ଧବୀ, ପ୍ରଣୟିନୀ ଓ ଶାସନକାରିଣୀ । ବାଲ୍‌ଜାକଙ୍କୁ ସେ ସାହାଯ୍ୟ, ସହଯୋଗ, ଉପଦେଶ ଓ ସ୍ନେହ ଦ୍ୱାରା ବଶୀଭୂତ କରି ନେଇଥିଲେ । ସମସ୍ତ ଅପବାଦ ସତ୍ତ୍ୱେ ମ୍ୟାଡ଼ାମ୍‌ଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଦୀର୍ଘ ୧୪ ବର୍ଷ ସେମାନଙ୍କ ସମ୍ପର୍କ ଅତୁଟ ରହିଥିଲା ।

୧୮୨୯ରେ ସେ ତାଙ୍କର ସ୍ୱନାମାଙ୍କିତ ଉଲ୍ଲେଖଯୋଗ୍ୟ ପ୍ରଥମ ରଚନା ଲେ ସ୍ୱୋଆଁ (Les chouans) ପ୍ରକାଶିତ ହୋଇଥିଲା ।

ସେତେବେଳେ ତାଙ୍କୁ ତିରିଶ ବର୍ଷ । ଏହାପରେ ଦୀର୍ଘ ୨୧ ବର୍ଷ ଅର୍ଥାତ୍ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେ ଯେପରି ଅକ୍ଲାନ୍ତ ଓ ଅବିଶ୍ରାନ୍ତ ଭାବେ ଗଳ୍ପ ଉପନ୍ୟାସ ପ୍ରଭୃତି ରଚନା କରିବାରେ ଓ ପତ୍ରିକା ସମ୍ପାଦନ କରିବାରେ ପୂର୍ଣ୍ଣ ଆତ୍ମନିୟୋଗ କରିଥିଲେ ତାହା ବିସ୍ମୟକର । ନିରୁପଦ୍ରବରେ ଲେଖାଲେଖି କରିବା ଲାଗି ଦିନ ଅପେକ୍ଷା ରାତିକୁ ହିଁ ସେ ପ୍ରକୃଷ୍ଟ ସମୟ ମନେ କରୁଥିଲେ । ସାନ୍ଧ୍ୟ ଭୋଜନ ସାରି ସେ ଶୋଇପଡ଼ନ୍ତି । ତା'ପରେ ଗଭୀର ନିଶୀଥରେ ନିଦରୁ ଉଠି ଏକ ଶୁଭ୍ର ପୋଷାକ ପରିଧାନ କରି କପ୍ ପରେ କପ୍ କଳା କଫି ପାନ କରୁ କରୁ ମହମବତୀର ଆଲୋକରେ ପର କଲମରେ ପୃଷ୍ଠା ପରେ ପୃଷ୍ଠା ପ୍ରାୟ ପ୍ରତ୍ୟୁଷ ପର୍ଯ୍ୟନ୍ତ ସେ ଲେଖି ଚାଲନ୍ତି । ତା'ପରେ ସକାଳୁ ପ୍ରକାଶକ ଓ ପ୍ରୁଫ୍-ରିଡ଼ରଙ୍କ ସହିତ ତାଙ୍କର କାମ ଆରମ୍ଭ ହୋଇଯାଏ । ଏହିପରି ରାତି ଓ ଦିନସାରା ଲେଖାଲେଖି କରିବାରେ ହିଁ ତାଙ୍କର ସମସ୍ତ ସମୟ ଅତିବାହିତ ହେଉଥିଲା ।

ସାରା ଜୀବନ ସେ ଅମିତବ୍ୟୟିତା ଓ ଶିଳ୍ପୀ ସୁଲଭ ଖିଆଲି ସ୍ୱଭାବ ଯୋଗୁଁ ନାନା ଦୁଃଖ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଛନ୍ତି । ପୁସ୍ତକ ଲେଖି ଦେବାକୁ ଚୁକ୍ତିବଦ୍ଧ ହୋଇ ପ୍ରକାଶକଙ୍କଠାରୁ ଅଗ୍ରୀମ ଅର୍ଥ ପାଇବା ମାତ୍ରେ ସେ ତାହାକୁ ନାନା ପ୍ରକାର ସୌଖୀନ ଜିନିଷ କିଣିବାରେ ଖର୍ଚ୍ଚ କରି ଦେଉଥିଲେ । ଅଭାବ ଥିଲା ତାଙ୍କର ଚିର ସହଚର । ସେଥିପାଇଁ ସେ କରଜ କରୁଥିଲେ କିମ୍ବା ବନ୍ଧୁମାନଙ୍କଠାରୁ ଧାର୍ କରୁଥିଲେ । ମାତ୍ର ଧାର୍ ପରିଶୋଧ କରିବା ବିଷୟରେ ସେ ଆଦୌ ମନୋଯୋଗୀ ହେଉ ନ ଥିଲେ ବା ସେଥିପାଇଁ ତାଙ୍କ ମନରେ କୌଣସି କ୍ଷୋଭ ବା ସଙ୍କୋଚ ଜାତ ହେଉ ନ ଥିଲା । ଧାର୍, କରଜ ଶୁଝି ନ ପାରିବାରୁ ତାଙ୍କୁ ବହୁ ଉପକରଣ ହରାଇବାକୁ ପଡୁଥିଲା ଅଥବା ଲଜ୍ଜିତ ଓ ଅପମାନିତ ହେବାକୁ ପଡୁଥିଲା, ମାତ୍ର ମୃତ୍ୟୁ ପର୍ଯ୍ୟନ୍ତ ସେ କୌଣସିମତେ ନିଜ ଚରିତ୍ରକୁ ବଦଳାଇ ପାରି ନ ଥିଲେ ।

ସାଧାରଣ ନୈତିକତାର ମାନଦଣ୍ଡରୁ ବିଚାର କଲେ ବାଲ୍‌ଜାକଙ୍କୁ ଘୋର ସ୍ୱାର୍ଥପର, ଅସାଧୁ ଓ ନୀତିହୀନ ବ୍ୟକ୍ତି କୁହାଯାଇପାରେ । ମାତ୍ର ପ୍ରତିଭାକୁ ସାଧାରଣ ନୈତିକ ମାନଦଣ୍ଡରୁ ବିଚାର କରିବା ଠିକ୍ ନୁହେଁ । ଚପଳ, ଆଶାବାଦୀ ଓ ଆପଣାର ପ୍ରତିଭା ବିଷୟରେ ସଚେତନ ଥିବା

ଯୋଗୁଁ ନିଜ ରଚନାବଳୀରୁ ପ୍ରଭୂତ ଅର୍ଥଲାଭ କରିପାରିବେ ବୋଲି ତାଙ୍କର ଦୃଢ଼ ପ୍ରତ୍ୟୟ ଜନ୍ମିଥିଲା । ମାତ୍ର ଗୋଟିଏ ବହି ଲେଖି ନ ସାରୁଣୁ ତାଙ୍କୁ ଅଧିକ ଋଣ ଭାରରେ ଜଡ଼ିତ ହେବାକୁ ପଡ଼ୁଥିଲା । ସମାଜରେ ନିଜକୁ ପ୍ରଦର୍ଶିତ କରାଇବା ଲାଗି ସେ ଖୁବ୍ ଅନୁରାଗୀ ଥିଲେ । ସେଥିପାଇଁ ତଥା ନିଜକୁ ଦାୟ ମୁକ୍ତ କରିବା ଲାଗି ତାଙ୍କୁ ଭୂତ ଭଳି ପରିଶ୍ରମ କରିବାକୁ ପଡ଼ୁଥିଲା । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ, ଋଣମୁକ୍ତ ହେବାର ଗୁରୁତ୍ୱପ୍ରଦ୍ଧିଁ ତାଙ୍କୁ ଲେଖାଲେଖି କରିବାରେ ଅଧିକ ମନଯୋଗୀ କରି ପାରୁଥିଲା । ଏହିପରି ପରିସ୍ଥିତିରେ ହିଁ ରଚିତ ହୋଇଛି ତାଙ୍କର ସର୍ବୋତ୍କୃଷ୍ଟ ରଚନାବଳୀ, ମାତ୍ର ଯେଉଁ ସମୟରେ ଦୈବାତ୍ ତାଙ୍କର ଅବସ୍ଥା ଟିକିଏ ନିରୁପଦ୍ରବ ଓ ସ୍ୱଚ୍ଛନ୍ଦ ହୋଇଥାଏ, ପାଉଣାଦାରମାନେ ଯେତେବେଳେ ତାଙ୍କୁ ଦୟାକରି ଶାନ୍ତିରେ ରହିବାକୁ ଦେଇଥାନ୍ତି, ଚୁକ୍ତିଭଙ୍ଗ ଲାଗି ପ୍ରକାଶକ ଓ ସମ୍ପାଦକମାନେ ତାଙ୍କ ବିରୁଦ୍ଧରେ ଅଭିଯୋଗ କରି ନ ଥାନ୍ତି, ସେ ସମୟରେ ତାଙ୍କର ସମସ୍ତ ସୃଜନୀଶକ୍ତି ଅପସୃତ ହୋଇଯାଏ ।

ଆପଣାର ପ୍ରାଣାଚୂର୍ଯ୍ୟ, ରସିକତା ଓ ସାହିତ୍ୟିକ ଖ୍ୟାତି ଯୋଗୁଁ ବାଲ୍‌ଜାକ୍ ଜୀବନରେ ବହୁ ବିଶିଷ୍ଟ ନାରୀଙ୍କ ସାହଚର୍ଯ୍ୟ ଓ ବନ୍ଧୁତ୍ୱ ଲାଭ କରିଥିଲେ । ଏହିପରି ଭାବେ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ଜଣେ ସମ୍ଭ୍ରାନ୍ତ ଭଦ୍ରଲୋକଙ୍କ କନ୍ୟା, ମାକୁଇସ୍-ଡ଼-କାଷ୍ଟ୍ରିଜ୍ । କିନ୍ତୁ ଏହି ଆଭିଜାତ୍ୟ ମହିଳା ବାଲ୍‌ଜାକ୍‌ଙ୍କ ନିବିଡ଼ ପ୍ରେମକୁ ପ୍ରତ୍ୟାଖ୍ୟାନ କରି ତାଙ୍କ ହୃଦୟରେ ଗଭୀର ବେଦନା ଆଣି ଦେଇଥିଲେ । ବାଲ୍‌ଜାକ୍‌ଙ୍କ ଜୀବନର ପ୍ରସିଦ୍ଧତମ ପ୍ରଣୟ ଲୀଳାର ସୂତ୍ରପାତ ହୋଇଥିଲା ଇଭିଲିନ୍ ହନ୍‌ସ୍କା ନାମକ ଜନୈକା ସମ୍ଭ୍ରାନ୍ତ ବଂଶୀୟା ପ୍ରଭୂତ ବିତ୍ତଶାଳିନୀ ପୋଲାଣ୍ଡ ଦେଶୀୟ ମହିଳାଙ୍କ ସହିତ ପତ୍ରାଳାପରୁ । ସେତେବେଳେ ମ୍ୟାଡାମ୍ ହନ୍‌ସ୍କା ରୁଷିଆର ୟୁକ୍ରେନ୍ ଅଞ୍ଚଳରେ ଥିବା ତାଙ୍କ ଜମିଦାରୀରେ ବୃଦ୍ଧ ସ୍ୱାମୀଙ୍କ ସହିତ ରହୁଥାନ୍ତି । ସେତେବେଳକୁ ତାଙ୍କର ବୟସ ୩୨ । ସେ ୫ଟି ସନ୍ତାନର ଜନନୀ ହୋଇଥିଲେହେଁ ତାଙ୍କର ଏକମାତ୍ର କନ୍ୟା ବ୍ୟତୀତ ଆଉ କେହି ଜୀବିତ ନଥିଲେ । ୟୁକ୍ରେନ୍‌ରେ ୫୦ହଜାର ଏକର ବ୍ୟାପି ସମତଳ ଶସ୍ୟ କ୍ଷେତ୍ର ମଝିରେ ନିର୍ଜନ ପ୍ରକାଣ୍ଡ ଅଟ୍ଟାଳିକାରେ ଗତି ପ୍ରାତ୍ୟହିକ ଜୀବନର ବିରକ୍ତିକର, ଏକାଘେଣିଆ ଭିତରେ ତାଙ୍କର ପ୍ରାଣ

ଅଣନିଃଶ୍ୱାସୀ ହୋଇ ଉଠୁଥିଲା । ଲେଖକ ବାଲ୍‌ଜାକ୍‌ଙ୍କୁ ସେ ଖୁବ୍ ପ୍ରଶଂସା କରୁଥିଲେ । ଦୀର୍ଘ ଦୁଇ ବର୍ଷ ଦୁହିଁଙ୍କ ମଧ୍ୟରେ ପତ୍ରାଳାପ ଚାଲିବା ପରେ ମ୍ୟାଡ଼ାମ୍ ହାନ୍‌ସ୍କା ତାଙ୍କର ରୁଗ୍‌ଣ ସ୍ୱାମୀ, କନ୍ୟା, ପରିଚାଳିକା ଓ ପରିଚାରକବର୍ଗଙ୍କ ସହିତ ସୁଇଜରଲାଣ୍ଡର ଏକ ସହରକୁ ଯାତ୍ରା କଲେ । ହାନ୍‌ସ୍କାଙ୍କ ନିମନ୍ତ୍ରଣ କ୍ରମେ ବାଲ୍‌ଜାକ ସେଠାକୁ ଆସିଲେ । ତରୁଣୀ ହାନ୍‌ସ୍କାଙ୍କର କମନୀୟ ମୁଖଶ୍ରୀ, ଶୋଭନ କେଶଗୁଚ୍ଛ ଓ ଆୟତ ନୟନର କୋମଳ ଚାହାଣିରେ ବାଲଜାକ୍ ମୁଗ୍ଧ ହୋଇଗଲେ । ମାତ୍ର ସ୍ଥୂଳ, ରକ୍ତାଭ ମୁଖ ବିଶିଷ୍ଟ, ରୁକ୍ଷ ଦର୍ଶନ ବାଲଜାକ୍‌ଙ୍କୁ ଦେଖି ସୁନ୍ଦରୀ ହାନ୍‌ସ୍କା ପ୍ରଥମେ ହତବାକ୍ ହୋଇଯାଇଥିଲେ । ମାତ୍ର ଅନତି ବିଳମ୍ବେ ସେ ତାଙ୍କୁ ନିଜର ପ୍ରେମାସ୍ପଦ ଭାବରେ ହିଁ ଗ୍ରହଣ କରି ନେଇଥିଲେ ।

ସେଠାରେ କେତେ ସପ୍ତାହ ରହିବା ପରେ ବାଲଜାକ୍ ପ୍ୟାରି ଫେରିଗଲେ । ପୁନର୍ବାର ପରବର୍ତ୍ତୀ ଶୀତ ଋତୁରେ ଦୁହେଁ ଏକତ୍ର ଛଅଟି ସପ୍ତାହ ଜେନିଭାରେ କଟାଇଲେ । ମାତ୍ର ଆଶ୍ଚର୍ଯ୍ୟର କଥା, ପ୍ୟାରି ଫେରି ଆସିଲା ପରେ ବାଲ୍‌ଜାକ୍ ହଠାତ୍ କାଉଣ୍ଟେସ ଗୁଇଡ଼ୋବନି ଭିସ୍କୋଣ୍ଟି ନାମକ ଜଣେ ସୁରସିକା, ସୁନ୍ଦରୀ ଇଂରେଜ ମହିଳାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ମ୍ୟାଡ଼ାମ୍ ହାନ୍‌ସ୍କା ତାହା ଜାଣିପାରିଲେ । ନିଜର ପ୍ରେମିକ ତାଙ୍କ ପ୍ରତି ବିଶ୍ୱାସଘାତକତା କରୁଛନ୍ତି ଶୁଣି କ୍ରୁଦ୍ଧ ହୋଇ ସେ ବାଲଜାକ୍‌ଙ୍କୁ ତିକ୍ତତାପୂର୍ଣ୍ଣ ପତ୍ର ଲେଖିଲେ ଓ ୟୁକ୍ରେନକୁ ସେ ନ ଫେରିବାକୁ ଉଦ୍ୟତ ଏହା ମଧ୍ୟ ଜଣାଇ ଦେଇଥିଲେ । ସନ୍ଦେହ ନାହିଁ, ଏହା ଥିଲା ବାଲ୍‌ଜାକ୍‌ଙ୍କ ପକ୍ଷେ ମଧ୍ୟ ଏକ ପ୍ରଚଣ୍ଡ ଆଘାତ । ମ୍ୟାଡ଼ାମ୍‌ଙ୍କ ରୁଗ୍‌ଣ ସ୍ୱାମୀଙ୍କର ମୃତ୍ୟୁ ଅବଧାରିତ ଜାଣି ଓ ତାହାଙ୍କ ମୃତ୍ୟୁ ପରେ ସେ ମ୍ୟାଡ଼ାମ୍‌ଙ୍କୁ ବିବାହ କରି ବିପୁଳ ସମ୍ପତ୍ତିର ଉତ୍ତରାଧିକାରୀ ହେବେ ବୋଲି ମନେ ମନେ କଳ୍ପନା କରୁଥିଲେ । ଦୁଇ ହଜାର ଫ୍ରାଙ୍କ୍ କରଜ କରି ସେ କ୍ରୁଦ୍ଧା ପ୍ରେୟସୀଙ୍କୁ ସନ୍ତୁଷ୍ଟ କରିବା ଲାଗି ଅବିଳମ୍ବେ ଭିଏନା ଯାତ୍ରା କଲେ । ଖୁବ୍ ଆଡ଼ମ୍ବରରେ ଯାଇ ଭିଏନାରେ ପହଞ୍ଚିଲା ବେଳକୁ ସେ ସମ୍ପୂର୍ଣ୍ଣ ନିଷ୍କପର୍ଦ୍ଦକ । ତଦୁପରି ସମୁଚିତ ପ୍ରାପ୍ୟ ସ୍ୱରୂପ ହାନସ୍କା ତାଙ୍କ ଉପରେ ଗାଳି ବର୍ଷଣ କରି ଚାଲିଲେ । ପ୍ରଣୟିନୀଙ୍କ ମନରୁ ସନ୍ଦେହ ନିରାକରଣ ଲାଗି ବାଲଜାକ୍‌ଙ୍କ ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ତିନି ସପ୍ତାହ ପରେ ହାନ୍‌ସ୍କା

ୟୁକ୍ରେନ୍ ଚାଲିଗଲେ । ତା'ପରେ ଆଠ ବର୍ଷ ପାଇଁ ଆଉ ଦୁହିଁଙ୍କ ମଧ୍ୟରେ ସାକ୍ଷାତ ହୋଇ ନ ଥିଲା ।

ବାଲ୍‌ଜାକ୍ ପ୍ୟାରି ଫେରିଯାଇ ଗୁଇଡୋବୋନିଙ୍କ ସଙ୍ଗେ ପୂର୍ବ ପରି ସମ୍ପର୍କ ସ୍ଥାପନ କଲେ । ଅବଶେଷରେ ବାଲ୍‌ଜାକଙ୍କ ବହୁ ଆକାଂକ୍ଷିତ ସମୟ ଉପସ୍ଥିତ ହେଲା । ୧୮୪୨ରେ ହାନ୍‌ସ୍କାଙ୍କ ସ୍ୱାମୀଙ୍କର ମୃତ୍ୟୁ ହେଲା । ବହୁ ବର୍ଷ ପରେ ବାଲ୍‌ଜାକଙ୍କ ସ୍ୱପ୍ନ ସଫଳ ହେବାକୁ ଯାଉଛି; ସେ ହେବେ ଧନୀ, ଭୁକ୍ତି ମଧ୍ୟବର୍ତ୍ତୀର ଋଣଭାରରୁ ସେ ହେବେ ମୁକ୍ତ । ମାତ୍ର ହାନସ୍କା ବାଲ୍‌ଜାକ୍‌ଙ୍କୁ କଦାପି ବିବାହ କରି ପାରିବେ ନାହିଁ ବୋଲି ତାହାଙ୍କୁ ଏକ ପତ୍ର ଲେଖି ସ୍ପଷ୍ଟ ଭାବେ ଜଣାଇ ଦେଇଥିଲେ । ମୁହୂର୍ତ୍ତକ ମଧ୍ୟରେ ବାଲ୍‌ଜାକ୍‌ଙ୍କ ସମସ୍ତ ଆଶା ଭରସା ଚୂର୍ଣ୍ଣୀଭୂତ ହୋଇଗଲା । ତଥାପି ତାଙ୍କର ଦୃଢ଼ ବିଶ୍ୱାସ, ଯଦି ସେ ଥରେ ହାନସ୍କାଙ୍କ ସହ ସାକ୍ଷାତ କରନ୍ତେ, ତା'ହାଲେ ତାଙ୍କ ହୃଦୟକୁ ପୁଣି ଜୟ କରି ନିଅନ୍ତେ । ମାତ୍ର ହାନ୍‌ସ୍କାଙ୍କ ନିକଟକୁ ଯିବା ଲାଗି ଅନୁରୋଧ କରି ଯେତେ ପତ୍ର ଲେଖିଲେ ହେଁ ହାନସ୍କା ନିଜର ଅନିଚ୍ଛା ପ୍ରକାଶ ପୂର୍ବକ ତାଙ୍କୁ ସେଠାକୁ ନ ଆସିବାକୁ ଉତ୍ତର ଦେଉଥାନ୍ତି । ଶେଷରେ ତାଙ୍କର ସମସ୍ତ ନିଷେଧକୁ ଅଗ୍ରାହ୍ୟ କରି ବାଲ୍‌ଜାକ୍ ସେଣ୍ଟ ପିଟରସ୍‌ବର୍ଗ ଯାତ୍ରା କଲେ । ହାନସ୍କା ସେତେବେଳେ ସେଇଠି ରହୁଥାନ୍ତି । ତାଙ୍କ ଆଶା ସତ୍ୟରେ ପରିଣତ ହେଲା । ହାନ୍‌ସ୍କା ତାଙ୍କୁ ବିବାହ କରିବାକୁ ରାଜି ହେଲେ । ମାତ୍ର ନାନା କାରଣରୁ ଏହାର ୭ ବର୍ଷ ପରେ ୧୮୫୦ରେ ପ୍ରକୃତରେ ସେମାନଙ୍କର ବିବାହ ଉତ୍ସବ ୟୁକ୍ରେନ୍‌ରେ ଅନୁଷ୍ଠିତ ହୋଇଥିଲା ।

ମାତ୍ର ତାଙ୍କର ସୁଖର ଦିନ ଖୁବ୍ ଶୀଘ୍ର ସରିଯାଇଥିଲା । ମାତ୍ରାତି-ରିକ୍ତ ଭାବେ ଦୀର୍ଘକାଳ ବହୁ ପରିଶ୍ରମ ଯୋଗୁଁ ତାଙ୍କର ସ୍ୱାସ୍ଥ୍ୟ ସେତେବେଳକୁ ଭାଙ୍ଗି ପଡ଼ିଥିଲା । ସେହି ବର୍ଷ ଶୀତ ଋତୁରେ ସେ କଠିନ ପୀଡ଼ାଗ୍ରସ୍ତ ହୋଇପଡ଼ିଲେ । ସେଥିରୁ କୌଣସିମତେ ଆରୋଗ୍ୟ ଲାଭ କଲେ ହେଁ ସେ ଯେ ଆଉ ବେଶୀଦିନ ବଞ୍ଚିବେ ନାହିଁ ଏହା ସ୍ପଷ୍ଟ ଜଣା ପଡ଼ି ଯାଉଥିଲା । ବାଲ୍‌ଜାକ୍ ସସ୍ତ୍ରୀକ ପ୍ୟାରିକୁ ଫେରିଯାଇ ହାନ୍‌ସ୍କାଙ୍କ ଅର୍ଥରେ ଏକ ସୁସଜ୍ଜିତ ଅଟ୍ଟାଳିକା କ୍ରୟ କରିଥିଲେ । ହାନ୍‌ସ୍କାଙ୍କ

ପାଖେ ସେତେବେଳକୁ ବିଶେଷ ଅର୍ଥ ନ ଥାଏ । ନିଜର କନ୍ୟାକୁ ସେ ବିପୁଳ ସମ୍ପତ୍ତି ପ୍ରଦାନ କରି ସାରିଥାନ୍ତି । ଏହାପରେ ସାଧାରଣ ଭାବେ ଚଳିବା ଭଳି ସ୍ୱଳ୍ପ ମାତ୍ର ଧନ ହିଁ ତାଙ୍କ ପାଖେ ଅବଶିଷ୍ଟ ରହିଥାଏ । ବାଲଜାକ୍‌ଙ୍କ ମନରେ ହୁଏତ ଏଥିପାଇଁ ନୈରାଶ୍ୟ ଜନ୍ମିଥିବ। ମାତ୍ର ସେ ତାହା ପ୍ରକାଶ କରୁ ନ ଥିଲେ । ସମ୍ଭବତଃ ବାଲ୍‌ଜାକ୍ ଏ ବିବାହ ଫଳରେ ମଧ୍ୟ ସୁଖୀ ହୋଇପାରି ନ ଥିଲେ ।

ଏହାର ଅଳ୍ପ ଦିନ ପରେ ବାଲ୍‌ଜାକ ପୁନର୍ବାର ଅସୁସ୍ଥ ହୋଇପଡ଼ିଲେ, ଏଥିରୁ ସେ ଆଉ ଆରୋଗ୍ୟ ଲାଭ କରିପାରିଲେ ନାହିଁ । ବିବାହର ଅଳ୍ପ କେତେ ମାସ ପରେ ୧୮୫୦ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସ ୧୭ ତାରିଖ ଦିନ ଏହି ଅମର କଥାକାର ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ତାଙ୍କର ଶେଷ ବାସଗୃହରୁ ମିଳିଥିବା ଅମୂଲ୍ୟ ପାଣ୍ଡୁଲିପି ଓ ତାହାଙ୍କ ପ୍ରକାଶିତ ରଚନାବଳୀ ହିଁ ଆଜି ସାହିତ୍ୟ ଜଗତରେ ବାଲ୍‌ଜାକ୍‌ଙ୍କ ସାଫଲ୍ୟର ସମୁଚ୍ଚ ଗୌରବ ସ୍ତମ୍ଭ ଭାବେ ଦଣ୍ଡାୟମାନ ।

ବାଲ୍‌ଜାକ୍‌ଙ୍କ ଅପେକ୍ଷା ଡ଼ିକେନ୍‌ସ, ଟଲ୍‌ଷ୍ଟୟ, ଷ୍ଟେନ୍‌ଧାଲ୍, ଡ଼ଷ୍ଟୋଭସ୍‌କି, ସ୍କଟ୍‌ଙ୍କ ଭଳି କେତେକ ଔପନ୍ୟାସିକ କୌଣସି ଗୋଟିଏ ବିଷୟରେ ହୁଏତ ଉତ୍କର୍ଷ ଅର୍ଜନ କରି ପାରିଥାନ୍ତି; ମାତ୍ର ଜୀବନର ଶକ୍ତିଶାଳୀ ବ୍ୟାପକ ପରିଚୟ ଓ ବହୁମୁଖୀ ଚିତ୍ର ଅଙ୍କନ କରିବାରେ ବାଲ୍‌ଜାକ୍ ପୃଥିବୀରେ ଅଦ୍ୱିତୀୟ ଓ ସର୍ବଶ୍ରେଷ୍ଠ ଔପନ୍ୟାସିକ ଭାବେ ପରିଗୃହୀତ । ତାଙ୍କର Comedie Humaine ଉପନ୍ୟାସରେ ସେ ତିନି ଚାରି ପୁରୁଷର ପ୍ୟାରିସ ଓ ଫରାସୀ ସମାଜର ପ୍ରାୟ ତିନି ଚାରି ହଜାର ନରନାରୀଙ୍କ ଚରିତ୍ର ଚିତ୍ରଣ କରିବାର ପରିକଳ୍ପନା କରିଥିଲେ । ଫରାସୀ ରାଷ୍ଟ୍ର ବିପ୍ଳବ, ନେପୋଲିଅନଙ୍କ ସାମ୍ରାଜ୍ୟ ସ୍ଥାପନଠାରୁ ଆରମ୍ଭ କରି ଏକ ଶତ ବର୍ଷର ଜୀବନ ଚିତ୍ର ଦେବା ତାଙ୍କର ଅଭିପ୍ରାୟ ଥିଲା । ପରିକଳ୍ପିତ ସମସ୍ତ ଉପନ୍ୟାସଟି ରଚିତ ହୋଇ ନ ଥିଲେ ହେଁ ସେ ୨୨ ବର୍ଷ ପରିଶ୍ରମ କରି ଦୁଇ ହଜାର ଜୀବନ୍ତ ଚରିତ୍ର ଚିତ୍ରଣ କରିବାରେ ଆଶ୍ଚର୍ଯ୍ୟ କୃତିତ୍ୱର ଅଧିକାରୀ ହୋଇପାରିଛନ୍ତି । ଖ୍ରୀ: ୧୮୨୯ରେ ଯେତେବେଳେ ତାଙ୍କର ପ୍ରଥମ ଉପନ୍ୟାସ ପ୍ରକାଶିତ ହେଲା, ତାହା ଯେ ସେ ଯୁଗର ଏକ ମହାକାବ୍ୟର ଆରମ୍ଭ ଏହା ସେ

ନଜେ ମଧ୍ୟ ଜାଣି ନ ଥିଲେ । ଖ୍ରୀ: ୧୮୪୨ ପର୍ଯ୍ୟନ୍ତ ପାର୍ଶ୍ୱ ୧୩।୧୪ ବର୍ଷ ଧରି ସେ ଯେଉଁ ଉପନ୍ୟାସ ରଚନା କରିଥିଲେ ସେସମସ୍ତଙ୍କୁ ଏକତ୍ର କରି ଭବିଷ୍ୟତରେ ସେ ଏହି ବିରାଟ ଉପନ୍ୟାସକୁ ସର୍ବମୋଟ ୧୪୪ ଖଣ୍ଡରେ ପରିସମାପ୍ତ କରିବାକୁ ମନସ୍ଥ କରିଥିଲେ । ତାଙ୍କର ଉପନ୍ୟାସ-ମାନଙ୍କ ମଧ୍ୟରେ "Old goriat" ସର୍ବୋତ୍କୃଷ୍ଟ । ପୃଥିବୀର ବହୁ ଖ୍ୟାତନାମା ଔପନ୍ୟାସିକ ଅନେକ ଉପନ୍ୟାସ ଲେଖିଛନ୍ତି । ମାତ୍ର ବାଲ୍‌ଜାକଙ୍କ ୯୦ଟି ଉପନ୍ୟାସ ମଧ୍ୟରୁ ପ୍ରାୟ ପ୍ରତ୍ୟେକଟି ପୃଥିବୀ ସାହିତ୍ୟର ଅମରତ୍ୱର ଆସନ ଦାବୀ କରେ ।

୧୮ଶ ଶତାବ୍ଦୀର ଶେଷ ଭାଗରୁ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ପ୍ରାୟ ଏକ ଶତାବ୍ଦୀର ସମସ୍ତ ଇତିହାସ ଯେପରି ତାଙ୍କ ରଚନାବଳୀ ମଧ୍ୟରେ ପ୍ରତିବିମ୍ବିତ ହୋଇଅଛି । ସମସ୍ତ ଫ୍ରାନ୍‌ସର ବିପୁଳ ପରିସର ମଧ୍ୟରେ ତାଙ୍କର ଚରିତ୍ରଗୁଡ଼ିକ ଗତିଶୀଳ । ମନୁଷ୍ୟ ଚରିତ୍ର ବିଷୟରେ ତାଙ୍କର ଜ୍ଞାନ ଥିଲା ଅସୀମ; ବିଶେଷତଃ ଡାକ୍ତର, ଓକିଲ, କିରାଣୀ, ସାମ୍ବାଦିକ, ଦୋକାନଦାର, ଗ୍ରାମ୍ୟ ପୁରୋହିତ ପ୍ରଭୃତି ମଧ୍ୟବିତ୍ତ ଶ୍ରେଣୀର ଚରିତ୍ରମାନଙ୍କୁ ସେ କୃଷିଜୀବୀ ଓ ନଗରବାସୀଙ୍କ ଅପେକ୍ଷା ଅଧିକ ଭଲଭାବେ ଜାଣିଥିଲେ । ସବୁ ଶ୍ରେଷ୍ଠ ଔପନ୍ୟାସିକ ପରି ଦୁଷ୍ଟ ଦୁର୍ବୃତ୍ତ ଚରିତ୍ର ଚିତ୍ରଣରେ ତାଙ୍କର ସମଧିକ ଦକ୍ଷତା ପ୍ରକଟିତ । ମୋଟ ଉପରେ ତାଙ୍କର ସୃଷ୍ଟ ଚରିତ୍ରମାନଙ୍କ ସଂଖ୍ୟା ଯେପରି ଅତିକ୍ରମାପ୍ୟ, ସେହିପରି ତାଙ୍କର ପର୍ଯ୍ୟବେକ୍ଷଣ ଥିଲା ପୁଙ୍ଖାନୁପୁଙ୍ଖ, ମର୍ମୋଦ୍‌ଘାଟନ ଶକ୍ତି ଥିଲା, ଅପରିସୀମ ।

୧୯ଶ ଶତାବ୍ଦୀର ପୃଥିବୀ ବିଖ୍ୟାତ ରୁଷୀୟ ଔପନ୍ୟାସିକ ଟଲଷ୍ଟୟ ଓ ଡଷ୍ଟୋଭସ୍କିଙ୍କ ସହ ବାଲଜାକ୍‌ଙ୍କୁ ତୁଳନା କଲେ ବାଲଜାକଙ୍କ ମହତ୍ତ୍ୱ ସହଜରେ ଉପଲବ୍‌ଧି କରିହୁଏ । ଡଷ୍ଟୋଭସ୍କି ଓ ଟଲଷ୍ଟୟଙ୍କ ଉପନ୍ୟାସର ଚରିତ୍ରଚିତ୍ରଣରେ ବହୁପରିମାଣରେ ଅତିମାନବିକତା ପରିଲକ୍ଷିତ ହୁଏ । ମାତ୍ର ବାଲ୍‌ଜାକଙ୍କ ଚରିତ୍ରଚିତ୍ରଣରେ ଆମେ ତତ୍‌କାଳୀନ ଫରାସୀ ତଥା ୟୁରୋପୀୟ ସମାଜର ବାସ୍ତବ ଚିତ୍ର ଦେଖିବାକୁ ପାଉଁ । ସେହିପରି ରୁଷୀୟ ଔପନ୍ୟାସିକ ଦ୍ୱୟଙ୍କୁ ସେମାନଙ୍କ ଉପନ୍ୟାସରେ ଆମେ ପ୍ରଧାନତଃ ପ୍ରଚାରକ ରୂପରେ ହିଁ ଦେଖୁଁ । ସେମାନେ ମୁଖ୍ୟତଃ ମାନବ ଚରିତ୍ରକୁ

ଖଗପ ବା କଳୁଷିତ ବୋଲି ଗ୍ରହଣ କରି ତାକୁ ସଂଶୋଧନ କରିବାକୁ ଉଦ୍ୟମ କରି ଯାଇଛନ୍ତି; କିନ୍ତୁ ମାତ୍ର ପ୍ରବୃତ୍ତି ବା ପ୍ରଚଣ୍ଡ ଅଶ୍ଳୀଳତା ସମ୍ବଳିତ ରଚନା ଶ୍ରେଷ୍ଠ କଳା ଭାବେ ବିବେଚିତ ହୋଇ ନ ପାରେ । ମାନବ ଚରିତ୍ରକୁ ସଂଶୋଧନ କରିବାକୁ ବାଲ୍‌ଜାକ ନିଜ ରଚନାବଳୀରେ ଆଦୌ ଉଦ୍ୟମ କରି ନାହାନ୍ତି । ମନୁଷ୍ୟର ବାସ୍ତବ ବିଶିଷ୍ଟ ଚରିତ୍ର ହିଁ ତାଙ୍କ ପକ୍ଷେ ପରମ କୌତୁହଳର ବିଷୟ ଥିଲା । ଆମେ ଜାଣିଥିବା ଲୋକଙ୍କ ବିଷୟକୁ ହିଁ ସେ ଈଷତ୍ ପରିବର୍ତ୍ତିତ କରି ଆମକୁ ପରିବେଷଣ କରି ଯାଇଛନ୍ତି । ଆମର ଅନୁଭୂତି ମାଧ୍ୟମରେ ଆମେ ସେହି ଚରିତ୍ରମାନଙ୍କୁ ଉପଲବ୍ଧି କରିପାରିଥାଉ ।

ବାଲ୍‌ଜାକଙ୍କ ଗଳ୍ପ ଓ ଉପନ୍ୟାସଗୁଡ଼ିକ ପ୍ରଣୟ-ପ୍ରଧାନ । ତାହାଙ୍କ ସୃଷ୍ଟ ଚରିତ୍ରମାନଙ୍କ ପ୍ରଣୟରେ ପ୍ରଚୁର ଭାବପ୍ରବଣତା ଓ ଆନ୍ତରିକତା ମଧ୍ୟ ପରିଲକ୍ଷିତ ହୋଇଥାଏ । ବାଲ୍‌ଜାକଙ୍କ ଗଳ୍ପର ଚରିତ୍ର ସବୁ ପୃଷ୍ଠାଗତପ୍ରାୟ ଗଳିକନ୍ଦିରୁ ଆରମ୍ଭ କରି ରାଜପ୍ରାସାଦ, ଖମାର ଘରର ବନ୍ଦି ସନ୍ନିକଟରୁ ଯୁଦ୍ଧ କ୍ଷେତ୍ର ପର୍ଯ୍ୟନ୍ତ ସମାଜର ବିଭିନ୍ନ ସ୍ତରରୁ ଆଗତ । ତାହାଙ୍କ ଗଳ୍ପ ଉପନ୍ୟାସର ବର୍ଣ୍ଣନାଭଙ୍ଗୀରେ ମଧ୍ୟ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ଆକସ୍ମିକତା, ଦ୍ରୁତ ଘଟଣା ସଙ୍ଘଟନ ପରିବର୍ତ୍ତେ ସେ ଗଳ୍ପ ଉପନ୍ୟାସକୁ ଅତି ଶିଥିଳ, ଅନୁତ୍ତେଜିତ ଭାବେ ଆରମ୍ଭ କରନ୍ତି । ଘଟଣା ସଙ୍ଘଟିତ ହୋଇଥିବା ସ୍ଥାନର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନରୁ ପ୍ରଥମେ ତାଙ୍କର ଗଳ୍ପ ଉପନ୍ୟାସଗୁଡ଼ିକ ଆରମ୍ଭ ହୋଇଥାଏ । ସେଇସବୁ ଟିକିନିଖି ବର୍ଣ୍ଣନା କରିବାରେ ତାଙ୍କର ପ୍ରଚୁର ଆଗ୍ରହ । ଏପରିକି ସ୍ଥାନେ ସ୍ଥାନେ ଆମେ ଯେତିକି ଜାଣିବାକୁ ଚାହୁଁ ତା' ଅପେକ୍ଷା ସେ ଅଧିକ ବର୍ଣ୍ଣନା ଆମକୁ ଦେଇଥାନ୍ତି । ତା' ପରେ ସେ ଗଳ୍ପ ବା ଉପ-ନ୍ୟାସର ଚରିତ୍ରମାନଙ୍କର ବର୍ଣ୍ଣନା କରନ୍ତି । ସେମାନଙ୍କର ରୂପ, ପୋଷାକ ପରିଛଦ, ମନୋଭାବ, ଇତିହାସ, ଅଭ୍ୟାସ, ଭାବନା, ଦୋଷତ୍ରୁଟି ପ୍ରଭୃତିର ବିସ୍ତୃତ ବର୍ଣ୍ଣନା ପରେ ସେ ତାଙ୍କର ଗଳ୍ପଟି କହିବାକୁ ଆରମ୍ଭ କରନ୍ତି । କଥାବସ୍ତୁର ଉପଯୋଗୀ ପୃଷ୍ଠପଟ ଚିତ୍ରଣରେ ମଧ୍ୟ ସେ ସିଦ୍ଧହସ୍ତ ।

ସାଧାରଣ ଅଭିଜାତ ଜାତ୍ତିକ ଓ ଜପର ଦୁର୍ଦ୍ଦାର ଲାଳସାରେ ପରିଣତ ହୋଇ ପ୍ରଶସ୍ତମାନତଃ ସ୍ୱାଭାବିକ୍ ନରନାରୀମାନଙ୍କୁ କରୁଣାତ୍ମକ-

ସବେ କାମ, ଈର୍ଷା ଓ ମୋହର ବଶବର୍ତ୍ତୀ କରାଏ—ବାଲ୍‌ଜାକ୍ ସାରା ଜୀବନ ଏହାର ସଦୁତ୍ତର ଅନ୍ୱେଷଣ କରିଛନ୍ତି । ଅର୍ଥ ଓ ମାନସିକ ବିକାର (money and mania) ମୁଖ୍ୟତଃ ତାଙ୍କ ଗଳ୍ପ ଉପନ୍ୟାସର ଉପଜୀବ୍ୟ ବିଷୟ । ଏହା ତାହାଙ୍କ ସୃଷ୍ଟିର ବାସ୍ତବତାମୁଖୀ ଆଭିମୁଖ୍ୟର ପରିଚୟସୂଚକ । ଉଦାହରଣ ସ୍ୱରୂପ ତାହାଙ୍କ 'ମୃତ୍ତିଭୂକ୍' ଗଳ୍ପର ଅର୍ଥ ଲାଳସା ଓ 'ରହସ୍ୟ ପୁସ୍ତ' ଗଳ୍ପରେ ଚିତ୍ତ ବିକାରର ନିଦର୍ଶନ କପରି ବଳିଷ୍ଠ ଭାବେ ରୂପାୟିତ ହୋଇପାରିଛି, ତାହା ପାଠକ ସହଜରେ ଉପଲବ୍ଧି କରିପାରିବେ ।

୧୯ଶ ଶତାବ୍ଦୀର ପ୍ରାରମ୍ଭରେ ଆଧୁନିକ କ୍ଷୁଦ୍ରଗଳ୍ପର ସୂତ୍ରପାତ ହେଲା । ଆଧୁନିକ କ୍ଷୁଦ୍ର ଗଳ୍ପକୁ ସାର୍ଥକ ଶିଳ୍ପ ସୃଷ୍ଟିରେ ପରିଣତ କରିବାରେ ଫ୍ରାନ୍‌ସ ଦେଶର କଥାକାରଙ୍କ ଦାନ ସର୍ବାଧିକ । ସେ ସମୟରେ ବାଲ୍‌ଜାକ୍ ଓ ଫ୍ରାନ୍‌ସର ବହୁସଂଖ୍ୟକ ଲେଖକ ସାହିତ୍ୟର ଏହି ବିଭାବରେ ସେମାନଙ୍କ ଲେଖନୀ ଚାଳନା କରିଥିଲେ ହେଁ ସେମାନଙ୍କ ମଧ୍ୟରୁ ବାଲ୍‌ଜାକ୍‌ଙ୍କ କୃତିତ୍ୱ ଯେ ଅଗ୍ରଗଣ୍ୟ ଏହା ଲେଖିବା ଅନାବଶ୍ୟକ । ବାଲ୍‌ଜାକ୍‌ଙ୍କ ଉପଯୁକ୍ତ ଦାୟାଦମାନଙ୍କ ଫ୍ଲୋବେର୍, ଜର୍ଜ ସ୍ୟାଣ୍ଡ, ଆଡମ, ମେଳା, ଗୋପାସାଁ, ହ୍ୟୁଗୋ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ବାଲ୍‌ଜାକ୍‌ଙ୍କ ପ୍ରାୟ ଅଧିକାଂଶ ଗଳ୍ପ ତାଙ୍କର ଦୀର୍ଘ ଉପନ୍ୟାସ-ଗୁଡ଼ିକ ରଚିତ ହେବା ପୂର୍ବରୁ ଲିଖିତ । ସେଗୁଡ଼ିକରେ ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ଅର୍ଥାତ୍ ଗଳ୍ପଗୁଡ଼ିକରେ ବିସ୍ମୟୋତ୍ପାଦକ ଓ କୌତୂହଳୋଦ୍ଦୀପକ ଘଟଣା ଏବଂ ଭାବାକୁଳତା, ଦୁଃସାହସିକତାର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୋଇଥାଏ । ପ୍ରସଙ୍ଗ କ୍ରମେ ଏଠାରେ ତାହାଙ୍କ ରଚିତ ସୁପ୍ରସିଦ୍ଧ ଚାରିଗୋଟି କ୍ଷୁଦ୍ର ଗଳ୍ପର ସଂକ୍ଷିପ୍ତ କଥାବସ୍ତୁ ପ୍ରଦତ୍ତ ହେଲା ।

**ଘାତକ :—**

ବିଦେଶୀ ଅଧିକୃତ ମେଣ୍ଡା ସହରର ଉଚ୍ଚ ପରିବାର ଫରାସୀ କର୍ତ୍ତୃତ୍ୱର ବିରୁଦ୍ଧାଚରଣ କରିବା ଯୋଗୁଁ ଫରାସୀ କର୍ମଚାରୀ ଉଚ୍ଚକ୍

ପରିବାର ପ୍ରତି ଯେଉଁ ଶାସ୍ତିର ବ୍ୟବସ୍ଥା କରିଛନ୍ତି ତାହା ଯେପରି ଭୟାନକ, ବୀଭତ୍ସ, ଜଘନ୍ୟ, ସେହିପରି ଅଚିନ୍ତନୀୟ । ଏହାର ତତ୍ପୂର୍ବର ପରିବେଶ ପରିକଳ୍ପନା କରି ଲେଖକ ଷଡ଼ଭୁଜ ଚରିତ୍ରର ମାନସିକ ଦ୍ୱନ୍ଦ୍ୱକୁ ଯେପରି ଚିତ୍ର କରିଛନ୍ତି, ସେଥିରୁ ତାଙ୍କର ଚରିତ୍ରଚିତ୍ରଣ ତଥା କଳ୍ପନାର ଐଶ୍ୱର୍ଯ୍ୟ ସହଜରେ ହୃଦୟଙ୍ଗମ କରିହୁଏ । ଦେଶ ନାମରେ ଜଘନ୍ୟ ପ୍ରତିହିଂସା ପ୍ରବଣତା ଏବଂ ଦେଶ ପାଇଁ ପରମ ଆତ୍ମୋତ୍ସର୍ଗର ଏକ ମନୋଜ୍ଞ ସମନ୍ୱୟ ଏଥିରେ ଅଭିବ୍ୟକ୍ତି ଲାଭ କରିଅଛି । ଅଭିଜାତ ସଂସାର, ଯେଉଁ ଅବସ୍ଥାରେ ଏବଂ ମହାପଙ୍କରେ ଯେଉଁ ଅନିବାର୍ଯ୍ୟ ଘଟଣା —ସଂସ୍ଥାନରେ ପିତୃହନ୍ତାକୁ ଯେପରି ଏକ ଋତ୍ୱିକ ରୂପେ ମଣ୍ଡିତ କରିଛି ପିତାକୁ ସେହିପରି ଟ୍ରାଜିକ୍ ମହିମାନ୍ୱିତ କରିଛି । ପୁରୁଷ ଚରିତ୍ରର ବିକାଶ ସଙ୍ଗେ ଅସ୍ୱାଭାବିକତା କିପରି ଲେଖନୀର ଯାଦୁକରୀ ସ୍ପର୍ଶରେ ସ୍ୱାଭାବିକ ହୋଇ ଉଠିଛି ତାହା ହିଁ ପାଠକ ଚିତ୍ତରେ ଚମତ୍କାରିତା ସୃଷ୍ଟି କରେ । ଏହି ଗଳ୍ପରେ ପାରିପାର୍ଶ୍ୱିକ ଚିତ୍ର, ଦୃଶ୍ୟ ଯୋଜନା, ବାତ୍ୟା ବର୍ଣ୍ଣିତ ସ୍ଥିତି, କଳ୍ପନାର ସଫଳ ପ୍ରକାଶ ମଧ୍ୟ ପରମ ଉପଭୋଗ୍ୟ ।

## ସ୍ୱର୍ଣ୍ଣଭୁକ୍ :—

କାମିନୀ ଓ କାଞ୍ଚନ କିପରି ଫାସିନୋକେନ୍ ଜୀବନକୁ ଉନ୍ମାଦ ଓ ସକରୁଣ କରିଛି ତାହା ଗଳ୍ପଟି ପାଠ କଲେ ଉତ୍ତମ ରୂପେ ପ୍ରତିଭାତ ହୁଏ । ଅର୍ଥ ଥିଲା ବାଲଜାକଙ୍କ ସ୍ୱପ୍ନ ଏହି ଦୃଷ୍ଟିରୁ ଲେଖକଙ୍କ ଆଶା ଆକାଂକ୍ଷା କିପରି ତାଙ୍କର କଳ୍ପନାକୁ ଉଜ୍ଜୀବିତ କରିଛି ତାହା ସହଜରେ ଅନୁମେୟ, ଗଳ୍ପର ଛଦ୍ମକତା, ନାରୀର ଚପଳ ପ୍ରତାରଣାପୂର୍ଣ୍ଣ ପ୍ରେମ, ବନ୍ୟ ଓ ହିଂସ୍ର ପ୍ରବୃତ୍ତିର ରୋମାଞ୍ଚକର ପ୍ରକାଶ ସୁପରିସ୍ଫୁଟ । ପ୍ରବଳ ଆସକ୍ତିର ନୈରାଶ୍ୟମୟ ପରିଣତି ମଧ୍ୟ ଏଥିରୁ ସହଜରେ ଅନୁମାନ କରିହୁଏ । ଏହି ବ୍ୟର୍ଥକାମ, ଭଗ୍ନ ହୃଦୟ ଫାସିନୋକେନ୍ ପ୍ରତି ଲେଖକଙ୍କର ପ୍ରଚୁର କରୁଣା ଓ ସମବେଦନା ମଧ୍ୟ ଗଳ୍ପଟିରେ ଅଭିବ୍ୟକ୍ତି ଲାଭ କରିଅଛି ।

## ରହସ୍ୟପୁରୀ :—

ଏହି ଗଳ୍ପଟି ବାଲ୍ଜାକଙ୍କର ତଥା ପୃଥିବୀର ସର୍ବଶ୍ରେଷ୍ଠ ଗଳ୍ପମାନଙ୍କ ମଧ୍ୟରୁ ଅନ୍ୟତମ । ପରିକଳ୍ପନା, ରସ ଓ ଚରିତ୍ର ସୃଷ୍ଟି

ଦୃଷ୍ଟିରୁ କଥା ସାହିତ୍ୟ ଜଗତରେ ଏହା ଏକ ଅନବଦ୍ୟ ସୃଷ୍ଟି ! ରୋମାଣ୍ଟିକ କଳ୍ପନାର ଏହା ଏକ ମନୋଜ୍ଞ କୀର୍ତ୍ତିସ୍ତମ୍ଭ । ମସିଏଁ ଦ୍ୟଗରେଟଙ୍କ ପତ୍ନୀଙ୍କର ଏକ ସ୍ପେନୀୟ ଯୁଦ୍ଧବନ୍ଦୀସହ ଗୋପନ ପ୍ରେମର ମର୍ମାନ୍ତିକ ଶୋଚନୀୟ ପରିଣତି ଏହାର କଥାବସ୍ତୁ । ଗଳ୍ପଟିର ଶୈଳୀ ମଧ୍ୟ ବିଷୟବସ୍ତୁର ଅନୁରୂପ ହୋଇଅଛି ଓ ଲେଖକଙ୍କ ନିର୍ମାଣ ନୈପୁଣ୍ୟ କଳା କୌଶଳର ପରାକାଷ୍ଠା ପ୍ରଦର୍ଶନ କରାଇଅଛି । ପାରିପାର୍ଶ୍ୱିକ ଦୃଶ୍ୟ ଭେନ୍ଦୋମର ଦୁର୍ଗ 'ରହସ୍ୟପୁଷ୍ପ'ର ବର୍ଣ୍ଣନା ଗଳ୍ପର ପ୍ରାରମ୍ଭରୁ ପାଠକ ମନରେ ବିସ୍ମୟ ସୃଷ୍ଟି କରେ, ଧୀରେ ଧୀରେ ଲେଖକ ସୁକୌଶଳରେ, ବେସାକ ଓ ଅନ୍ୟ ଚରିତ୍ରମାନଙ୍କ ସହାୟତାରେ ଗଳ୍ପର କଥାବସ୍ତୁ ସହ ଯେତକ ପରିଚିତ କରାଇଥାନ୍ତି, ସେତକ ପାଠକ ମନରେ ଉତ୍କଣ୍ଠା କୌତୁହଳ ଉଦ୍ଦୀପ୍ତ ହେଉଥାଏ । ତା' ପରେ ସୃଷ୍ଟି ହୁଏ ଗଳ୍ପ ବର୍ଣ୍ଣିତ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ମାନସିକ ଦ୍ୱନ୍ଦ୍ୱ ଓ ସଂଘାତର ପୀଡ଼ନ । ଅବଶେଷରେ ଗଳ୍ପର ପରିଣତି କପରି ଭୟାବହ ଓ ରୋମାଞ୍ଚକର ହୋଇଅଛି ତାହା ସହଜରେ ଉପଲବ୍ଧ କରିହୁଏ । ଏକାଧାରରେ ଜୀବନ୍ତ ଚରିତ୍ରଚିତ୍ରଣ, ବିସ୍ମୟ, ଉତ୍କଣ୍ଠା ଓ ଦ୍ୱନ୍ଦ୍ୱର ସୁସମାବେଶ ଯୋଗୁଁ ଗଳ୍ପଟି ପାଠକ ମନରେ ଏକ ଅବିସ୍ମରଣୀୟ ପ୍ରଭାବ ବିସ୍ତାର କରିବାକୁ ସମର୍ଥ । ରବର୍ଟ ଲୁଇସ ଷ୍ଟିଭେନ୍‌ସନ୍ ଗୋଟାଏ ଦୁଆରକୁ ଦେଖି ମୁଗ୍‌ଧ ହୋଇ ଏକ ପ୍ରସିଦ୍ଧ ଗଳ୍ପ ରଚନା କରିଥିଲେ । ସେହିପରି ଏକ ସୁଦୃଶ୍ୟ ପୁରାତନ ଦୁର୍ଗକୁ ଦେଖି ବାଲ୍‌ଜାକଙ୍କ ମନରେ ଯେଉଁ ଭାବନା ଉଦ୍ଭତ ହୋଇଥିଲା ତାହା ହିଁ ଏହି ଗଳ୍ପଟିର ଉତ୍ସ ସ୍ୱରୂପ ।

**ମରୁପ୍ରେମ :—**

ଖାଦ୍ୟ ଓ ଖାଦକ, ମଣିଷ ହିଂସ୍ର ପଶୁ ମଧ୍ୟରେ ଯେ ନିବିଡ଼ ପ୍ରେମ ସମ୍ଭବପର, ଏହା ଏକ ଅସମ୍ଭବ ପରିକଳ୍ପନା ହେଲେ ହେଁ, ତାହାର ବାସ୍ତବ ଓ ସଜୀବ ଚିତ୍ର ଏଥିରେ ସୁପରିସ୍ଫୁଟ । ଏହା ପାଠକ ମନରେ ଏକ ଅଦ୍ଭୁତ ରସ ସୃଷ୍ଟି କରେ । ଫରାସୀ ପ୍ରକୃତିବାଦୀ (Naturalist) ଲେଖକମାନଙ୍କର ମୂଳ ମନ୍ତ୍ରଟି ସାର୍ଥକ ଭାବରେ ଏଥିରେ ପ୍ରତିଫଳିତ ହୋଇଅଛି । ଏମାନଙ୍କ ମତରେ ସୃଷ୍ଟିରେ ସର୍ବତ୍ର ଏକ ଅଚ୍ଛିନ୍ନ

ଶକ୍ତିର ଲୀଳା ଅବ୍ୟାହତ ପ୍ରବହମାନ । ଜଡ଼-ମୂକ, ଆକାଶ-ପୃଥିବୀ ଏବଂ ନିଖିଳ ଜୀବ ଜଗତ ଏକ ରହସ୍ୟ-ରସ-ସୂତ୍ରରେ ଗ୍ରଥିତ । ଚେତନ ଅଚେତନ ମୂକ-ମୁଖର, ଜନ୍ତୁ ଓ ନରନାରୀ ମଧ୍ୟରେ ସେହି ଏକ ଶକ୍ତି ଏକ ଅବିଚ୍ଛିନ୍ନ ସମଗ୍ରତାରେ ଯେଉଁ ଅଖଣ୍ଡ ନାଟକର ଅଭିନୟ କରୁଅଛି ତାହାହିଁ ଜୀବନ ! ଏହି ଜୀବନକୁ ଚିତ୍ର କରିବାକୁ ହେଲେ ଏହାର କ୍ଷୁଦ୍ର ବୃହତ୍ ଦୃଶ୍ୟ ଦୃଶ୍ୟାତୀତ ରୂପକୁ ଠିକ୍ ସେହିପରି ସମଗ୍ର ରୂପରେ ହିଁ ଚିତ୍ରିତ କରିବାକୁ ହେବ । ଏହି ଗଳ୍ପଟିରେ ତାହାହିଁ ସୁସାଧିତ ହୋଇଛି । ମୂକ, ଜଡ଼ ପ୍ରକୃତି ମରୁଭୂମି, ପଶୁ ଜଗତର ବ୍ୟାଘ୍ରୀ ଓ ମାନବ ସମାଜର ପ୍ରତିନିଧି, ପଳାତକ ସୈନିକ—ଏହି ତ୍ରୟୀଙ୍କ ସମାବେଶରେ ଏକ ଅଖଣ୍ଡ ନାଟକର ଅଭିନୟ ହୋଇଅଛି । ମରୁଭୂମି, ମଣିଷ ଓ ପଶୁ ଏହି ତ୍ରୟୀ ହିଁ ପାତ୍ର-ପାତ୍ରୀ । ଏହି ଜୀବନ ନାଟକର ରସ ପରିଣତି ପାଇଁ ଏହି ତିନିଜଣଙ୍କର ନିବିଡ଼ ପ୍ରକୃତି ପରସ୍ପରର ପରିପୂରକ ହୋଇଅଛି । ମନୁଷ୍ୟ ଏବଂ ବ୍ୟାଘ୍ରୀ ଉଭୟଙ୍କର ଦେହ ରହସ୍ୟ ଯେ ଅଭିନ୍ନ, ପ୍ରାଣୀର ଗୂଢ଼ତମ ପିପାସା ଦୃଷ୍ଟିରୁ ଦୁଇଜଣଙ୍କ ମଧ୍ୟରେ ଯେ କୌଣସି ଭେଦ ନାହିଁ, ବ୍ୟାଘ୍ରୀ ମଧ୍ୟ ମାନବୀରେ ପରିଣତ ହୋଇପାରେ ଏହାହିଁ ଗୋଟିଏ ଘଟଣାକୁ ଉପଜୀବ୍ୟ କରି ଲେଖକ ଆଶ୍ଚର୍ଯ୍ୟ ନୈପୁଣ୍ୟ ସହକାରେ ପ୍ରକଟିତ କରାଇ ଅଛନ୍ତି । ମରୁଭୂମିର ଭୀଷଣ ଶୂନ୍ୟତା ଓ ତାହାର ଗମ୍ଭୀର ସୁନ୍ଦରତା ସବୁ ସୈନିକଟିକୁ ଆଚ୍ଛନ୍ନ କରିବା ଯୋଗୁ ଯେ ଏହି ଘଟଣା ସମ୍ଭବପର, ଲେଖକ ସେହି ତତ୍ତ୍ୱଟି ମଧ୍ୟ ବିଶେଷ କରି ଆମ ମନରେ ମୂର୍ତ୍ତିତ କରି ଦେଇଛନ୍ତି । ଏଣୁ ଗଳ୍ପ ସାହିତ୍ୟରେ ଏହା ଏକ ଅବିନଶ୍ୱର ରଚନା ।

ବାଲ୍‌ଜାକଙ୍କ ମୃତ୍ୟୁପରେ ଶତାଧିକ ବର୍ଷ ମଧ୍ୟରେ ପୃଥିବୀର ସାହିତ୍ୟ କ୍ଷେତ୍ରରେ କେତେ ମତବାଦ, ପରୀକ୍ଷା ନିରୀକ୍ଷାର ସୂତ୍ରପାତ ହେଲାଣି, କେତେ ରୀତି ଉପେକ୍ଷିତ ଓ କେତେ ନୂତନ ରୀତିର ପ୍ରବର୍ତ୍ତନ ହେଲାଣି, ସେହିପରି ବାସ୍ତବବାଦର ଦ୍ରୁତ ଅଭ୍ୟୁତ୍ଥାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ସମ୍ପ୍ରସାରଣ ଫଳରେ ରୋମାଣ୍ଟିକ କଳ୍ପନା—ପ୍ରଧାନ ସ୍ୱୈରବାଦୀ ସାହିତ୍ୟ କୌଣସି ଆଲୋଚକଙ୍କ ଦ୍ୱାରା ଅନାଦରଣୀୟ

ପ୍ରତିପାଦିତ ହୋଇଛି । ମାତ୍ର କଳ୍ପନାକୁ ଉଦ୍ଦୀପ୍ତ କରି ପାଠକ ଚିତ୍ତକୁ ସମ୍ମୁଗ୍ଧ ଓ ପରିତୃପ୍ତ କରିବାରେ ଓ ଅଜ୍ଞେୟ ମାନସଲୋକର ବିଚିତ୍ର ରୂପ ଚିତ୍ରଣ କରିବାର ସାଫଲ୍ୟ ଯୋଗୁଁ ବାଲଜାକଙ୍କ ସାହିତ୍ୟର ଚିରନ୍ତନ ମୂଲ୍ୟ ସୁପ୍ରମାଣିତ ହୋଇଅଛି ।



# ଚାର୍ଲସ୍ ଡିକେନ୍ସ

ଚାର୍ଲସ ଡିକେନସ୍‌ଙ୍କୁ ଇଂରାଜୀ ଉପନ୍ୟାସର ଜନକ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ପିତାଙ୍କ ନାମ ଜନ୍ ଓ ମାତାଙ୍କ ନାମ ଏଲିଜାବେଥ୍ ଡିକେନସ୍ । ଖ୍ରୀ: ୧୮୧୨ରେ ପୋର୍ଟ ସି ରେ (Port sea) ସେ ଜନ୍ମଗ୍ରହଣ କରିଥିଲେ । ପିତାମାତାଙ୍କର ସେ ଥିଲେ ଦ୍ୱିତୀୟ ସନ୍ତାନ । ଚାର୍ଲସଙ୍କ ପିତା ନୌ-ବିଭାଗର ଏକ ଅଫିସରେ କିରାଣୀ କାମ କରୁଥିଲେ । ଜନୈକ ସହକର୍ମୀଙ୍କ ଭଗିନୀଙ୍କୁ ବିବାହ କରିଥିଲେ । ସେ ଥିଲେ ଯେପରି ବିଳାସପ୍ରିୟ ସେପରି ମଦ୍ୟପ । ବୈବାହିକ ଜୀବନର ପ୍ରାରମ୍ଭରୁ ହିଁ ତାଙ୍କର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ-ପଡ଼ିଥିଲା । ଅନ୍ୟଠାରୁ ଧାର କରିବାକୁ ସେ ସର୍ବଦା ପ୍ରସ୍ତୁତ ଥିଲେ, ମାତ୍ର ତାହା ପରିଶୋଧ କରିବାକୁ ଆଦୌ ମନଯୋଗୀ ହେଉ ନ ଥିଲେ ।

ଚାର୍ଲସ ଜନ୍ମ ହେବାର ଦୁଇ ବର୍ଷ ପରେ ଜନ୍‌ଙ୍କର ଲଣ୍ଡନକୁ ବଦଳି ହେଲା । ଏହାର ତିନ ବର୍ଷ ପରେ ଚାଥାମ୍ ସହରକୁ ସେ ବଦଳି ହୋଇଗଲେ । ଚାଥାମ୍‌ର ଏକ ସ୍କୁଲରେ ପଢ଼ିବା ଲାଗି ଚାର୍ଲସଙ୍କ ନାମ ଲେଖାହେଲା । ଘରେ ବାପାଙ୍କର କେତେକ ପୁସ୍ତକ ଥିଲା । ଚାର୍ଲସ୍ ସେଗୁଡ଼ିକୁ ବାରମ୍ବାର ପଢୁଥିଲେ । ଶୈଶବରେ ପଢ଼ିଥିବା ସେଇ ସମସ୍ତ ପୁସ୍ତକ ପରବର୍ତ୍ତୀ କାଳରେ ତାହାଙ୍କ ଉପନ୍ୟାସ ରଚନା ରୀତିକୁ ଗଭୀର ଭାବେ ପ୍ରଭାବିତ କରିଥିଲା । ଖ୍ରୀ: ୧୮୮୨ରେ ଜନ୍‌ଙ୍କର ଲଣ୍ଡନ ବଦଳି

ହେବାରୁ ସେ ସେଠାକୁ ସପରିବାର ଯାତ୍ରା କଲେ । ସେତେବେଳକୁ ତାଙ୍କର ପାଞ୍ଚଗୋଟି ସନ୍ତାନ । ମାତ୍ର ଚାର୍ଲ୍‌ସ 'ଗ୍ରୁଥାମ୍'ରେ ପଢ଼ୁଥିବା ଯୋଗୁ କେତେମାସ ପାଇଁ ତାଙ୍କୁ ସେଠାରେ ଏକାକୀ ରହିବାକୁ ପଡ଼ିଲା । ଲଣ୍ଡନର ସମୀପବର୍ତ୍ତୀ କ୍ୟାମ୍‌ଡେନ ସହରରେ ଜନ୍ ଗୋଟିଏ ଭଡ଼ାଘରେ ରହିଲେ । ଚାର୍ଲ୍‌ସ୍ ମଧ୍ୟ କେତେମାସ ପରେ ସେଠାକୁ ଆସିଲେ । ମାତ୍ର ଅମିତବ୍ୟୟିତାଜନିତ ଆର୍ଥିକ ଦୁରବସ୍ଥା ଯୋଗୁ ଜନ୍ ବାଳକ ଚାର୍ଲ୍‌ସ୍‌ଙ୍କୁ ଆଉ ସ୍କୁଲରେ ପଢ଼ାଇବାକୁ ସମର୍ଥ ହୋଇପାରି ନଥିଲେ । ପଢ଼ାପଢ଼ି ତ ହୋଇପାରିଲା ନାହିଁ, ପରନ୍ତୁ ଚାର୍ଲ୍‌ସ୍‌ଙ୍କୁ ଘରେ ଛୋଟ ପିଲାମାନଙ୍କୁ ଜଗିବା ଠାରୁ ଆରମ୍ଭ କରି ଜୋତା ସଫା କରିବା, ଲୁଗା ସଫା କରିବା ପର୍ଯ୍ୟନ୍ତ ଘରର ନାନାପ୍ରକାର ତୁଚ୍ଛ କାମ ବାରମ୍ବାର ସମ୍ପନ୍ନ କରିବାକୁ ପଡ଼ୁଥିଲା । ଏଣୁ ଅବସର ପାଇଲେ ସେ ଲକ୍ଷ୍ୟହୀନ ଭାବେ ସହର ଓ ତାର ନିକଟବର୍ତ୍ତୀ ଅଞ୍ଚଳରେ ଇତଃସ୍ତତଃ ଭ୍ରମଣ କରୁଥିଲେ ।

ଜନ୍‌ଙ୍କ ପରିବାରର ଅବସ୍ଥା କ୍ରମେ ଶୋଚନୀୟ ହୋଇପଡ଼ିଲା । ଫଳରେ ଚାର୍ଲ୍‌ସଙ୍କ ମାତା ଭାରତରେ ରହୁଥିବା ବ୍ୟକ୍ତିଙ୍କ ସନ୍ତାନମାନଙ୍କୁ ପଢ଼ାଇବା ଲାଗି ବିଦ୍ୟାଳୟଟିଏ ସ୍ଥାପନ କରିବାକୁ ମନସ୍ଥ କଲେ । ଟଙ୍କା କରଜ କରି ସେ ଆଉ ଗୋଟିଏ ଘର ଭଡ଼ା ନେଲେ ଓ ଏ ସମ୍ପର୍କରେ ପ୍ରଚାରପତ୍ର ଛପାଇଲେ । ଚାର୍ଲ୍‌ସ ଓ ତାଙ୍କର ଭାଇଭଉଣୀ ସେଇସବୁ ପ୍ରଚାରପତ୍ରକୁ ନେଇ ପାଖ ଚିଠି ବାକ୍ସମାନଙ୍କରେ ପକାଇ ଦେଇ ଆସିଲେ । ମାତ୍ର ଦୁର୍ଭାଗ୍ୟକୁ ଜଣେହେଲେ ଛାତ୍ର ସେଇ ପ୍ରସ୍ତାବିତ ବିଦ୍ୟାଳୟକୁ ଆସିଲେ ନାହିଁ । ପରିବାର ଋଣ କ୍ରମେ ବଢ଼ୁଥାଏ । ଜନିଷପତ୍ର ଗୋଟି ଗୋଟି ହୋଇ ବିକ୍ରୀ ହେଲା । ଏପରିକି ଚାର୍ଲ୍‌ସ୍‌ଙ୍କର ସବୁଠୁ ପ୍ରିୟ ପୁସ୍ତକାବଳୀକୁ ମଧ୍ୟ ଏକ ପୁସ୍ତକ ବିକ୍ରେତାଙ୍କୁ ବିକ୍ରୟ କରିଦେବାକୁ ପଡ଼ିଲା ।

ଚାର୍ଲ୍‌ସ୍‌ଙ୍କ ମାତାଙ୍କ ଭଉଣୀ ଥିଲେ ଏକ କାରଖାନାର ଅଂଶୀଦାର । ସେ ଚାର୍ଲ୍‌ସ୍‌ଙ୍କୁ ସାପ୍ତାହିକ ମାତ୍ର ୬/୭ ସିଲିଙ୍ଗ୍ ପାରିଶ୍ରମିକରେ ଏକ ଚାକିରି କରିଦେବାକୁ ପ୍ରସ୍ତାବ କଲେ । ଚାର୍ଲ୍‌ସ୍‌ଙ୍କ ପିତାମାତା ଏଥିରେ ଆଗ୍ରହର ସହିତ ରାଜି ହୋଇଗଲେ । ମାତ୍ର ଏହା ଚାର୍ଲ୍‌ସ୍‌ଙ୍କ ମନରେ ଗଭୀର ନୈରାଶ୍ୟ ଆଣି ଦେଇଥିଲା । ସେତେବେଳେ ତାଙ୍କୁ ମାତ୍ର

ବାରବର୍ଷ ବୟସ । ଉତ୍ସାହୀ, ବୁଦ୍ଧିମାନ ଓ ଚଞ୍ଚଳ ଚାର୍ଲ୍‌ସ୍ ଭାବରେ ସମସ୍ତେ ଯେମିତ ତାଙ୍କୁ ଉପେକ୍ଷା କରୁଛନ୍ତି । ସେ ଯେପରି ଏକ ସମାଜ ଓ ପରିବାରର ପରିତ୍ୟକ୍ତ ବାଳକ ।

ଏହାର ଅଳ୍ପଦିନ ପରେ ବହୁଦିନରୁ ଆଶଙ୍କା କରାଯାଉଥିବା ବିପଦ ହଠାତ୍ ଘଟିଗଲା । ଋଣ ପରିଶୋଧ କରି ନ ପାରିବା ଦୋଷରୁ ଜନ୍‌ଙ୍କୁ କାରାଗାରରେ ବନ୍ଦୀ ହେବାକୁ ହେଲା । କିଛୁଦିନ ପରେ ଚାର୍ଲ୍‌ସ୍‌ଙ୍କ ମା ପରିବାରର ଯାହାକିଛି ଅବଶିଷ୍ଟ ଥିଲା ସେ ସମସ୍ତ ବିକ୍ରୟ କରି ସନ୍ତାନମାନଙ୍କୁ ସାଥିରେ ନେଇ ସ୍ୱାମୀଙ୍କ ସହିତ ବନ୍ଦୀଶାଳାରେ ରହିଲେ । ଋଣ ପରିଶୋଧ ନ କରି ପାରିଲେ ସେତେବେଳେ ଲଣ୍ଡନରେ ମାର୍ଶାଲ ସି (Marsbal sea) ଏବଂ ଫ୍ଲିଟ୍ (fleet) ଅଞ୍ଚଳରେ ଦୁଇଟି ବନ୍ଦୀଶାଳା ଥିଲା । ତାହା ଥିଲା ଅତ୍ୟନ୍ତ ଅସ୍ୱାସ୍ଥ୍ୟକର, ସନ୍ତସନ୍ତିଆ ଓ ବହୁ ବନ୍ଦୀ ପରିପୂର୍ଣ୍ଣ । ବନ୍ଦୀର ପରିବାରବର୍ଗ ଇଚ୍ଛାକଲେ ବନ୍ଦୀଶାଳାରେ ଆସି ରହିବା ମଧ୍ୟ ସେତେବେଳେ ଆଇନାନୁମୋଦିତ ଥିଲା । ଚାର୍ଲ୍‌ସ୍ କାରଖାନାରେ କାମ କରୁଥିଲେ ଏବଂ କାମରୁ ଆସି ବନ୍ଦୀଶାଳାରେ ପରିବାରବର୍ଗ ସହିତ ରହୁଥିଲେ । ପୁଣି ସକାଳେ ଖାଇ କାମକୁ ଚାଲି ଯାଉଥିଲେ । ସେ ଯେଉଁ କାମ କରୁଥିଲେ, ତାହା ଥିଲା ଅତି ସହଜ । ଏହା ହେଉଛି, ବୋତଲ ସଫା କରିବା, ତା’ ଦେହରେ ଲେବଲ୍ ମାରିବା, ଠିପିଦେଇ ସେଗୁଡ଼ିକୁ ଏକାଠି ବାନ୍ଧିବା । ସନ୍ଧ୍ୟାବେଳେ ସେ ଲଣ୍ଡନ ସହରରେ ବୁଲି ବୁଲନ୍ତି । ଟେମ୍‌ସ ନଦୀକୂଳର ଦୃଶ୍ୟ, ଅଦ୍ଭୁତ ସ୍ଥାନ ସବୁ ପରିଦର୍ଶନ କରନ୍ତି । ସେଇ ବିରାଟ ନଗରୀର ବୈଚିତ୍ର୍ୟ ତାଙ୍କୁ ସେତେବେଳେ ବିସ୍ମିତ ଓ ବିଚିତ୍ର କଳ୍ପନାରେ ଅଭିଭୂତ କରି ଦେଉଥିଲା । ତାହାଙ୍କ ‘ଅଲିଭର ଟୁଇଷ୍ଟ’ ଓ ‘ଡେଭିଡ କପର ଫିଲ୍ଡ’ ଉପନ୍ୟାସ ଦୁଇଟି ତାହାଙ୍କ ଶୈଶବ ଓ କୈଶୋର ଜୀବନକୁ ଭିତ୍ତିକରି ରଚିତ ।

ପୂର୍ବରୁ ଜନ୍‌ଙ୍କ ବଡ଼ଭାଇ ମରିଯାଇଥିଲେ । ଖ୍ରୀ: ୧୮୨୪ ଏପ୍ରିଲ ମାସରେ ବଡ଼ଭାଇଙ୍କ ସ୍ତ୍ରୀର ମୃତ୍ୟୁ ହେବାରୁ କୌଣସି ମତେ ଜନ୍‌ଙ୍କର ଋଣ ପରିଶୋଧ ହୋଇପାରିଲା ଓ ସେ ବନ୍ଦୀଶାଳାରୁ ମୁକ୍ତି ପାଇଲେ । ପୁଣି ସେ କ୍ୟାମଡ଼େନ ସହରରେ ଆସି ରହିଲେ ଓ ନୌ ବିଭାଗ ଅଫିସ୍‌ରେ କାମ କଲେ । ଚାର୍ଲ୍‌ସ୍ ସେହିପରି କାରଖାନାରେ

କେତେକ ଧୋଉଥାନ୍ତି । ପରେ ପିତାଙ୍କ ଯୋଗୁ ସେ ସେହି କାମରୁ ନିଷ୍କୃତି ପାଇଥିଲେ । ଏଥିରେ ତାଙ୍କର ଆନନ୍ଦର ସୀମା ନଥିଲା । ମାତ୍ର ମା ବୃଦ୍ଧି ଥିଲେ ସେ ପୁନରପି ଯାଇ ସେହି କାମରେ ଯୋଗ ଦିଅନ୍ତୁ । ପୁଅ ଯେଉଁ ସପ୍ତାହକୁ ଛଅ ସିଲିଙ୍ଗ୍ ପାଇବାର ଲୋଭ ସେ ତ୍ୟାଗ କରିପାରୁ ନଥିଲେ । ଏଥିପାଇଁ ପରବର୍ତ୍ତୀ କାଳରେ ଡିକେନ୍ସ ମାଆଙ୍କୁ କ୍ଷମା କରିପାରି ନଥିଲେ । ଯାହାହେଉ, ତାଙ୍କର ପିତା ସ୍ତ୍ରୀଙ୍କର କୌଣସି କଥା ନ ଶୁଣି ଚାର୍ଲସ୍‌ଙ୍କୁ ପଢ଼ିବା ଲାଗି ସ୍କୁଲକୁ ପଠାଇଲେ । ମାତ୍ର ସେହି କାରଖାନାରେ ଅଳ୍ପ କେତେମାସ ପାଇଁ ସେ ଯେଉଁ କାମ କରୁଥିଲେ ତାହା ଥିଲା ତାଙ୍କ ପକ୍ଷେ ଅତ୍ୟନ୍ତ ଅପମାନ ଓ ଲଜ୍ଜାଜନକ । ପରବର୍ତ୍ତୀ କାଳରେ ଏହାର ସ୍ମୃତି ତାଙ୍କୁ ବ୍ୟଥିତ ଓ ମର୍ମାହତ କରୁଥିଲା । ଏହାକୁ ସେ ପିତାମାତାଙ୍କର ଚରମ ନିଷ୍ଠୁରତା ଓ ହୃଦୟହୀନତା ବୋଲି ମନେ କରୁଥିଲେ ।

ଜନ୍‌ଙ୍କ ଆବେଦନ କ୍ରମେ ତାଙ୍କୁ ବାର୍ଷିକ ୧୪୫ ପାଉଣ୍ଡ ପେନସନ ମିଳିଲା । ସେତିକ ଅର୍ଥରେ ଛଅଟି ପିଲାଙ୍କୁ ଚଳାଇବା କଷ୍ଟକର । ଏଣୁ ସେ ଉପାର୍ଜନର ଅନ୍ୟପନ୍ଥା ଅନୁସନ୍ଧାନ କରିବାକୁ ବାଧହେଲେ । ସର୍ଟହ୍ୟାଣ୍ଡ ଶିଖି ପାର୍ଲାମେଣ୍ଟାରୀ ରିପୋର୍ଟର ଭାବେ ମଧ୍ୟ ସେ କିଛି ଅଧିକ ରୋଜଗାର କରିବାକୁ ସମର୍ଥ ହେଲେ । ଏଣେ ଚାର୍ଲସ୍‌ଙ୍କ ପାଠପଢ଼ା ଚାଲିଥାଏ । ପନ୍ଦର ବର୍ଷ ହେବାପର୍ଯ୍ୟନ୍ତ ସେ ସ୍କୁଲରେ କୌଣସିମତେ ପାଠ ପଢ଼ିଲେ । ତାପରେ ଜଣେ ଆଇନଜୀବୀଙ୍କ ପାଖରେ ତାଙ୍କୁ କେତେମାସ କାମ କରିବାକୁ ପଡ଼ିଲା । ପରେ ପିତାଙ୍କ ଉଦ୍ୟମରେ ସେ ଆଉ ଜଣେ ଓକିଲଙ୍କ ପାଖେ ମୋହରିର କାମରେ ଯୋଗଦେଲେ । ସେତେବେଳେ ହେଲି କାମ କରି ସେ ସପ୍ତାହକୁ ଉପାର୍ଜନ କରୁଥିଲେ ମାତ୍ର ପନ୍ଦର ଶିଲିଙ୍ଗ୍ । ଏଣୁ ଅଧିକ ଉପାର୍ଜନ କରିବା ଲକ୍ଷ୍ୟରେ ସେ ଅବସର ସମୟରେ ସର୍ଟହ୍ୟାଣ୍ଡ ଶିଖିବାକୁ ଆରମ୍ଭ କଲେ । ଦେଢ଼ବର୍ଷ ଶିଖିବା ପରେ ସେ ସେହି ବିଷୟରେ ଉତ୍ତମ ଦକ୍ଷତା ଅର୍ଜନ କରିପାରିଥିଲେ ଓ ରିପୋର୍ଟର ଭାବେ କାର୍ଯ୍ୟ କରିବାକୁ ଆରମ୍ଭ କଲେ । ଆପଣାର କାର୍ଯ୍ୟଦକ୍ଷତା ବଳରେ ଦଶବର୍ଷ ମଧ୍ୟରେ ସେ ପାର୍ଲାମେଣ୍ଟାରୀ ରିପୋର୍ଟର ହୋଇପାରିଥିଲେ । ପାର୍ଲାମେଣ୍ଟର କମିସନ ସଭାର ବକ୍ତୃତାମାନଙ୍କର

ବିବରଣୀ ପ୍ରସ୍ତୁତ କରିବାଲାଗି ତାଙ୍କୁ ଏକ ପତ୍ରିକା ରିପୋର୍ଟର ଭାବେ ନିଯୁକ୍ତ କରାଗଲା । ସଠିକଭାବେ ବିବରଣୀ ଲେଖିବାରେ ସେତେବେଳେ ସେ ଥିଲେ ଜଣେ ସୁଦକ୍ଷ ଓ ଅପ୍ରତିଦ୍ୱନ୍ଦୀ ରିପୋର୍ଟ ଲେଖକ ।

ଇତ୍ୟବସରରେ ସେ ମେରିଆ ବେଡ୍‌ନେଲେ ନାମକ ଜଣେ ଝିଅକୁ ଭଲପାଇଁ ବସିଲେ । ମେରିଆ ଥିଲେ ଜଣେ ବ୍ୟାଙ୍କ ମ୍ୟାନେଜରଙ୍କ କନ୍ୟା । ଚାର୍ଲସଙ୍କୁ ସେ ବହୁଭାବରେ ଉତ୍ସାହ ଦେଉଥିଲେ ହେଁ ତାଙ୍କୁ ବିବାହ କରିବା ଲାଗି ସେ ଆଦୌ ଆଗ୍ରହଶୀଳା ନ ଥିଲେ । କେବଳ ପ୍ରେମିକା ହେବାର ଗୌରବ ଓ ଆତ୍ମସନ୍ତୋଷ ପାଇଁ ହିଁ ସେ ଚାହିଁଥିଲେ ଚାର୍ଲସଙ୍କ ସାହଚର୍ଯ୍ୟ । ମାତ୍ର ସରଳବିଶ୍ୱାସୀ ଚାର୍ଲସ ସେତେବେଳେ ପ୍ରଣୟ ନିଶାରେ ଏକପ୍ରକାର ଆତ୍ମବିଭୋର । ଯାହାହେଉ ଦୁଇ ବର୍ଷ ପରେ ଆଦ୍ୟ ପ୍ରଣୟର ଚୂଡ଼ାନ୍ତ ନିଷ୍ପତ୍ତି ହୋଇଗଲା । ଅତ୍ୟନ୍ତ ଭାବପ୍ରବଣ ହୋଇ ଦୁହେଁ ଦୁହିଁଙ୍କ ଉପହାର ସାମଗ୍ରୀ ପରସ୍ପରକୁ ଫେରାଇ ଦେଲେ ଓ ମେରିଆ ଅନ୍ୟଏକ ଯୁବକକୁ ବିବାହ କରି ଦୂରକୁ ଚାଲିଗଲେ । ସମସ୍ତ ଅନ୍ତର ଦେଇ ଚାର୍ଲସ ଯାହାକୁ ଭଲପାଉଥିଲେ, ତାହାର ଉପେକ୍ଷା ପ୍ରଥମପ୍ରେମର ଏହି କରୁଣ ପରିଣତି ଚାର୍ଲସଙ୍କୁ ଗଭୀରଭାବେ ମର୍ମାହତ କରିଦେଲା । ମେରିଆ ଅନ୍ୟ ଏକ ବିବାହ କରି ଚାଲିଗଲା ପରେ ବହୁବର୍ଷ ପର୍ଯ୍ୟନ୍ତ ସେମାନଙ୍କ ମଧ୍ୟରେ ଆଉ ସାକ୍ଷାତ ହୋଇ ନ ଥିଲା । ବହୁବର୍ଷ ପରେ ଡ଼ିକେନ୍‌ସଙ୍କ ଖ୍ୟାତି ଯେତେବେଳେ ବହୁବିସ୍ତୃତ, ସେତିକିବେଳେ ଦିନେ ଡ଼ିକେନ୍‌ସ ଓ ତାଙ୍କ ସ୍ତ୍ରୀଙ୍କ ସହିତ ଭୋଜନ କରିବାର ସୁଯୋଗ ମିଳିଥିଲା ମେରିଆଙ୍କୁ । ସେତେବେଳକୁ ସେ ଜଣେ ବୟସ୍କୁଳା ଓ ଅତି ସାଧାରଣ ନାରୀ । ମେରିଆଙ୍କ ଏଇ ଦୁଇଟି ରୂପକୁ ଡ଼ିକେନ୍‌ସ ଏକ ଉପନ୍ୟାସରେ ରୂପାୟିତ କରିଯାଇଅଛନ୍ତି ।

ଚାର୍ଲସଙ୍କୁ ବାଇଶ ବର୍ଷ ବୟସ ହୋଇଥାଏ । ସେତେବେଳେ ସେ ସପ୍ତାହକୁ ୫ ଗିନି ବେତନ ପାଉଥାନ୍ତି । ସେତିକି ଅର୍ଥରେ ବେଶ୍ ଭଲରେ ଚଳିବା କଥା । ଯେଉଁ ଅଫିସରେ ସେ କାମ କରୁଥିଲେ ତାରି ନିକଟବର୍ତ୍ତୀ ସ୍ଥାନରେ ସେ ଗୋଟିଏ ଘରଭଡ଼ା ନେଲେ କାମ କରିବାକୁ ସୁବିଧା ହେବ ବୋଲି । ମାତ୍ର ସେଇ ଘରଟିକୁ ଆବଶ୍ୟକ ଉପକରଣରେ

ସଜ୍ଜିତ କରିବା ପୂର୍ବରୁ ହିଁ ଋଣ ଓ ଅପବ୍ୟୟ ଯୋଗୁଁ ତାଙ୍କ ପିତାଙ୍କୁ ପୁନର୍ବାର କାରାରୁଦ୍ଧ ହେବାକୁ ପଡ଼ିଲା । ସେଥିପାଇଁ ଚାର୍ଲ୍‌ସଙ୍କୁ ଅର୍ଥ ଯୋଗାଇବାକୁ ପଡ଼ିଲା ଓ ପରିବାରବର୍ଗଙ୍କ ଦାୟିତ୍ୱ ମଧ୍ୟ ତୁଲାଇବାକୁ ପଡ଼ିଲା । ଚାର୍ଲ୍‌ସ ଥିଲେ ଉଦାରମନା ଓ ମୁକ୍ତହସ୍ତ । ଯେ କୌଣସି ବିପଦକୁ ସେ ଧୈର୍ଯ୍ୟର ସହିତ ସମ୍ମୁଖୀନ ହୋଇଥିଲେ । ତାହାଙ୍କ ପରିବାରବର୍ଗ ଓ ପରେ ତାହାଙ୍କ ସ୍ତ୍ରୀଙ୍କ ପରିବାର ମଧ୍ୟ ଚାର୍ଲ୍‌ସଙ୍କ ଉଦାରତାର ସୁଯୋଗ ନେଇ ତାଙ୍କୁ ବ୍ୟତିବ୍ୟସ୍ତ କରିବାକୁ ଛାଡ଼ୁନଥିଲେ । ଚାର୍ଲ୍‌ସଙ୍କୁ ଏଥିପାଇଁ ଗୁଡ଼ାଏ ଦୁର୍ବଳ, ଅପଦାର୍ଥଙ୍କ ଲାଗି ଅର୍ଥ ଓ ଶକ୍ତିକୁ ଯେ ଗାଡ଼ କରିବାରେ ନିୟୋଜିତ ହେବାକୁ ପଡ଼ୁଥିଲା ।

ଶର୍ଟହ୍ୟାଣ୍ଡର ଭାବେ କର୍ଷେ କାମକଲା ପରେ ଡିକେନ୍‌ସ ସାହିତ୍ୟ ରଚନାରେ ମନୋନିବେଶ କଲେ । ଲଣ୍ଡନ ଜୀବନକୁ ନେଇ ସେ ଦୁଇଟି ପତ୍ରିକାରେ ଧାରାବାହିକ ଭାବେ ଗୁଡ଼ାଏ ନକ୍‌ସା ଲେଖିଥିଲେ । ସେଥିପାଇଁ କିଛି ପାରିଶ୍ରମିକ ତାଙ୍କୁ ମିଳି ନ ଥିଲା । ମାତ୍ର ଏହି ଲେଖାଗୁଡ଼ିକ ସବୁରି ଦୃଷ୍ଟି ଆକର୍ଷଣ କରିପାରିଥିଲା । ସେତେବେଳେ ଏକପ୍ରକାର ହାସ୍ୟରସା-ତ୍ମକ ସଚିତ୍ର ଓ ଘଟଣାବହୁଳ ଉପନ୍ୟାସ (anecdotal Novel) ଖୁବ୍ ଜନପ୍ରିୟତା ଅର୍ଜନ କରିଥାଏ । ପ୍ରକାଶକମାନଙ୍କ ଅନୁରୋଧରେ ବିଶିଷ୍ଟଲେଖକମାନେ ଏହିଧରଣର ଲେଖା ଲେଖୁଥାନ୍ତି । ଚାପମ୍ୟାନ ହଲ ଅନୁଷ୍ଠାନର ଜଣେ ଅଂଶୀଦାର ଚାର୍ଲ୍‌ସଙ୍କୁ ସୌଖିନ ଖେଳାଳୀଙ୍କ କ୍ଲବ ବିଷୟରେ ଏକ ବର୍ଣ୍ଣନାତ୍ମକ ରଚନା ଲେଖିଦେବାକୁ ଅନୁରୋଧ କଲେ । ଏହି ଲେଖା ଲେଖିବା ଦ୍ୱାରା ଜଣେ ବିଶିଷ୍ଟ ଚିତ୍ରକରଙ୍କୁ ଚିତ୍ର କରିବାକୁ ସୁବିଧା ହେବାର ସମ୍ଭାବନା ଥିଲା । ସେ ଏଥିପାଇଁ ଚାର୍ଲ୍‌ସଙ୍କୁ ମାସିକ ୧୪ ପାଉଣ୍ଡ ପାରିଶ୍ରମିକ ଓ ବିକ୍ରିବଟା ଉପରେ ଆଉ ଅଧିକ କିଛିଦେବାକୁ ପ୍ରସ୍ତାବ କଲେ । ମାତ୍ର ଡିକେନ୍‌ସ ପ୍ରଥମେ ଏ ବିଷୟରେ ଅନିଚ୍ଛା ପ୍ରକାଶ କରି କହିଲେ—"ମୁଁ ଖେଳ ବିଷୟ କିଛି ଜାଣେ ନାହିଁ ଅଥବା ଅନ୍ୟର ନିର୍ଦ୍ଦେଶାନୁସାରେ ମଧ୍ୟ ଲେଖିପାରେନା ।" ମାତ୍ର ପରେ ସେ ଏହା ଲେଖିବାକୁ ରାଜି ହେଲେ । ସେତେବେଳେ ଅର୍ଥର ପ୍ରଲୋଭନକୁ ଏଡ଼ିଦେବା ତାଙ୍କ ପକ୍ଷେ ସହଜ ନ ଥିଲା । ଆଶ୍ଚର୍ଯ୍ୟର କଥା, ଏହିପରି ଭାବେ ଅନୁରୁଦ୍ଧ ହୋଇ ଡିକେନ୍‌ସ ଲେଖିଥିଲେ ଏକ ବିଖ୍ୟାତ ରଚନା

"The Posthumous Papers of the Pickwick Club" ପତ୍ରିକାର ପ୍ରଥମ ପାଞ୍ଚଗୋଟି ସଂଖ୍ୟାରେ ଏହା ବିଶେଷ ସାଫଲ୍ୟ ଅର୍ଜନ କରିପାରିନଥିଲା । ମାତ୍ର ପରେ ପତ୍ରିକାଟିର ଗ୍ରାହକସଂଖ୍ୟା ଏବଂ ରଚନା ଯେ ଗୁଁ ଆଶାତୀତରୂପେ ଖୁବ ବଢ଼ିଯାଇଥିଲା । ବହି ଆକାରରେ ସେଇ ଲେଖାଗୁଡ଼ିକ ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ଡିକେନ୍‌ସଙ୍କ ଖ୍ୟାତି ବଢ଼ିଯାଇଥିଲା । ସେତେବେଳକୁ ତାଙ୍କର ବୟସ ମାତ୍ର ପଚିଶ ବର୍ଷ ।

ଏହି ପୁସ୍ତକଟି ପ୍ରକାଶିତ ହେବାର ୨।୩ ଦିନ ପୂର୍ବରୁ ଡିକେନ୍‌ସଙ୍କ ପରିଣୟ ମଧ୍ୟ ସଂପନ୍ନ ହୋଇଗଲା । ଯେଉଁ ପତ୍ରିକାରେ ସେ କାମ କରୁଥିଲେ ସେହି ପତ୍ରିକାର କାମ କରୁଥିବା ତାଙ୍କର ସହକର୍ମୀ ଜର୍ଜ ହୋଗାର୍ଥଙ୍କ ଜ୍ୟେଷ୍ଠକନ୍ୟା କେଟ୍‌ଙ୍କୁ ବିବାହ କରିଥିଲେ । ହୋଗାର୍ଥଙ୍କ ଛଅଗୋଟି ପୁଅ ଓ ଆଠଗୋଟି କନ୍ୟା । ଡିକେନ୍‌ସ ଦମ୍ପତି କିଛିଦିନ ଏକତ୍ର ରହିଲା ପରେ କେଟ୍‌ଙ୍କ ଷୋଡ଼ଶ ବର୍ଷୀୟା ସାନଭଉଣୀ ସୁନ୍ଦରୀ ମେରି ଆସି ସେମାନଙ୍କ ଘରେ ରହିଲେ । ଚାର୍ଲ୍‌ସ କ୍ରମେ ମେରିଙ୍କ ପ୍ରତି ଆସକ୍ତ ହୋଇପଡ଼ିଲେ । ସେତେବେଳକୁ କେଟ୍ ସନ୍ତାନସମ୍ଭବା; ସ୍ୱାମୀଙ୍କ ସଙ୍ଗେ ବାହାରକୁ ଯିବା ତାଙ୍କ ପକ୍ଷେ ସମ୍ଭବପର ନଥିଲା । ଏଣୁ ଚାର୍ଲ୍‌ସ୍ ସେତେବେଳେ ମେରିଙ୍କୁ ସବୁଦା ସାଥିରେ ନେଇ ବାହାରକୁ ଯାଉଥିଲେ ।

କିଛିଦିନ ପରେ କେଟ୍‌ଙ୍କର ସନ୍ତାନ ଜାତ ହେଲା । ଯେଉଁ ଛୋଟିଆ ଘରେ ଡିକେନ୍‌ସ ରହୁଥିଲେ, ସେଇଟି ତାଙ୍କ ଚଳିବା ପକ୍ଷେ ଯଥେଷ୍ଟ ହେଉ ନଥିଲା । ଏଣୁ ସେମାନେ ଅନ୍ୟ ଏକ ଭଡ଼ାଘରେ ଯାଇ ରହିଲେ । ମେରି ସେହିପରି ତାଙ୍କ ସହିତ ବାସ କରୁଥାନ୍ତି । ଦିନକୁଦିନ ସେ ଅଧିକ କମନୀୟ, ପ୍ରଫୁଲ୍ଲ ଓ ପ୍ରୀତିପୂର୍ଣ୍ଣ ହୋଇଉଠୁଥାନ୍ତି । ମେ' ମାସର ଏକ ସନ୍ଧ୍ୟା । ଡିକେନ୍‌ସ ମେରି ଓ କେଟ୍‌ଙ୍କୁ ନେଇ ଗୋଟିଏ ଯାତ୍ରାକୁ ଖେଳିବାକୁ ଯାଇଥିଲେ । ଆନନ୍ଦରେ ସମସ୍ତ କଟିଗଲା ପରେ ପ୍ରଫୁଲ୍ଲ ହୃଦୟରେ ସମସ୍ତେ ଘରକୁ ଫେରିଲେ । ମାତ୍ର ଘରେ ପହଞ୍ଚିବା ସଙ୍ଗେ ସଙ୍ଗେ ମେରି ହଠାତ୍ ଅସୁସ୍ଥ ହୋଇପଡ଼ିଲେ । ଡାକ୍ତରଙ୍କୁ ଡକାଗଲା । ମାତ୍ର କେତେଘଣ୍ଟା ମଧ୍ୟରେ ହିଁ ମେରିଙ୍କର ପ୍ରାଣବାୟୁ ଉଡ଼ିଗଲା । ଡିକେନ୍‌ସ ମେରିଙ୍କ ଆଙ୍ଗୁଠିର ମୁଦିଟି କାଢ଼ିନେଇ ନିଜ ଆଙ୍ଗୁଠିରେ ପିନ୍ଧିଲେ । ଏହି

ଘଟଣାଟି ତାଙ୍କ ମନରେ ଏକ ଗଭୀର ଶୋକର ଛାପ୍ ଛାଡ଼ିଦେଲା । ଏହାର କେତୁଦିନ ପରେ ସେ ନିଜ ଡାଏରୀରେ ଲେଖିଥିଲେ—"ସେଇ ହାସ୍ୟମୟୀ, ମଧୁଭାଷିଣୀ ସାଥୀଟି ମୋର ସବୁ ଅନୁଭୂତି ଓ ଭାବନା ପ୍ରତି ସମ୍ବେଦନଶୀଳତା ପ୍ରକାଶ କରିଆସିଛି । ତା' ଭଳି ଦରଦୀ ମୁଁ ଆଉ କାହାକୁ ଦେଖି ନାହିଁ କି ଦେଖିବି ନାହିଁ । ଆଜି ସେ ଆମ ସଙ୍ଗେ ଥାଆନ୍ତା କି ! ତାର ସେଇ ଆନନ୍ଦଦାୟକ ସାହଚର୍ଯ୍ୟ ବ୍ୟତୀତ ମୁଁ ଆଉ କିଛି କାମନା କରୁ ନାହିଁ । ସେ ଚାଲିଯାଇଛି । ଭଗବାନଙ୍କୁ ମୋର ପ୍ରାର୍ଥନା; ତାଙ୍କ ଆଶୀର୍ବାଦରୁ ମୁଁ ଯେପରି ପୁଣି ତା' ସଙ୍ଗେ ମିଳିତ ହେବି ।" ମେରୀଙ୍କ କବର ପାଖେ ତାଙ୍କ ମୃତ ଦେହକୁ ସମାଧିସ୍ଥ କରିବା ଲାଗି ସେ ମୃତ୍ୟୁ ପୂର୍ବରୁ ବ୍ୟବସ୍ଥା କରି ଯାଇଥିଲେ ।

ମେରୀଙ୍କ ମୃତ୍ୟୁର ଆକସ୍ମିକ ଆଘାତର ପରିଣତି ସ୍ୱରୂପ କେଟ୍‌ଙ୍କ ଗର୍ଭପାତ ହେଲା । କେତୁଦିନ ପରେ ସେ ସାମାନ୍ୟ ସୁସ୍ଥ ହେଲେ । ପୂର୍ବର ସରସତା ଫେରି ପାଇବା ଲାଗି ଡିକେନ୍‌ସ୍ ସ୍ତ୍ରୀଙ୍କୁ ସାଙ୍ଗରେ ନେଇ ଇଂଲଣ୍ଡ ବାହାରକୁ ବୁଲିବାକୁ ଗଲେ ।

ଲବ୍‌ଧପ୍ରତିଷ୍ଠ ସାହିତ୍ୟିକମାନଙ୍କର ଜୀବନୀ ସାଧାରଣତଃ କୌତୂହଳ ଉଦ୍ଦୀପକ ବା ଆନନ୍ଦଦାୟକ ହୋଇ ନଥାଏ । ସେମାନେ ସାଧାରଣତଃ ଏକପ୍ରକାର ଧରାବନ୍ଧା ଗୀତ ମାନି ଚଳନ୍ତି । ମାତ୍ର ଡିକେନ୍‌ସଙ୍କ ଜୀବନରେ ଆମେ ଏହାର ବ୍ୟତିକ୍ରମ ଦେଖୁ । ଦୈନିକ କେତେ ଘଣ୍ଟା ପାଇଁ ସେ ଲେଖାଲେଖିରେ ଆପଣାକୁ ନିୟୋଜିତ ରଖୁଥିଲେ । ମାତ୍ର ଅଧିକ ସମୟ ତାଙ୍କୁ ବନ୍ଧୁ କଳାବିତ୍ ଓ ସାହିତ୍ୟିକଙ୍କ ସାହଚର୍ଯ୍ୟରେ କଟାଇବାକୁ ପଡ଼ୁଥିଲା । ବିଖ୍ୟାତ ମହିଳାମାନେ ମଧ୍ୟ ତାଙ୍କ ସାହଚର୍ଯ୍ୟ କାମନା କରୁଥିଲେ । ବିଭିନ୍ନ ଭୋଜିସଭାରେ ସେ ଯେପରି ଯୋଗ ଦେଉଥିଲେ ସେହିପରି ତାଙ୍କୁ ମଧ୍ୟ ଭୋଜି ଦେବାକୁ ପଡ଼ୁଥିଲା । ଏତଦ୍-ବ୍ୟତୀତ ବିଭିନ୍ନ ସ୍ଥାନକୁ ମଧ୍ୟ ସେ ପରିଭ୍ରମଣ ଲାଗି ଯାଉଥିଲେ । ଜନସାଧାରଣଙ୍କୁ ସାକ୍ଷାତ କରୁଥିଲେ । ମୋଟାମୋଟି ଭାବେ ଏହାହିଁ ଥିଲା ଡିକେନ୍‌ସଙ୍କ ଜୀବନର ଗୀତ । ନିଜ ଜୀବଦ୍ଦଶାରେ ସେ ଯେପରି ସାଫଲ୍ୟ ଓ ଗୌରବର ଅଧିକାରୀ ହୋଇପାରିଥିଲେ ତାହା କ୍ୱଚିତ ସାହିତ୍ୟିକଙ୍କ ଭାଗ୍ୟରେ ଘଟିଥାଏ ।

ଡିକେନ୍‌ସ ସର୍ବଦା ଥିଏଟରରେ ଅତ୍ୟନ୍ତ ଅନୁରାଗୀ ଥିଲେ । ଏପରିକି ଅଭିନୟ କରିବା ଅଭିଳାଷରେ ସେ ଜଣେ ଅଭିନେତା ଠାରୁ ମଧ୍ୟ ଅଭିନୟକଳା ଶିକ୍ଷାକରି ତାହା ଅଭ୍ୟାସ କରିଥିଲେ । କେତେ ସମ୍ଭ୍ରାନ୍ତବ୍ୟକ୍ତି ତାଙ୍କୁ ଉଚ୍ଛୃଙ୍ଖଳ ଓ ଗ୍ରାମ୍ୟ ବୋଲି ମନେ କରୁଥିଲେ ହେଁ ସେ ଆପଣାର ସରସତା ମଧୁର ହାସ୍ୟରେ ସମସ୍ତଙ୍କୁ ମୁଗ୍‌ଧ କରି ପାରୁଥିଲେ । କେବେକେବେ ସ୍ତାବକମାନେ ତାଙ୍କୁ ତୋଷାମଦ କରୁଥିଲେ ହେଁ ତାହା ତାଙ୍କ ମନକୁ ବିଭ୍ରାନ୍ତ କରୁ ନ ଥିଲା । ଡିକେନ୍‌ସଙ୍କର ଥିଲା ଅପୂର୍ବ ପର୍ଯ୍ୟବେକ୍ଷଣ ଶକ୍ତି ଓ ପ୍ରଚୁର ସନ୍ଧାନୀ ଦୃଷ୍ଟିଭଙ୍ଗୀ । ସମାଜର ଉଚ୍ଚସ୍ତରର ବ୍ୟକ୍ତିମାନଙ୍କ ସଙ୍ଗେ ସୁପରିଚିତ ହେବାର ସୁଯୋଗ ମଧ୍ୟ ତାଙ୍କୁ ପ୍ରଚୁର ମିଳିଥିଲା । ମାତ୍ର ସେହି ଶ୍ରେଣୀର ଚରିତ୍ରମାନଙ୍କୁ ସମ୍ପୂର୍ଣ୍ଣ ସଜୀବ ଭାବେ ଚିତ୍ର କରିପାରିବାକୁ କ୍ଷମ ହୋଇପାରି ନ ଥିଲେ । ପରନ୍ତୁ ତାଙ୍କ ତରୁଣ ଜୀବନରେ ସେ ଯେଉଁ ସ୍ତରର ଲୋକଙ୍କ ସଙ୍ଗେ ଘନିଷ୍ଠ ହୋଇପାରିଥିଲେ ସେମାନଙ୍କୁ ହିଁ ସେ ଆପଣାର ରଚନାବଳୀରେ ସୁନିପୁଣ ଭାବେ ମୂର୍ତ୍ତିମନ୍ତ କରିପାରିଛନ୍ତି ।

ତାଙ୍କର ଅଧିକାଂଶ ଉପନ୍ୟାସ ସର୍ବାଦୌ ମାସିକ ପତ୍ରିକା-ମାନଙ୍କରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ମୁଖ୍ୟତଃ ଜନସାଧାରଣଙ୍କ ସନ୍ତୋଷ ବିଧାନ ପାଇଁ ହିଁ ସେ ସେଗୁଡ଼ିକ ଲେଖିଥିଲେ । ପତ୍ରିକାରେ ପ୍ରକାଶିତ ଉପନ୍ୟାସ ପ୍ରତି ପାଠକମାନଙ୍କର ପ୍ରତିକ୍ରିୟା ସମ୍ପର୍କରେ ମଧ୍ୟ ସେ ଥିଲେ ସର୍ବଦା ସଚେତନ । ଜନପ୍ରିୟ ଲେଖକ ହେବା ହିଁ ଥିଲା ତାଙ୍କର ଏକାନ୍ତ ଧ୍ୟେୟ । ବହୁସଂଖ୍ୟକ ରଚନା ଲେଖିଲେ ମଧ୍ୟ ସେ କ୍ଳାନ୍ତି ଅନୁଭବ କରୁ ନ ଥିଲେ । ଏହାଛଡ଼ା ସେ ତିନିଗୋଟି ସାପ୍ତାହିକ ପତ୍ରିକା ମଧ୍ୟ ସମ୍ପାଦନ କରିଥିଲେ । ସେ ଯେପରି କଠିନ ମାନସିକ ପରିଶ୍ରମ କରୁଥିଲେ ସେହିପରି ମଧ୍ୟ ଶାରୀରିକ ପରିଶ୍ରମ କରୁ-ଥିଲେ । ଦୈନିକ ୨୦ ମାଇଲ ଚାଲିବା ତାଙ୍କ ପକ୍ଷେ ଅତି ସାଧାରଣ ବିଷୟ ଥିଲା । ପ୍ରଚୁର ଉତ୍ସାହ ସହକାରେ ସେ ଅଶ୍ୱାରୋହଣ, ନୃତ୍ୟ ଓ କ୍ରୀଡ଼ା କୌତୁକରେ ମତ୍ତ ରହୁଥିଲେ । ନିଜର ପିଲାମାନଙ୍କୁ ସେ ନାନାବିଧ ଉପାୟରେ ମଧ୍ୟ ଆମୋଦିତ କରୁଥିଲେ । କେବେ କେବେ ସୌଖିନ ନାଟ୍ୟମଞ୍ଚରେ ଅଭିନୟ କରିବା ବ୍ୟତୀତ ନୃତ୍ୟଗୀତରେ ମଧ୍ୟ

ଘଟଣାଟି ତାଙ୍କ ମନରେ ଏକ ଗଭୀର ଶୋକର ଛାପ୍ପା ଛାଡ଼ିଦେଲା । ଏହାର କିଛୁଦିନ ପରେ ସେ ନିଜ ଡ଼ାଏରୀରେ ଲେଖିଥିଲେ—"ସେଇ ହାସ୍ୟମୟୀ, ମଧୁଭାଷିଣୀ ସାଥୀଟି ମୋର ସବୁ ଅନୁଭୂତି ଓ ଭାବନା ପ୍ରତି ସମ୍ବେଦନଶୀଳତା ପ୍ରକାଶ କରିଆସିଛି । ତା' ଭଳି ଦରଦୀ ମୁଁ ଆଉ କାହାକୁ ଦେଖି ନାହିଁ ନା ଦେଖିବି ନାହିଁ । ଆଜି ସେ ଆମ ସଙ୍ଗେ ଥାଆନ୍ତା କି ! ତାର ସେଇ ଆନନ୍ଦଦାୟକ ସାହଚର୍ଯ୍ୟ ବ୍ୟତୀତ ମୁଁ ଆଉ କିଛୁ କାମନା କରୁ ନାହିଁ । ସେ ଚାଲିଯାଇଛି । ଭଗବାନଙ୍କୁ ମୋର ପ୍ରାର୍ଥନା; ତାଙ୍କ ଆଶୀର୍ବାଦରୁ ମୁଁ ଯେପରି ପୁଣି ତା' ସଙ୍ଗେ ମିଳିତ ହେବି ।" ମେରୀଙ୍କ କବର ପାଖେ ତାଙ୍କ ମୃତ ଦେହକୁ ସମାଧିସ୍ଥ କରିବା ଲାଗି ସେ ମୃତ୍ୟୁ ପୂର୍ବରୁ ବ୍ୟବସ୍ଥା କରି ଯାଇଥିଲେ ।

ମେରୀଙ୍କ ମୃତ୍ୟୁର ଆକସ୍ମିକ ଆଘାତର ପରିଣତି ସ୍ୱରୂପ କେଟ୍‌ଙ୍କ ଗର୍ଭପାତ ହେଲା । କିଛୁଦିନ ପରେ ସେ ସାମାନ୍ୟ ସୁସ୍ଥ ହେଲେ । ପୂର୍ବର ସରସତା ଫେରି ପାଇବା ଲାଗି ଚାର୍ଲ୍‌ସ୍ ସ୍ତ୍ରୀଙ୍କୁ ସାଙ୍ଗରେ ନେଇ ଚିତ୍ତବିନୋଦନ ପାଇଁ ବାହାରକୁ ବୁଲିବାକୁ ଗଲେ ।

ଲବ୍‌ଧପ୍ରତିଷ୍ଠ ସାହିତ୍ୟିକମାନଙ୍କର ଜୀବନୀ ସାଧାରଣତଃ କୌତୁହଳ ଉଦ୍ଦୀପକ ବା ଆନନ୍ଦଦାୟକ ହୋଇ ନଥାଏ । ସେମାନେ ସାଧାରଣତଃ ଏକପ୍ରକାର ଧରାବନ୍ଧା ଗୀତ ମାନି ଚଳନ୍ତି । ମାତ୍ର ଚାର୍ଲ୍‌ସଙ୍କ ଜୀବନରେ ଆମେ ଏହାର ବ୍ୟତିକ୍ରମ ଦେଖୁ । ଦୈନିକ କେତେ ଘଣ୍ଟା ପାଇଁ ସେ ଲେଖାଲେଖିରେ ଆପଣାକୁ ନିୟୋଜିତ ରଖୁଥିଲେ । ମାତ୍ର ଅଧିକ ସମୟ ତାଙ୍କୁ ବନ୍ଧୁ କଳାବିତ୍ ଓ ସାହିତ୍ୟିକଙ୍କ ସାହଚର୍ଯ୍ୟରେ କଟାଇବାକୁ ପଡ଼ୁଥିଲା । ବିଖ୍ୟାତ ମହିଳାମାନେ ମଧ୍ୟ ତାଙ୍କ ସାହଚର୍ଯ୍ୟ କାମନା କରୁଥିଲେ । ବିଭିନ୍ନ ଭୋଜିସଭାରେ ସେ ଯେପରି ଯୋଗ ଦେଉଥିଲେ ସେହିପରି ତାଙ୍କୁ ମଧ୍ୟ ଭୋଜି ଦେବାକୁ ପଡ଼ୁଥିଲା । ଏତଦ୍‌ବ୍ୟତୀତ ବିଭିନ୍ନ ସ୍ଥାନକୁ ମଧ୍ୟ ସେ ପରିଭ୍ରମଣ ଲାଗି ଯାଉଥିଲେ । ଜନସାଧାରଣଙ୍କୁ ସାକ୍ଷାତ କରୁଥିଲେ । ମୋଟାମୋଟି ଭାବେ ଏହାହିଁ ଥିଲା ଡିକେନ୍‌ସଙ୍କ ଜୀବନର ଗୀତ । ନିଜ ଜୀବଦ୍ଦଶାରେ ସେ ଯେପରି ସାଫଲ୍ୟ ଓ ଗୌରବର ଅଧିକାରୀ ହୋଇପାରିଥିଲେ ତାହା କ୍ୱଚିତ ସାହିତ୍ୟିକଙ୍କ ଭାଗ୍ୟରେ ଘଟିଥାଏ ।

ଡିକେନ୍‌ସ ସର୍ବଦା ଥିଏଟରରେ ଅତ୍ୟନ୍ତ ଅନୁରାଗୀ ଥିଲେ । ଏପରିକି ଅଭିନୟ କରିବା ଅଭିଳାଷରେ ସେ ଜଣେ ଅଭିନେତା ଠାରୁ ମଧ୍ୟ ଅଭିନୟକଳା ଶିକ୍ଷାକରି ତାହା ଅଭ୍ୟାସ କରିଥିଲେ । କେତେ ସମ୍ଭ୍ରାନ୍ତବ୍ୟକ୍ତି ତାଙ୍କୁ ଉଚ୍ଚହୀନ ଓ ଗ୍ରାମ୍ୟ ବୋଲି ମନେ କରୁଥିଲେ ହେଁ ସେ ଆପଣାର ସରସତା ମଧୁର ହାସ୍ୟରେ ସମସ୍ତଙ୍କୁ ମୁଗ୍ଧ କରି ପାରୁଥିଲେ । କେତେକେତେ ସ୍ତାବକମାନେ ତାଙ୍କୁ ତୋଷାମଦ କରୁଥିଲେ ହେଁ ତାହା ତାଙ୍କ ମନକୁ ବିଭ୍ରାନ୍ତ କରୁ ନ ଥିଲା । ଡିକେନ୍‌ସଙ୍କର ଥିଲା ଅପୂର୍ବ ପର୍ଯ୍ୟବେକ୍ଷଣ ଶକ୍ତି ଓ ପ୍ରଚୁର ସନ୍ଧାନୀ ଦୃଷ୍ଟିଭଙ୍ଗୀ । ସମାଜର ଉଚ୍ଚସ୍ତରର ବ୍ୟକ୍ତିମାନଙ୍କ ସଙ୍ଗେ ସୁପରିଚିତ ହେବାର ସୁଯୋଗ ମଧ୍ୟ ତାଙ୍କୁ ପ୍ରଚୁର ମିଳିଥିଲା । ମାତ୍ର ସେହି ଶ୍ରେଣୀର ଚରିତ୍ରମାନଙ୍କୁ ସମ୍ପୂର୍ଣ୍ଣ ସଜୀବ ଭାବେ ଚିତ୍ର କରିପାରିବାକୁ କ୍ଷମ ହୋଇପାରି ନ ଥିଲେ । ପରନ୍ତୁ ତାଙ୍କ ତରୁଣ ଜୀବନରେ ସେ ଯେଉଁ ସ୍ତରର ଲୋକଙ୍କ ସଙ୍ଗେ ଘନିଷ୍ଠ ହୋଇପାରିଥିଲେ ସେମାନଙ୍କୁ ହିଁ ସେ ଆପଣାର ରଚନାବଳୀରେ ସୁନ୍ଦରପୂର୍ଣ୍ଣ ଭାବେ ମୂର୍ତ୍ତିମନ୍ତ କରାଯାଇଛନ୍ତି ।

ତାଙ୍କର ଅଧିକାଂଶ ଉପନ୍ୟାସ ସର୍ବାଦୌ ମାସିକ ପତ୍ରିକା-ମାନଙ୍କରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ମୁଖ୍ୟତଃ ଜନସାଧାରଣଙ୍କ ସନ୍ତୋଷ ବିଧାନ ପାଇଁ ହିଁ ସେ ସେଗୁଡ଼ିକ ଲେଖିଥିଲେ । ପତ୍ରିକାରେ ପ୍ରକାଶିତ ଉପନ୍ୟାସ ପ୍ରତି ପାଠକମାନଙ୍କର ପ୍ରତିକ୍ରିୟା ସମ୍ପର୍କରେ ମଧ୍ୟ ସେ ଥିଲେ ସର୍ବଦା ସଚେତନ । ଜନପ୍ରିୟ ଲେଖକ ହେବା ହିଁ ଥିଲା ତାଙ୍କର ଏକାନ୍ତ ଧ୍ୟେୟ । ବହୁସଂଖ୍ୟକ ରଚନା ଲେଖିଲେ ମଧ୍ୟ ସେ କ୍ଳାନ୍ତି ଅନୁଭବ କରୁ ନ ଥିଲେ । ଏହାଛଡ଼ା ସେ ଦୁଇଗୋଟି ସାପ୍ତାହିକ ପତ୍ରିକା ମଧ୍ୟ ସମ୍ପାଦନ କରିଥିଲେ । ସେ ଯେପରି କଠିନ ମାନସିକ ପରିଶ୍ରମ କରୁଥିଲେ ସେହିପରି ମଧ୍ୟ ଶାରୀରିକ ପରିଶ୍ରମ କରୁଥିଲେ । ଦୈନିକ ୨୦ ମାଇଲ ଚାଲିବା ତାଙ୍କ ପକ୍ଷେ ଅତି ସାଧାରଣ ବିଷୟ ଥିଲା । ପ୍ରଚୁର ଉତ୍ସାହ ସହକାରେ ସେ ଅଶ୍ୱାରୋହଣ, ନୃତ୍ୟ ଓ କ୍ରୀଡ଼ା କୌତୁକରେ ମତ୍ତ ରହୁଥିଲେ । ନିଜର ପିଲାମାନଙ୍କୁ ସେ ନାନାବିଧ ଉପାୟରେ ମଧ୍ୟ ଆମୋଦିତ କରୁଥିଲେ । କେବେ କେବେ ସୌଖିନ ନାଟ୍ୟମଞ୍ଚରେ ଅଭିନୟ କରିବା ବ୍ୟତୀତ ନୃତ୍ୟଗୀତରେ ମଧ୍ୟ

ଯୋଗ ଦେଉଥିଲେ । କେବେକେବେ ସେ ସଭାରେ ଭାଷଣ ଦେଉଥିଲେ ଏବଂ ମହାର୍ଘ ଭୋଜ ମଧ୍ୟ ଦେଉଥିଲେ ।

କ୍ରମେ ତାଙ୍କର ଅବସ୍ଥା ସ୍ୱଚ୍ଛଳ ହୋଇଗଲା ଓ ସେ ଏକ ସୌଖିନ ଅଞ୍ଚଳରେ ଯାଇଁ ବାସ କଲେ । ପ୍ରସିଦ୍ଧ ଅନୁଷ୍ଠାନମାନଙ୍କରୁ ମୂଲ୍ୟବାନ ଉପକରଣ କିଣି ନିଜ ଶୟନାଗାର ଓ ଅଭ୍ୟର୍ଥନା ପ୍ରକୋଷ୍ଠକୁ ସଜ୍ଜିତ କରାଇଲେ । ମୂଲ୍ୟବାନ ଗାଲିଚ୍ଚ ଓ ଝରକା ପର୍ଦ୍ଦାରେ ତାଙ୍କ ଗୃହଟି ସୁସଜ୍ଜିତ ହେଲା । ଉତ୍ତମପାଚକ, ତିନିଜଣ ପରିଚାରିକା ଓ ଜଣେ ପରିଚାରକ ଗୃହଲାଗି ନିଯୁକ୍ତ ହେଲେ, ଘୋଡ଼ାଗାଡ଼ି କିଣିଲେ । ବଡ଼ ଜମିଦାର ଓ ବିଶିଷ୍ଟ ଲୋକଙ୍କୁ ଭୋଜ ଦେଲେ । ଏହିପରି ତାଙ୍କର ଚଳଣି ହେଲା ବହୁ ବ୍ୟୟବହୁଳ । ଏତଦ୍‌ବ୍ୟତୀତ ଆପଣାର ପିତାମାତା, ଭାଇଭଉଣୀ ଓ ଶ୍ୱଶୁରକୁଳର ବ୍ୟକ୍ତିମାନଙ୍କ ବ୍ୟୟଭାର ମଧ୍ୟ ତାଙ୍କୁ ବହନ କରିବାକୁ ପଡୁଥିଲା । ଏହାର ସୁଯୋଗ ନେଇ ତାଙ୍କ ପିତା କେବେକେବେ ଡିକେନ୍‌ସଙ୍କ ହସ୍ତଲିପି ଓ ଉପନ୍ୟାସ ପାଣ୍ଡୁଲିପିର ପୃଷ୍ଠାସବୁ ମଧ୍ୟ ବିକ୍ରୀ କରି ଦେଉଥିଲେ ଏବଂ ଅନ୍ୟଠାରୁ କରଜ ମଧ୍ୟ କରୁଥିଲେ । ଏହା ଡିକେନ୍‌ସଙ୍କୁ ଅତ୍ୟନ୍ତ ବିରକ୍ତିକର ମନେହେବା ସ୍ୱାଭାବିକ । ଶେଷକୁ ସେ ସ୍ଥିର କଲେ, ଏହି ପୋଷ୍ୟବ୍ୟକ୍ତିମାନଙ୍କୁ ଲଣ୍ଡନ ବାହାରକୁ ନ ପଠାଇଲେ ସେ ଶାନ୍ତି ପାଇପାରିବେ ନାହିଁ । ବାସ୍ତବିକ୍ ସେ ତାହା ହିଁ କରିଥିଲେ । ସେମାନଙ୍କ ଲାଗି ଲଣ୍ଡନ ବାହାରେ ଏକ ଘରଭଡ଼ା ନେଇ ସେମାନଙ୍କୁ ସେଠାରେ ରଖିଥିଲେ । ଏକ ପ୍ରକାର ଏହିସବୁ ବ୍ୟୟଭାର ତୁଲାଇବା ଲାଗି ସେ ଗୋଟିଏ ପତ୍ରିକା (Master Humphrey's clock) ପ୍ରକାଶ କରାଇଲେ । ପତ୍ରିକାଟିର ଗ୍ରାହକସଂଖ୍ୟା ବୃଦ୍ଧି ଲାଗି ସେଥିରେ ସେ ଛପାଇଥିଲେ 'The old curiousity shop' ନାମକ ନିଜର ଏକ ଉପନ୍ୟାସ । ଏହି ପତ୍ରିକାର ଜନପ୍ରିୟତା ଓ ସାଫଲ୍ୟ ଥିଲା ବିସ୍ମୟକର । ଏହାର ଜନପ୍ରିୟତା କେବଳ ଇଂଲଣ୍ଡରେ ସୀମିତ ନ ଥିଲା । ଲଣ୍ଡନରୁ ଏହି ପତ୍ରିକା ଜାହାଜରେ ଯାଇ ଯେତେବେଳେ ନିୟୁଅର୍କରେ ଲାଗୁଥିଲା, ସେତେବେଳେ ଅସଂଖ୍ୟ ଲୋକ ସେଇ ପତ୍ରିକା କିଣିବା ଲାଗି ଅଧୀର ଭାବେ ଚିତ୍କାର କରୁଥିଲେ ।

ଖ୍ରୀ: ୧୮୪୨ରେ ଡିକେନ୍‌ସ ସେମାନଙ୍କ ଚାରୋଟି ସନ୍ତାନଙ୍କୁ କେଟଙ୍କ ସାନଭଉଣୀ ଜର୍ଜିଆନାଙ୍କ ଜିମାରେ ଛାଡ଼ିଦେଇ ସସ୍ତ୍ରୀକ ଆମେରିକା

ଯାତ୍ରା କଲେ । ଆମେରିକାବାସୀ ତାଙ୍କୁ ଯେପରି ପ୍ରବଳ ଉତ୍ସାହର ସହିତ ସ୍ୱାଗତ ଜଣାଇଥିଲେ, ତାହା କେବେ କୌଣସି ସାହିତ୍ୟିକଙ୍କ ଭାଗ୍ୟରେ ମିଳି ନାହିଁ । ମାତ୍ର କେତେକ କାରଣରୁ ଏହି ଯାତ୍ରାଟି ସମ୍ପୂର୍ଣ୍ଣ ଆନନ୍ଦ-ପୂର୍ଣ୍ଣ ବା ସାଫଲ୍ୟମଣ୍ଡିତ ହୋଇପାରି ନ ଥିଲା । ଫିଲାଡେଲଫିଆ ନଗରୀରେ ତାଙ୍କୁ ଦୁଇ ଘଣ୍ଟା ପର୍ଯ୍ୟନ୍ତ ଠିଆ ହୋଇ କରମର୍ଦ୍ଦନ କରିବାକୁ ପଡ଼ିଥିଲା ।

ଡିକେନ୍ସ ଆମେରିକାରେ ଛଅଟି ମାସ ଘଟଣାବହୁଳ ଓ କ୍ଲାନ୍ତିପ୍ରଦ ସମୟ ଅତିବାହିତ କରି ଇଂଲଣ୍ଡକୁ ଫେରିଆସିଲେ । ସେତେବେଳେ ତାଙ୍କ ପିଲାମାନେ ମାଉସୀ ଜର୍ଜିନାକୁ ଝୁବ୍ ଦେଖି ପାରୁଥାନ୍ତି, ସେମିତି ବି ମାନୁଥାନ୍ତି । କ୍ୟାଥ୍ ଅଭିଯାତ୍ରୀ ଦୁହେଁ ଜର୍ଜିନାକୁ ସେମାନଙ୍କ ଘରେ ଆସି ରହିବାକୁ କହିଲେ । ସେତେବେଳକୁ ଜର୍ଜିନାଙ୍କୁ ୧୬ ବର୍ଷ ବୟସ—ଯେଉଁ ବୟସରେ ଠିକ୍ ମେରୀ ଆସି ଡିକେନ୍ସଙ୍କ ଗୃହରେ ରହିଥିଲା । ଜର୍ଜିନା ଦେଖିବାକୁ ମଧ ମେରୀ ଭଳି ରୂପବତୀ । କେଟ୍ ସେତେବେଳେ ସନ୍ତାନସମ୍ଭବା । ସୁନ୍ଦରୀ ଜର୍ଜିନା ଯେପରି ବୁଦ୍ଧିମତୀ ସେହିପରି ନମ୍ର । ତା' ଛଡ଼ା ତା'ର ଗୋଟାଏ ବିଶେଷ ଗୁଣ ପ୍ରାଣୀମାନଙ୍କ କଣ୍ଠସ୍ୱରକୁ ସେ ଭଲଭାବେ ଅନୁକରଣ କରି ପାରୁଥିଲା । ଏହା ଶୁଣି ଡିକେନ୍ସ ହସି ହସି ବେଦମ ହୋଇ ପଡ଼ନ୍ତି । ଫଳରେ ଚାର୍ଲସ ଓ ଜର୍ଜିନାଙ୍କ ମଧ୍ୟରେ ମଧୁର ସମ୍ପର୍କ ଗଢ଼ି ଉଠିଲା । ଜର୍ଜିନା ଭିତରେ ଚାର୍ଲସ ଯେପରି ମେରୀ ସହ ଅତିବାହିତ ଅତୀତର ସୁମଧୁର ଦିନଗୁଡ଼ିକୁ ଫେରିପାଇଲେ । ମାତ୍ର ସେତେବେଳକୁ ଋଣଜାଲରେ ଜଡ଼ିତ ହୋଇ ସେ ଅତ୍ୟନ୍ତ ଆସ୍ୱାଚ୍ଛନ୍ଦ୍ୟ ବୋଧ କରୁଥାନ୍ତି । ଏଣୁ ଅଳ୍ପ ଆୟରେ ଚଳିବା ଲାଗି ସେ ନିଜ ଘରକୁ ଭଡ଼ା ଲଗାଇ ଇଟାଲୀରେ ରହିବାକୁ ମନସ୍ଥ କଲେ । କିଛିକାଳ ସେ ଇଟାଲୀରେ ରହି ଜେନୋଆ ପ୍ରଭୃତି ବିଭିନ୍ନ ସ୍ଥାନ ପରିଦର୍ଶନ କଲେ । ଜେନୋଆରେ ଅବସ୍ଥାନ କାଳରେ ଶ୍ରୀମତୀ ଡେଲା ରୁ (Dela Rue) ନାମକ ଜନୈକ ମହିଳାଙ୍କ ସହ ବନ୍ଧୁତା ସ୍ଥାପିତ ହେଲା । ସେ ଥିଲେ ସୁଇଜରଲାଣ୍ଡବାସୀ ଜନୈକ ବ୍ୟାଙ୍କ ଅଧିକାରୀଙ୍କ ସ୍ତ୍ରୀ । ସେତେ-ବେଳେ ଶ୍ରୀମତୀ ଡେଲା ରୁ ମାନସିକ ରୋଗାକ୍ରାନ୍ତ । ନାନାପ୍ରକାର ଭ୍ରାନ୍ତି ଓ ଭୟଜନିତ ମାନସିକ ଅସୁସ୍ଥତା ସେ ଭୋଗ କରୁଥାନ୍ତି । ଡିକେନ୍ସଙ୍କର ସମ୍ମୋହନ ବିଦ୍ୟା ପ୍ରତି ଅନୁରାଗ ଥିଲା । ସେହି ପ୍ରକ୍ରିୟାରେ ସେ ଡେଲା ରୁଙ୍କୁ

ଆରୋଗ୍ୟ କରିପାରିବେ ବୋଲି ବିଶ୍ୱାସ କରୁଥିଲେ । ତାଙ୍କପାଇଁ ଉଭୟଙ୍କୁ ପ୍ରତ୍ୟହ ଥରେ କେବେକେବେ ବା ଦୁଇଥର ଭେଟିବାକୁ ହେଉଥିଲା । କେଟ୍‌ଙ୍କୁ ଏହା ସୁଖ ଲାଗୁ ନ ଥାଏ । ବିଭିନ୍ନ ସ୍ଥାନକୁ ପରିଭ୍ରମଣ କରି ଗଲାବେଳେ ଡିକେନ୍‌ସ ଦମ୍ପତିଙ୍କ ସହ ଉଲି-ରୁ ମଧ୍ୟ ଯାଉଥିଲେ । ଯାହାହେଉ ଯୋଗକୁ ଡିକେନ୍‌ସଙ୍କ ଚିକିତ୍ସାରେ ଉଲି-ରୁ ସୁସ୍ଥ ହୋଇଗଲେ ଓ କିଛିଦିନ ପରେ ଡିକେନ୍‌ସଙ୍କ ସହ କେଟ୍ ଇଂଲଣ୍ଡକୁ ଫେରିଆସି ଆଶ୍ୱସ୍ତ ବୋଧ କଲେ ।

କେଟ୍ ଥିଲେ ଶାନ୍ତ ଓ ବିଷଣ୍ଣ ପ୍ରକୃତି ବିଶିଷ୍ଟ । ସେ ଅବସ୍ଥାକୁ ସହଜଭାବେ ଗ୍ରହଣ କରିପାରୁ ନ ଥିଲେ । ନିଜକୁ କାହାସହ ଖାପଖୁଆଇ ଚଳାଇ ମଧ୍ୟ ପାରୁ ନ ଥିଲେ । ସ୍ୱାମୀଙ୍କ ସଙ୍ଗେ ନାନା ସ୍ଥାନକୁ ପରିଭ୍ରମଣରେ ଯିବାକୁ କିମ୍ବା ଭୋଜିଉତ୍ସବରେ ଯୋଗ ଦେବାକୁ ବା ଭୋଜି ଆୟୋଜନର କର୍ତ୍ତ୍ରୀ ହେବାକୁ ସେ ସୁଖ ପାଉ ନ ଥିଲେ । ତାଙ୍କର ସ୍ୱକୀୟତା ନ ଥିଲା । ବରଂ ସେ ଥିଲେ ଏକପ୍ରକାର ସ୍ୱଳ୍ପବୁଦ୍ଧିସମ୍ପନ୍ନା ନାରୀ । ଯେଉଁ ବିଶିଷ୍ଟ ବ୍ୟକ୍ତିଗଣ ଏହି ବିଖ୍ୟାତ ଲେଖକଙ୍କ ସାହଚର୍ଯ୍ୟ କାମନା କରୁଥିଲେ, ସେମାନେ ତାହାଙ୍କ ନିର୍ବୋଧ ସ୍ତ୍ରୀଙ୍କ ଉପସ୍ଥିତିକୁ ବିରକ୍ତିକର ମନେକରିବା ସ୍ୱାଭାବିକ । ଜଣେ ବିଖ୍ୟାତ ବ୍ୟକ୍ତିଙ୍କ ସ୍ତ୍ରୀ ହେବା ସହଜ ବିଷୟ ନୁହେଁ । ବୁଦ୍ଧିମତୀ ଓ କଳାବତୀ ନ ହେଲେ ସେଇ କର୍ତ୍ତବ୍ୟ ସମ୍ପାଦନ କରିବା ଅସମ୍ଭବ । କେଟ୍ ମଧ୍ୟ ଡିକେନ୍‌ସଙ୍କୁ ସୁଖପାଉଥିବା ଜଣାଯାଏ ନାହିଁ । ସମ୍ଭବତଃ ସେହି ସମୟରେ ଇଂଲଣ୍ଡର ମହିଳାମାନଙ୍କ ପକ୍ଷେ ବିବାହ ହିଁ ଏକମାତ୍ର କାମ୍ୟ ବିଷୟ ଥିଲା ଓ ପିତାଙ୍କର ଆଠଗୋଟି କନ୍ୟାମଧ୍ୟରୁ ବୟୋଜ୍ୟେଷ୍ଠା ଥିବାରୁ ପିତାମାତାଙ୍କ ପ୍ରରୋଚନାରେ ହିଁ ତାଙ୍କୁ ଡିକେନ୍‌ସଙ୍କୁ ବିବାହ କରିବାକୁ ପଡ଼ିଥିଲା ।

ଇତ୍ୟବସରରେ ଡିକେନ୍‌ସଙ୍କ ହୃଦୟର ଯେଉଁ ସ୍ଥାନ ଦିନେ ମେରି ଅଧିକାର କରିଥିଲା ସେଇ ସ୍ଥାନରେ ଜର୍ଜିନା ସାଦରେ ଅଧିଷ୍ଠିତ ହୋଇଗଲା । ଡିକେନ୍‌ସ କ୍ରମେ ତା ଉପରେ ଅଧିକ ନିର୍ଭର କରିବାକୁ ଆରମ୍ଭ କଲେ । ଉଭୟେ ଏକାଠି ଦୀର୍ଘପଥ ପରିଭ୍ରମଣରେ ଚାଲିଯାନ୍ତି । ବାଟରେ ଡିକେନ୍‌ସ ନିଜର ସାହିତ୍ୟିକ ଯୋଜନା ସମ୍ପର୍କରେ ତା' ସଙ୍ଗରେ ଆଲୋଚନା କରନ୍ତି । ବିଦେଶରେ ରହିବାର ଆନନ୍ଦାନୁଭୂତି

ଈତିପୂର୍ବରୁ ସ୍ଥିର କରିଥିବାରୁ ସେ ପିଲାମାନଙ୍କ ପାଇଁ ଫ୍ରାନ୍ସର ବିଭିନ୍ନ ସ୍ଥାନରେ ରହିବାକୁ ଲାଗିଲେ । ପରିବାରର ବ୍ୟକ୍ତି ଭାବରେ ଜର୍ଜିନା ମଧ୍ୟ ତାଙ୍କ ସଙ୍ଗେ ଇଟାଲୀ, ପ୍ୟାରିସ୍ ପ୍ରଭୃତି ବିଭିନ୍ନ ସ୍ଥାନକୁ ଯାଏ । ପରେ ଡିକେନ୍ସ ଓ ଜର୍ଜିନା ପ୍ୟାରିସ୍‌ରେ ବସବାସ ଲାଗି ଏକ ଘର ଯୋଗାଡ଼ କରିବାକୁ ଚାଲିଗଲେ । ସେ ଦୁହେଁ ସବୁ ପ୍ରସ୍ତୁତ କରି ଫେରିବା ପର୍ଯ୍ୟନ୍ତ କେଟ୍ ଇଂଲଣ୍ଡରେ ସେମାନଙ୍କୁ ଅପେକ୍ଷା କରି ରହିଲେ । କେଟ୍ ଗର୍ଭବତୀ ହେବାବେଳେ ଜର୍ଜିନା ଡିକେନ୍ସଙ୍କ ସଙ୍ଗେ ଭୋଜସଭାଠାରୁ ଆରମ୍ଭ କରି ସବୁଆଡେ ଯାଉଥାନ୍ତି । ଭୋଜ ସଭାରେ ତାଙ୍କୁ ଘରର କର୍ତ୍ତ୍ରୀ କେଟ୍‌ରେ କର୍ତ୍ତବ୍ୟ ସମ୍ପାଦନ କରିବାକୁ ପଡ଼େ । କେଟ୍ ଏଥିରେ କ୍ଷୁର୍ଣ୍ଣ, ଈର୍ଷାନ୍ୱିତ ଓ କ୍ରୁଦ୍ଧ ହେବା ସ୍ୱାଭାବିକ୍ । ମାତ୍ର ସେ ସେପରି ମନୋଭାବ ପୋଷଣ କରିବା ଜଣାଯାଏ ନାହିଁ । ଏହିପରି ଭାବେ ଦିନ ଗଡ଼ିଚାଲିଲା ।

୧୮୫୭ ମସିହା । ଡିକେନ୍ସଙ୍କୁ ସେତେବେଳକୁ ୪୫ ବର୍ଷ ବୟସ । ଇଂଲଣ୍ଡର ସର୍ବଶ୍ରେଷ୍ଠ ଜନପ୍ରିୟ ଲେଖକ, ସମାଜ ସଂସ୍କାରକ ଭାବେ ସେ ପରମ ସମ୍ମାନିତ ବ୍ୟକ୍ତି । ତାଙ୍କ ସନ୍ତାନମାନେ ମଧ୍ୟ ବଡ଼ ହୋଇଯାଇଥାନ୍ତି । ଏହି ସମୟରେ ଡିକେନ୍ସଙ୍କ ଜୀବନରେ ଏକ ଅପ୍ରତ୍ୟାଶିତ ଘଟଣା ଘଟିଗଲା । ଅଭିନୟ କରିବାରେ ସେ ସର୍ବଦା ଥିଲେ ଅନୁରକ୍ତ । ବିଭିନ୍ନ ଉପଲକ୍ଷରେ ଅର୍ଥ ସାହାଯ୍ୟଲାଗି ଆୟୋଜିତ ନାଟ୍ୟାଭିନୟରେ ସେ ଏକାଧିକ ଥର ସୌଖିନ୍ ଅନୁଷ୍ଠାନ ତରଫରୁ ଅଭିନୟ କରିଛନ୍ତି । ଏହି ସମୟରେ ମାଞ୍ଚେଷ୍ଟରରେ Frozen Deep ନାଟକରେ ଅଭିନୟ କରିବା ଲାଗି ତାଙ୍କୁ ଅନୁରୋଧ କରାଗଲା । ତାଙ୍କ ସହାୟତାରେ ଉଇଲକି କଲିନ୍ସ ଏହି ନାଟକଟି ରଚନା କରିଥାନ୍ତି । ଇଂଲଣ୍ଡରାଣୀ ଏବଂ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ଉପସ୍ଥିତିରେ ଏହା ଖୁବ୍ ସଫଳତାର ସହିତ ଥରେ ଅଭିନୀତ ହୋଇଥିଲା । ଡିକେନ୍ସ ଏହି ନାଟକରେ ଦାଢ଼ି ଲଗାଇ ଆତ୍ମତ୍ୟାଗୀ ମେରୁ ଅନୁସନ୍ଧାନୀ ଭୂମିକାରେ ସଫଳତାର ସହିତ ଅଭିନୟ କରିଥିଲେ । ତାଙ୍କ ଅଭିନୟ ଏପରି ପ୍ରାଣବନ୍ତ ହୋଇଥିଲା ଯେ ତାହା ପ୍ରାୟ ସବୁ ଦର୍ଶକଙ୍କୁ କନ୍ଦାଇ ଦେଇଥିଲା । ତାଙ୍କର ଝିଅମାନେ ମଧ୍ୟ ସେଥିରେ ଅଭିନୟ କରିଥିଲେ ।

ଏବେ ଏହି ନାଟକଟି ପ୍ରଦର୍ଶିତ ହେବ । ଏଥର ଦର୍ଶକମାନଙ୍କ ସଂଖ୍ୟା ଅଧିକ ହେବା ଆଶା କରାଯାଉଥିଲା । ତାଙ୍କ ସ୍ତ୍ରୀମାନଙ୍କ କଥା ଦର୍ଶକମାନଙ୍କର ଶ୍ରୁତିଗୋଚର ହୋଇ ନ ପାରେ ଭାବି ସେ ଏଥର ବ୍ୟବସାୟୀ ଅଭିନେତ୍ରୀଙ୍କୁ ସେହି ଭୂମିକାରେ ଅଭିନୟ କରାଇବାକୁ ସ୍ଥିର କଲେ । ଅଷ୍ଟାଦଶବର୍ଷ ବୟସ୍କା ଏଲେନ୍ ( Ellen Jerman ) ନାମକ ଏକ ସୁନ୍ଦରୀ ଯୁବତୀ ଏକ୍ଟରେସ ଏକ ଭୂମିକା ଲାଗି ନିଯୁକ୍ତ ହୋଇଥିଲେ । ଡିକେନ୍ସ ପୂର୍ବରୁ ତାଙ୍କର ଅଭିନୟ ଦେଖିଛନ୍ତି । ଏବେ ଡିକେନ୍ସଙ୍କ ଘରେ ନାଟକରେ ରିହର୍ସାଲ୍ ହେଉଥାଏ ଓ ସେ ନିଜେ ଥାନ୍ତି ତାର ନିର୍ଦ୍ଦେଶକ । ରିହର୍ସାଲ ସମୟରେ ଇଲେନ୍‌ର ସପ୍ରଶଂସ ଦୃଷ୍ଟି ଓ ଡିକେନ୍ସଙ୍କୁ ସନ୍ତୁଷ୍ଟ କରିବା ଲାଗି ତାର ସକରୁଣ ଉତ୍କଣ୍ଠା ଡିକେନ୍ସଙ୍କୁ ଏପରି ଆକୃଷ୍ଟ କଲା ଯେ ସେ ରିହର୍ସାଲ ଶେଷ ହେବା ପୂର୍ବରୁ ଇଲେନଙ୍କୁ ଗଭୀର ଭାବେ ଭଲପାଇ ବସିଲେ । ଇଲେନ୍‌କୁ ସେ କଙ୍କଣଟିଏ ଉପହାର ଦେଲେ । ମାତ୍ର ଦୈବଯୋଗକୁ ସେଇଟି ଭ୍ରମକ୍ରମେ କେଟ୍‌ଙ୍କର ହସ୍ତଗତ ହେଲା ।

ଡିକେନ୍ସ ଯାହା କାମନା କରି ଆସିଛନ୍ତି କେଟ୍ ତାହା ତାଙ୍କୁ ଦେଇପାରି ନାହାନ୍ତି । ଏବେ ଇଲେନଙ୍କୁ ଭଲପାଇ ସେ ନିଜ ସ୍ତ୍ରୀର ଦୋଷତ୍ରୁଟି ବିଷୟରେ ଅଧିକ ଅସନ୍ତୁଷ୍ଟ ହୋଇ ପଡ଼ିଲେ । ସେ ଯେ ତାଙ୍କ ପାଇଁ ସମ୍ପୂର୍ଣ୍ଣ ଅନୁପଯୁକ୍ତା ଓ ତାଙ୍କୁ ବୁଝିବାଭଳି ତାଙ୍କର ଯେ ହୃଦୟ ନାହିଁ, ଏଭଳି ଭାବନା ଡିକେନ୍ସ ମନକୁ ଅଧିକାର କଲା । ସେ ଚଞ୍ଚଳ, ଅସ୍ଥିର ହୋଇ ପଡ଼ିଲେ । ନିର୍ଜୀବ ବ୍ୟକ୍ତିତ ସବୁରି ଉପରେ ସେ ବିରକ୍ତି ପ୍ରକାଶ କରିବାକୁ ଲାଗିଲେ । ଶେଷରେ ସ୍ଥିର କଲେ, କେଟ୍ ସହିତ ଚଳିବା ତାଙ୍କ ପକ୍ଷେ ଅସମ୍ଭବ । ମାତ୍ର ତାଙ୍କୁ ତ୍ୟାଗ କରିବା ମଧ୍ୟ ସହଜ ନୁହେଁ । ଏପରି କଲେ ଜନସାଧାରଣଙ୍କ ଦୃଷ୍ଟିରେ ସେ ହେୟ ପ୍ରତିପନ୍ନ ହେବେ ଓ ତାଙ୍କ ନାମରେ ନାନା କୁତ୍ସା ରଟିତ ହେବା ମଧ୍ୟ ସ୍ୱାଭାବିକ । ଏହିପରି ନାନାଦ୍ୱନ୍ଦ୍ୱ ଓ ଆଶଙ୍କାରେ ତାଙ୍କ ମନ ଆନ୍ଦୋଳିତ ହେବାକୁ ଲାଗିଲା । ପାରିବାରିକ ଜୀବନର ମାଧୁର୍ଯ୍ୟକୁ ସେ ବହୁଦିନରୁ ଏକ ମହାନ ଆଦର୍ଶ ଭାବେ ପ୍ରଚାର କରି ଆସିଛନ୍ତି । ବର୍ତ୍ତମାନ ସେ ନିଜେ କିପରି ତହିଁ ବର୍ଜନ କରିବେ ? ଯାହାହେଉ କେଟ୍‌ଙ୍କ ନିକଟରେ ସେ ତିନୋଟି ପ୍ରସ୍ତାବ କଲେ । ଗୋଟିଏ ହେଉଛି, କେଟ ଅଲଗା

ଘରେ ରହିବେ କେବଳ ଡ଼ିକେନ୍‌ସଙ୍କ ସଙ୍ଗେ ସର୍ବସାଧାରଣ ଅନୁଷ୍ଠାନରେ ଯୋଗଦେବାକୁ ଯିବେ । ଅନ୍ୟଟି ହେଉଛି, ଦୁହେଁ ଲଣ୍ଡନରେ ତାଙ୍କ ନୂଆ କଣା ହୋଇଥିବା ଘରେ ଅଲଗା ଅଲଗା ରହିବେ । ତୃତୀୟଟି ହେଉଛି, ସେ ତାଙ୍କୁ ଛାଡ଼ି ଅନ୍ୟତ୍ର ରହିବେ । ମାତ୍ର କେଟ୍ ଏ ସମସ୍ତ ପ୍ରସ୍ତାବକୁ ଦୃଢ଼ଭାବରେ ପ୍ରତ୍ୟାଖ୍ୟାନ କରିଦେଲେ । ଶେଷରେ, ବାର୍ଷିକ ୬୦୦ ପାଉଣ୍ଡ ପାଇଁ କେଟ୍ କ୍ୟାମ୍‌ଡେନ ସହରରେ ଏକାକୀ ରହିବା ସ୍ଥିର ହେଲା । ତାହାହିଁ କାର୍ଯ୍ୟକାରୀ ହେଲା । ଅଳ୍ପଦିନ ପରେ ଚାର୍ଲସ୍ ବଡ଼ପୁଅକୁ ମଧ୍ୟ ସେଠାରେ ରହିବାକୁ ପଠାଇଲେ । କେଟ୍ କପର ନିଜଘରୁ ଏକପ୍ରକାର ନିର୍ବାସିତ ହୋଇ ସନ୍ତାନମାନଙ୍କୁ ଛାଡ଼ି ଏକାକୀ ରହିବାକୁ ସମ୍ମତ ହେଲେ, ତାହା ବାସ୍ତବିକ ବିସ୍ମୟକର । ଇଲେନ୍ ସହିତ ଚାର୍ଲସ୍‌ଙ୍କ ଆସକ୍ତି ବିଷୟରେ ସେ ଥିଲେ ପୂର୍ଣ୍ଣସଚେତନ । ଏହି ସୁଯୋଗରେ ସେ ଚାର୍ଲସ୍‌ଙ୍କୁ ଯେ କୌଣସି ସର୍ତ୍ତରେ ରାଜି ହେବାକୁ ବାଧ୍ୟ କରିପାରିଥାନ୍ତେ । ମାତ୍ର ଚାର୍ଲସ୍‌ଙ୍କୁ ବାଧ୍ୟ କରିବା ପରିବର୍ତ୍ତେ ସେ ଚାର୍ଲସ୍‌ଙ୍କ ପ୍ରସ୍ତାବରେ ସମ୍ମତ ହେବା ବିସ୍ମୟଜନକ ।

କ୍ରମେ ଡ଼ିକେନ୍‌ସଙ୍କ ବିରୁଦ୍ଧରେ ନାନାପ୍ରକାର କୁତ୍ସା ଓ ଲୋକାପବାଦ ରଟିବା ହେବାକୁ ଲାଗିଲା । ଇଲେନ୍ ଓ ଡ଼ିକେନ୍‌ସଙ୍କ ସମ୍ପର୍କରେ ହିଁ ଏହା ପ୍ରଚାରିତ ହେଲା । ବନ୍ଧୁମାନେ ଏ ବିଷୟରେ କିଛି କହିଲେ ଡିକେନ୍‌ସ ଭୟଙ୍କର କ୍ରୁଦ୍ଧ ହେଉଥିଲେ । ତାଙ୍କର ବିଶ୍ୱାସ ହେଲା, ତାଙ୍କ ଶ୍ୱଶୁରଙ୍କ ପରିବାର କିମ୍ବା ହୁଏତ ଜର୍ଜିନା ହିଁ ଏହି ଅପବାଦର ମୂଳକାରଣ । ଜର୍ଜିନାକୁ କେନ୍ଦ୍ରକରି ଏକ ପ୍ରଚଣ୍ଡ ଦ୍ୱନ୍ଦ୍ୱର ସୂତ୍ରପାତ ହେଲା । ଏହି କୁତ୍ସାରଟନା ଏତେ ପ୍ରବଳ ହେଲା ଯେ, ଡ଼ିକେନ୍‌ସଙ୍କୁ ବାଧ୍ୟ ହୋଇ ସର୍ବସାଧାରଣଙ୍କୁ ନିଜର ପାରିବାରିକ ବିଚ୍ଛେଦ ସମ୍ପର୍କରେ ଏକ ସ୍ୱୀକାରୋକ୍ତି ଦେବାକୁ ପଡ଼ିଲା । ଜର୍ଜିନା ବିଷୟରେ ସେ ଲେଖିଥିଲେ 'ପୃଥିବୀରେ ତାଠାରୁ ବଳି ପବିତ୍ର' ଅନ୍ୟଜଣଙ୍କ କେହି ନାହିଁ । ମୁଁ ଗୁରୁତରେ ହାତ ରଖି ଏକଥା ଶପଥ କରି କହୁଛି ।' ଏହାଦ୍ୱାରା ସେ ସମ୍ଭବତଃ କହିବାକୁ ଚାହିଁଥିଲେ ଜର୍ଜିନା ସଙ୍ଗେ ତାଙ୍କର କୌଣସି ଯୌନ ସମ୍ପର୍କ ନାହିଁ । ଏହା ହୁଏତ ସମ୍ପୂର୍ଣ୍ଣ ସତ୍ୟ । ହୁଏତ ଜର୍ଜିନା ତାଙ୍କୁ ସୁଖ ପାଉଥିଲା ଓ ନିଜ ଭଉଣୀ କେଟ୍‌ଙ୍କୁ ସେ ମନେ ମନେ ଈର୍ଷା କରୁଥିଲା । ଦୀର୍ଘ ପନ୍ଦର ବର୍ଷ ନିଜ ଭଉଣୀ ଘରେ ରହି ଏପରି ପ୍ରସିଦ୍ଧ

ବ୍ୟକ୍ତିଙ୍କୁ ନିଜ ହାତମୁଠାରେ ରଖିବାରେ ସେ ଏକପ୍ରକାର ଆନନ୍ଦ-ଅନୁଭବ କରୁଥିବା ବିଚିତ୍ର ନୁହେଁ । ସବୁଠୁ ଆଶ୍ଚର୍ଯ୍ୟର କଥା, ଜର୍ଜିନା ଇଲେନଙ୍କୁ ସ୍ୱାଗତ କରିନେଲ ଓ ତାର ବାନ୍ଧବୀ ହୋଇ ରହିଲ ।

ଗ୍ୱର୍ଲସ୍ ଅନ୍ୟ ଏକ ସ୍ଥାନରେ ଆଉ ଜଣଙ୍କ ନାଁରେ ଇଲେନ୍ ପାଇଁ ଗୋଟିଏ ଘରଭଡ଼ା ନେଲେ । ମୃତ୍ୟୁ ପର୍ଯ୍ୟନ୍ତ ସେ ଏହି ଗୃହରେ ହିଁ ବାସ କରୁଥିଲେ । ତାଙ୍କର ଗୋଟିଏ ପୁତ୍ର ସନ୍ତାନ ହୋଇଥିଲା ।

ଏହି ବିବାହ ବିଚ୍ଛେଦ କାଳରେ ଡିକେନ୍‌ସ ତାଙ୍କ ରଚିତ ଗଳ୍ପଉପନ୍ୟାସମାନଙ୍କୁ ବଡ଼ବଡ଼ ସଭାରେ ସର୍ବସାଧାରଣଙ୍କୁ ଶୁଣାଇବାକୁ ଆରମ୍ଭ କଲେ । ଏହି ଉଦ୍ଦେଶ୍ୟରେ ସେ ସମସ୍ତ ବ୍ରିଟିଶ୍ ଦ୍ୱୀପପୁଞ୍ଜ ଭ୍ରମଣ କରିସାରି ଶେଷରେ ଆମେରିକାକୁ ଯାତ୍ରା କରିଥିଲେ । ଏଥିରେ ସେ ବିପୁଳ ପରିମାଣରେ ସାଫଲ୍ୟ ଓ ଅର୍ଥ ଅର୍ଜନ କରିଥିଲେ । ମାତ୍ର ଏହି ଉପଲକ୍ଷେ ଅବିଶ୍ରାନ୍ତ ଇତସ୍ତତଃ ଭ୍ରମଣ ଓ ପରିଶ୍ରମ ଫଳରେ ତାଙ୍କର ସ୍ୱାସ୍ଥ୍ୟ ଭଙ୍ଗ ହେଲା । ୪୫ ବର୍ଷ ବେଳକୁ ସେ ଅତି ବୃଦ୍ଧ ହୋଇଗଲାଭଳି ଦିଶୁଥିଲେ । ଏହାଛଡ଼ା ତାଙ୍କୁ ଅନ୍ୟାନ୍ୟ କାମ ମଧ୍ୟ ଏହି ସମୟ ମଧ୍ୟରେ କରିବାକୁ ହୋଇଥିଲା । ପତ୍ନୀଙ୍କଠାରୁ ଅଲଗା ହେଲା ପରେ ଆଉ ୧୨ ବର୍ଷ ସେ ବଞ୍ଚିଥିଲେ । ଏହି ସମୟ ମଧ୍ୟରେ ସେ ତିନିଗୋଟି ବଡ଼ ଉପନ୍ୟାସ ଏବଂ 'All the year Round' ନାମକ ଏକ ବିପୁଳ ପ୍ରତିଷ୍ଠାପନ୍ନ ପତ୍ରିକା ସମ୍ପାଦନା କରିଥିଲେ । ଏହି କାର୍ଯ୍ୟ ଫଳରେ ତାଙ୍କର ସ୍ୱାସ୍ଥ୍ୟ ଭଙ୍ଗ ହେବା ଆଶ୍ଚର୍ଯ୍ୟର କଥା ନୁହେଁ । ତାଙ୍କର ଡାକ୍ତର ତାଙ୍କୁ ସାବଧାନ ହେବାକୁ ପରାମର୍ଶ ଦେଲେ । ମାତ୍ର ଜନସାଧାରଣଙ୍କ ଠାରୁ ସେ ଯେଉଁ ବିପୁଳ ସମ୍ବର୍ଦ୍ଧନା ଓ ପ୍ରଶସ୍ତି ଲାଭ କରୁଥିଲେ, ତାହା ତାଙ୍କୁ ଖୁବ୍ ଉଲ୍ଲସିତ କରାଉଥିଲା । ଆଉ ଥରେ ଶ୍ରୋତାମାନଙ୍କୁ ଉପନ୍ୟାସ ପଢ଼ି ଶୁଣାଇବାପାଇଁ ବିଭିନ୍ନସ୍ଥାନକୁ ଯିବାପାଇଁ ସେ ଏକପ୍ରକାର ଦୃଢ଼ନିଷ୍ପତ୍ତି କରିଥିଲେ । ତାହାହିଁ ହେଲା । ମାତ୍ର କେତୋଟି ସ୍ଥାନରେ ଉପନ୍ୟାସ ପାଠକଲା ପରେ ସେ ଖୁବ୍ ଅସୁସ୍ଥ ହୋଇପଡ଼ିଲେ ଓ ତାଙ୍କୁ ଏହି ଯୋଜନା ବର୍ଜନ କରିବାକୁ ପଡ଼ିଲା । ଏହାର କିଛିଦିନ ପରେ ୧୮୭୦ ମସିହା ଜାନୁୟାରୀରେ ବାଧ୍ୟ ହୋଇ ସେ କେବଳ ଲଣ୍ଡନରେ ୧୨ଥର ଉପନ୍ୟାସ ପଢ଼ିବାକୁ ସ୍ଥିର କଲେ ।

ସେ ଯେତେବେଳେ ହଲ୍‌କୁ ପ୍ରବେଶ କରୁଥିଲେ ଓ ହଲ୍‌ରୁ ବାହାରି ଆସୁଥିଲେ, ସେତେବେଳେ ବିପୁଳ ଜନତା ଦଣ୍ଡାୟମାନ ହୋଇ ତାଙ୍କୁ ସମ୍ମାନ ପ୍ରଦର୍ଶନ କରି ତା ସଙ୍ଗେ ସଙ୍ଗେ ଉତ୍ସାହିତ କରୁଥିଲେ ।

ଏହାପରେ ସେ ଏକ ଉପନ୍ୟାସ ଲେଖିବାରେ ମନୋନିବେଶ କଲେ । ଜର୍ଜିନାଙ୍କ ସହିତ ସେ ସେତେବେଳେ ଗାଡ୍‌ସ୍ ହିଲ୍‌ରେ ରହୁଥାନ୍ତି । ସେହିବର୍ଷ ଜୁନ୍‌ମାସରେ ଦିନେ ଖାଇଲାବେଳେ ଜର୍ଜିନା ଲକ୍ଷ୍ୟ କଲେ, ଡ଼ିକେନ୍ସ୍ ଖୁବ୍ ରୁଗ୍ଣ ଦେଖାଯାଉଛନ୍ତି । ଜର୍ଜିନା ତାଙ୍କୁ ଅନୁରୋଧ କରି କହିଲେ, 'ଆସ ଶୋଇପଡ଼ିବ ।' ସେ ଉତ୍ତର ଦେଲେ— "ହଁ ଏଥର ଭୂଇଁରେ ଶୋଇବି ।" ଏହାହିଁ ହେଉଛି ତାଙ୍କର ଶେଷ କଥା । ଜର୍ଜିନା ଆପଣା ବାହୁରେ ତାଙ୍କୁ ଆଉଜାଇ ଆଣୁ ଆଣୁ ସେ ହଠାତ୍ ଚଟାଣ ଉପରେ ହିଁ ଢଳିପଡ଼ିଲେ । ଲଣ୍ଡନ୍‌ରେ ଅନ୍ୟତ୍ର ରହୁଥିବା ତାଙ୍କ ଦୁଇ ଝିଅଙ୍କୁ ଓ କେଟଙ୍କୁ ଶୀଘ୍ର ସେଠାକୁ ଆସିବା ଲାଗି ଖବର ପଠାଗଲା । କେଟ୍, ଇଲେନ୍ ଦୁହେଁ ମଧ୍ୟ ଏକ ସଙ୍ଗେ ଗାଡ୍‌ସ୍‌ହିଲ୍‌କୁ ଆସିଲେ । ତା' ପରଦିନ ୧୮୭୦ ଜୁନ ୯ ତାରିଖ ଦିନ ତାଙ୍କର ମୃତ୍ୟୁ ହେଲା । ତାଙ୍କ ମୃତଦେହକୁ ସମ୍ମାନର ସହିତ ମିନିଷ୍ଟରଆବେରେ ସମାଧି ଦିଆଯାଇଥିଲା ।

ଏହିପରି ଭାବେ ଅମର କଥାକାରଙ୍କ ସାଧନାମୟ ଜୀବନର ହେଲା ଆକସ୍ମିକ ପରିସମାପ୍ତି । ଔପନ୍ୟାସିକମାନଙ୍କ ପକ୍ଷେ ଏକାଧିକ ଉପନ୍ୟାସରେ ହାତଦେବା ସହଜସାଧ୍ୟ ନୁହେଁ । ମାତ୍ର ଡ଼ିକେନ୍ସ୍ ଏକ ସମୟରେ ଏକାଧିକ ଉପନ୍ୟାସ ରଚନା କରିବାରେ ଓ ବିବିଧ ଚରିତ୍ର ଚିତ୍ରଣରେ ମନୋନିବେଶ କରିପାରୁଥିଲେ । ତାଙ୍କର ପ୍ରଥମ ରଚନା ହେଉଛି "ସ୍କେଚେସ୍ ବାଇ ବଜ" (ଖ୍ରୀ: ୧୮୩୬) ତାଙ୍କର ଅନ୍ୟାନ୍ୟ ଅମରକୃତି ଭାବେ ଅଲିଭର ଟ୍ୱିଷ୍ଟ (୧୮୩୭-୩୯), ନିକୋଲାସ୍ ନିକଲବି (୧୮୩୮-୩୯) ଦି ଓଲ୍ଡ଼୍ କ୍ୟୁରିଅସିଟି ସପ (୧୮୪୦-୪୧), ଏ ଟେଲ୍ ଅଫ୍ ଟୁ ସିଟିସ୍ (୧୮୫୯), ଡେଭିଡ଼୍ କପରଫିଲ୍ଡ଼ (୧୮୪୯-୫୦), ହାର୍ଡ଼ ଟାଇମ୍‌ସ (୧୮୫୪), ଗ୍ରେଟ୍ ଏକ୍‌ସପେକ୍ଟେସନ୍‌ସ (୧୮୬୦-୬୧) । ପ୍ରଭୃତି ସୁବିଦିତ ।

# ବଡ଼ ଆଶା

ମୁଖ୍ୟ ଚରିତ୍ର—

ପିପ୍—ପିତୃମାତୃହୀନ ବାଳକ

ଯୋ ଗାର୍ଜେରି—ପିପ୍‌ର ଭିଣୋଇ

ମିସ୍ ହାଭିସମ୍—ମାନସିକ ଅବସାଦଗ୍ରସ୍ତ ନିଃସଙ୍ଗ ମହିଳା

ଏଷ୍ଟେଲା—ମିସ୍ ହାଭିସମ୍‌ଙ୍କ ପାଳିତା କନ୍ୟା

ମି ଜାଗର୍ସ—ଆଇନ୍‌ଜୀବୀ

ଆବେଲ ମାଗଓ୍ୱିଚ ( ମି ପ୍ରୋଭିସ )—ଦାଗି ( convict )

କମ୍ପେସନ—ହିଂସ୍ର ଓ ଦୁଷ୍ଟ ପ୍ରକୃତିର ବ୍ୟକ୍ତି ।

କଥାବସ୍ତୁ—ରହସ୍ୟ ଭେଦ ମୂଳକ ପ୍ରଣୟୋପାଖ୍ୟାନ ( Mystery romance )

ଛୋଟ ପିଲାଟିଏ—ତା ନାଁ ପିପ୍ । ପିଲାଟିଦିନୁ ତାର ବାପ ମା' ମରିଗଲେ । ଗୋଟିଏ ବୋଲି ବଡ଼ଭଉଣୀ । ତାରି ଘରେ ସେ ପ୍ରତିପାଳିତ ହେଉଛି । ଭଉଣୀର୍ ଇଚ୍ଛା ନଥିଲେ ବି ବାପମାଆ ଛେଉଣ୍ଡ ଭାଇଟିକୁ ସେ ବାଧ୍ୟ ହୋଇ ନେଇ ଘରେ ପାଳୁଥାଏ । ମାତ୍ର ଭିଣୋଇ ଯୋ ଗାର୍ଜେରି ଖୁବ୍ ଦୟାଳୁ । ପିପ୍‌କୁ ସେ ଖୁବ୍ ସ୍ନେହ କରନ୍ତି । ସହରର ଏକ ସନ୍ତସନ୍ତିଆ ଅଞ୍ଚଳରେ ସେମାନଙ୍କ ଘର । ପିପ୍ ସେଇ ଅଞ୍ଚଳରେ ଏକାକୀ ବୁଲିବୁଲି କରି କାଳ କଟାଏ ।

ଏବେ ବୁଲ୍ ବୁଲ୍ ଜଣେ ଅଚିହ୍ନା ଲୋକ ସଙ୍ଗେ ତାର ଦେଖା ହୋଇଗଲା । ଦେଖିବାକୁ ଲୋକଟା ଭୟଙ୍କର । ସେ ପିପ୍‌କୁ ଚୁପ୍ ଚାପ ଯାଇ ତା'ପାଇଁ କିଛି ଖାଇବା ଜିନିଷ ଆଣିଦେବାକୁ ଅନୁରୋଧ କଲା । ପିପ୍ ମନା କରି ପାରିଲା ନାହିଁ । ତା ପାଇଁ କିଛି ଖାଦ୍ୟ ଆଣିଦେଲା । ଲୋକଟା ଟିକିଏ ସୁସ୍ଥ ହେବା ପରେ "ମୁଁ ଜେଲରୁ ଖସି ଆସିଛି ବୋଲି କହିଲା, ମତେ ଗୋଟାଏ ଲୁହାକଟା ଫାଇଲ ଆଣି ଦେ ।" ପିପ୍ ଦେଖିଲା ସତକୁସତ ଗୋଡ଼ଟା ତାର ଲୁହା ଶିକୁଳିରେ ବନ୍ଧା ହୋଇଛି । ତାହାକୁ ହିଁ ସେ ଫାଇଲରେ କାଟିବାକୁ ଚାହୁଁଥାଏ । ପିପ୍ ଯାଇ ଗୋଟାଏ ଫାଇଲ ନେଇ ଆସିଲା । ସେଠି ପହଞ୍ଚି ସେ ଦେଖିବାକୁ ପାଇଲା ଆଉ ଜଣେ ଅଚିହ୍ନା ଲୋକ ଆସି ସେଇ ସନ୍‌ସନିଆ ଜାଗାରେ ପହଞ୍ଚି ଯାଇଛି ଓ ବନ୍ଦୀଶାଳାରୁ ଖସି ଆସିଥିବା ଲୋକ ଓ ଏଇ ନବାଗତ— ବ୍ୟକ୍ତିଙ୍କ ମଧ୍ୟରେ ଭୟଙ୍କର ସଂଘର୍ଷ ଚାଲିଛି । ଶେଷରେ ନବାଗତ ଲୋକଟା କୁହୁଡ଼ି ଭିତରେ କୁଆଡ଼େ ଲୁଚିଗଲା । ବନ୍ଦୀଶାଳାରୁ ଖସି ଆସିଥିବା ଯେଉଁ ଲୋକକୁ ପିପ୍ ସାହାଯ୍ୟ କରିଥିଲା ସେ ଡରିଯାଇଥିବା ଭଳି ଦିଶୁଥାଏ । ତଥାପି ସେ ପିପ୍‌କୁ କହିଲା—"ତୁ ମୋର ବହୁତ ଉପକାର କରିଛୁ । ମୁଁ ନିଶ୍ଚେ ଏହା ଶୁଝିଦେବି" ? କେତେଦିନ ପରେ ତା ଭଉଣୀ (ଶ୍ରୀମତୀ ଯୋ) ପିପ୍‌କୁ ଏକ ବିରାଟ କୋଠାଘରକୁ ପଠାଇଲେ । ସେଇ କୋଠା ଘରଟି ହେଉଛି ଶ୍ରୀମତୀ ହାଭିସାମ୍‌ଙ୍କର । ସେ ଥିଲେ ଜଣେ ଅଦ୍ଭୁତ ସ୍ତ୍ରୀ ଲୋକ । ଶ୍ରୀମତୀ ହାଭିସମ ପିପ୍‌ର ଭଉଣୀଙ୍କୁ ଅନୁରୋଧ କରିଥିବାରୁ ହିଁ ସେ ପିପ୍‌କୁ ତାଙ୍କ ଘରକୁ ପଠାଇଲେ ।

ସେଇ ବିରାଟ ଘରର ଏକ ଅନ୍ଧକାର ଆବଦ୍ଧ ପ୍ରକୋଷ୍ଠରେ ଶ୍ରୀମତୀ ହାଭିସାମ ରହୁଥିଲେ । କିଛିବର୍ଷ ପୂର୍ବେ ଜଣେ ଯୁବକ ସଙ୍ଗେ ତାଙ୍କ ବିବାହ ସ୍ଥିର ହୋଇଥିଲା । ମାତ୍ର ଯେଉଁ ଯୁବକ ବିବାହ କରିବାକୁ କଥା ଦେଇଥିଲେ ସେ ନିର୍ଦ୍ଧାରିତ ବିବାହ ଦିନ ବିବାହ କରିବାକୁ ଆସିଲେ ନାହିଁ । ହାଭିସମଙ୍କ ଘରର ଘଣ୍ଟାସବୁ ସେହିଦିନ ସେଇ ମୁହୂର୍ତ୍ତରୁ ଆଉ ଚାଲୁନି । ସେ ନିଜେ ବେଳେବେଳେ ବିବାହ ବେଶରେ ସଜ୍ଜିତ ହୁଅନ୍ତି । ତାଙ୍କ ନିର୍ଦ୍ଦେଶରେ ଏକ ଅବ୍ୟବହୃତ ପ୍ରକୋଷ୍ଠରେ ବିବାହ ଭୋଜି ପାଇଁ ସବୁ ଜିନିଷ ସଜାସଜି ହୋଇ ଥୁଆହୁଏ ।

କୁମାରୀ ହାଭିସାମଙ୍କ ଅନୁରୋଧ ଅନୁସାରେ ତାଙ୍କ ଚିତ୍ତବିନୋଦନ ପାଇଁ ପିପ୍‌କୁ ସବୁଦିନେ ତାଙ୍କ ଘରକୁ ଯିବାକୁ ହେଲା । ବୁଢ଼ୀଙ୍କ ମନକୁ ଖୁସି କରିବା ଥିଲା ତାର ପ୍ରଧାନ କାମ । ମାତ୍ର ବୁଢ଼ୀ ପାଖେ ରହୁଥିଲା ସୁନ୍ଦରୀ ଝିଅଟିଏ । ତା ନା ଏଷ୍ଟେଲା । ସବୁବେଳେ ପିପ୍‌କୁ ଚିଡ଼ାଇ ଆଘାତ ଦେଇ ଆନନ୍ଦ ବୋଧ କରେ । ଦୁଇଟି ପିଲାଙ୍କୁ ପାଖରେ ଦେଖି କୁମାରୀ ହାଭିସାମ ଖୁବ୍ ଖୁସି ହୁଅନ୍ତି । ମାତ୍ର ବିଚିତ୍ର କଥା ସେ ଏଷ୍ଟେଲାକୁ ପିପ୍‌କୁ ଚିଡ଼େଇବା ଲାଗି ପ୍ରୋତ୍ସାହିତ କରନ୍ତି ।

ଭିଣେଇ ଯୋଙ୍କର ଥାଏ ଗୋଟିଏ କମାରଶାଳ । ଭିଣେଇ ଭଉଣୀଙ୍କ ଅବସ୍ଥା ଭଲ ନୁହେଁ । ସେଇ ଦରିଦ୍ର ଶିକ୍ଷାହୀନ ପରିବେଶରେ ପିପ୍‌କୁ କେବେକେବେ ଅଣ ନିଃଶ୍ୱାସୀ ହେଲାଭଳି ଲାଗୁଥାଏ । ପାଠ ପଢ଼ିବାକୁ ତାର ଖୁବ୍ ଇଚ୍ଛା ମାତ୍ର ଭଉଣୀ ଭିଣେଇଙ୍କର ସେଥିପାଇଁ ସାମର୍ଥ୍ୟ ନଥାଏ ।

ହଠାତ୍ ଲଣ୍ଡନର ଜଣେ ଓକିଲ ମିଜାଗର୍ସ ନାମକ ତାକୁ ଏକ ଲୋଭନୀୟ ପ୍ରସ୍ତାବ ଦେଲେ । କହିଲେ—"ତୁ ଲଣ୍ଡନ ଚାଲ, ମୁଁ ସେଠାରେ ତୋର ପଢ଼ାପଢ଼ିର ବ୍ୟବସ୍ଥା କରିଦେବି । ସେଠି ତୁ ଭଦ୍ରଭାବେ ରହି ପଢ଼ାପଢ଼ି କରିବୁ" । ପିପ୍ ପକ୍ଷେ ଏଇ ପ୍ରସ୍ତାବ ଥିଲା ଅପ୍ରତ୍ୟାଶିତ । ଏଇ ସୁବର୍ଣ୍ଣ ସୁଯୋଗ ସେ ହରାଇବାକୁ ଚାହିଁଲା ନାହିଁ । ଭିଣେଇଙ୍କ ମନକୁ ମଧ୍ୟ ଏହା ପାଇଲେ । ପିପ୍ ଭାବିଲା କୁମାରୀ ହାଭିସାମ ବୋଧହୁଏ, ତା ଲାଗି ଏପରି ବ୍ୟବସ୍ଥା କରାଇଛନ୍ତି । ଏଷ୍ଟେଲାର ବିବାହ ଲାଗି ସେ ତାକୁ ପାଠ ପଢ଼ାଇ ଯୋଗ୍ୟ କରାଇବାକୁ ବୋଧହୁଏ ଚାହାଁନ୍ତି ।

ପିପ୍ ଲଣ୍ଡନ ଗଲା । କୁମାରୀ ହାଭିସାମଙ୍କ ଜଣେ ତରୁଣ ଆତ୍ମୀୟ ହର୍ବର୍ଟ ପକେଟଙ୍କ ଘରେ ତାର ରହିବାର ବ୍ୟବସ୍ଥା ହେଲା । ଗୋଟିଏ ଛୋଟ କୋଠରୀରେ ସେ ରହେ । ତାର ଟଙ୍କା ଦରକାର ପଡ଼ିଲେ ସେ ମି. ଜାଗର୍ସଙ୍କ ପାଖକୁ ଯାଇ ଟଙ୍କା ଆଣିବ ଏହାହିଁ ବ୍ୟବସ୍ଥା ହୋଇଥିଲା । କିଏ ତାକୁ ଏପରି ସାହାଯ୍ୟ କରୁଛନ୍ତି ତାହାଙ୍କ ନାମ ଜାଣିବାକୁ ପିପ୍ ମନରେ କୌତୁହଳ ଜାତହେବା ସ୍ୱାଭାବିକ । ଏ ବିଷୟରେ ସେ ଓକିଲଙ୍କୁ

ମଧ୍ୟ ପଚ୍ଛରିଲ । ମାତ୍ର ସେ ତାକୁ କହନ୍ତି—"ତୁମର ସେହି ବ୍ୟକ୍ତିଙ୍କ ବିଷୟରେ ମୁଣ୍ଡ ଖେଳାଇବା ଦରକାର ନାହିଁ । ଠିକଣା ସମୟରେ ସେ ନିଜେ ଆସି ତୁମକୁ ଦେଖାଦେବେ ।"

ଖୁବ୍ ଶୀଘ୍ର ପିପ୍ ଲଣ୍ଡନର ଭଦ୍ରପିଲାମାନଙ୍କ ମଧ୍ୟରୁ ଜଣେ ହୋଇଗଲା । ସେମାନଙ୍କ ମଧ୍ୟରୁ ତାର ଜଣେ ସାଙ୍ଗ ହେଉଛି ବେଣ୍ଟଲେ ଡ୍ରମଲ, (Bentley drummle) । ସେ ଥିଲା ଟିକିଏ ଚଗଲା ପ୍ରକୃତିର । ଯୋ ବେଳେ ବେଳେ ପିପ୍‌କୁ ଦେଖା କରିବା ଲାଗି ଲଣ୍ଡନ ଆସନ୍ତି । ମାତ୍ର ସେ ଆସିଲେ ପିପ୍ ବଡ଼ ଅସ୍ୱାଚ୍ଛନ୍ଦ୍ୟ ଅନୁଭବ କରେ । ଏବେ ତା ର ମଫସଲିଆ ଭାବ ଦୂର ହୋଇଯାଇଛି । ଯୋଙ୍କର ଆଚରଣ ଯୋଗୁ ସେ ସାଙ୍ଗ ମେଳରେ ଲଜ୍ଜିତ ବୋଧ କରେ । ମାତ୍ର ପିପ୍‌ର ଆଉ ଜଣେ ସାଙ୍ଗ ହର୍ବଟ ପକେଟ ଯୋଙ୍କୁ ସେମାନଙ୍କ କୋଠରୀରେ ରଖାଇ ତାଙ୍କର ସୁବିଧା ଅସୁବିଧା ବୁଝିବାରେ ସାହାଯ୍ୟ କରେ । ଯୋ ପ୍ରକୃତରେ ପିପ୍‌କୁ ଖୁବ୍ ଭଲପାଆନ୍ତି । ସେ ଚାଲିଗଲା ପରେ ପିପ୍ ପ୍ରକୃତରେ ତାଙ୍କପ୍ରତି ଉପଯୁକ୍ତ ଦୃଷ୍ଟି ଦେଇ ପାରି ନ ଥିବାରୁ ଆପଣାକୁ ଲଜ୍ଜିତବୋଧ କରେ ।

ଥରେ ଯୋ ଆସି ପିପ୍‌କୁ ଖବର ଦେଲେ—ମିସ୍ ହାଭିସମ୍ ତାକୁ ଦେଖିବାକୁ ଚାହାନ୍ତି । ଏଣୁ ତୁ ମୋ ସାଙ୍ଗରେ ଘରକୁ ଚାଲ । ପିପ୍ ଭଉଣୀଇଙ୍କ ସାଙ୍ଗରେ ଯାଇ ଘରେ ପହଞ୍ଚିଲା । ହାଭିସମ୍ ଓ ଏଷ୍ଟେଲା ଦେଖିଲେ ପିପ୍ ପ୍ରକୃତରେ ବହୁତ ବଦଳି ଯାଇଛି । କଥାବାର୍ତ୍ତା ହେଉ ହେଉ ଏଷ୍ଟେଲା ଟିକିଏ ବାହାରକୁ ଚାଲିଗଲା । ପିପ୍ ସଙ୍ଗେ କଥାବାର୍ତ୍ତା ହେଉଥିବା ବେଳେ ବୁଢ଼ୀ କହିଲେ, ମୋର ପାଳିତା କନ୍ୟା ଏଷ୍ଟେଲା ଏବେ ବଡ଼ ହୋଇଗଲାଣି—ଦେଖିବାକୁ ମଧ୍ୟ ସେ ବେଶ୍ ସୁନ୍ଦର—ତୁ ତାକୁ ଭଲ ପାଇଲେ ଭଲ ହୁଅନ୍ତା । ଏ ଶ୍ରୀଘ୍ର ଲଣ୍ଡନ ଯିବ । ତୁ ଲଣ୍ଡନରେ ତା ସଙ୍ଗେ ନିଶ୍ଚେ ଦେଖା କରିବୁ ।" ଏକଥା ଶୁଣିବା ପରେ ପିପ୍‌ର ଦୃଢ଼ ଧାରଣା ଜନ୍ମିଲା ଏଇ ହାଭିସାମ୍ ହିଁ ଏଷ୍ଟେଲାକୁ ତା ସଙ୍ଗେ ବାହା ଦେବାଲାଗି ମନସ୍ଥ କରି ତାକୁ ଲଣ୍ଡନ ପଠାଇଛନ୍ତି ।

କେତେଦିନ ପରେ ଏଷ୍ଟେଲା ଲଣ୍ଡନରେ ପହଞ୍ଚିଲା । ସଙ୍ଗେ ସଙ୍ଗେ ତାକୁ ବିବାହ କରିବା ଲାଗି ଅନେକ ଲୋକ ଆସି ତା ପାଖେ ଯୁଟିଗଲେ ।

ତାକୁ ଭଲ ପାଉଥିବା ଲୋକଙ୍କ ମଧ୍ୟରୁ ସେ ବେଣ୍ଟଲେ ଦ୍ରୁମଲେଙ୍କୁ ହିଁ ଅଧିକ ପସନ୍ଦ କଲାଭଳି ମନେହେଲା । ପିପ୍ ମଧ୍ୟ ମଝିରେ ମଝିରେ ଯାଇ ଏଷ୍ଟେଲାଙ୍କୁ ଦେଖା କରୁଥାଏ । ସେ ତା ସଙ୍ଗେ ବନ୍ଧୁଭଳି ଭଲ ବ୍ୟବହାର କଲେ ମଧ୍ୟ ପିପ୍ ଜାଣିପାରିଲା ଏଷ୍ଟେଲା ଅନ୍ୟପ୍ରତି ପ୍ରେମାଶକ୍ତ ।

ପିପ୍‌କୁ ଏକୋଇଶ ବର୍ଷ ପୂରିଗଲା । ତାର ଜନ୍ମଦିନ ଦିନ ଜଣେ ଆସି ତା କୋଠରୀରେ ଠକ୍ ଠକ୍ କଲେ । ପିପ୍ କବାଟ ଫିଟାଇ ବାହାରକୁ ଆସିଲା । ବହୁବର୍ଷ ପୂର୍ବେ ସନ୍ସନ୍ଆ ଜାଗାରେ ସେ ଯେଉଁ ଲୋକକୁ ସାହାଯ୍ୟ କରିଥିଲା ଇଏ ଥିଲେ ସେହି । ସେ ପୂର୍ବାପେକ୍ଷା ଅଧିକ ଖଦାକାର, ରୁକ୍ଷ ଦେଖାଯାଉଥାନ୍ତି । ସେ ପିପ୍‌କୁ କହିଲେ "ମୁଁ ତୁମକୁ ଏ ପର୍ଯ୍ୟନ୍ତ ଲଣ୍ଡନରେ ରଖାଇ ତୁମକୁ ପାଠ ପଢ଼ାଇ ବ୍ୟବସ୍ଥା କରିଛି—ତୁମର ସବୁ ଦାୟିତ୍ୱ ବହନ କରିଛି ।" ଏହା ଶୁଣିବା ମାତ୍ରେ ପିପ୍ ମନରେ ଛନକ ପଶିଗଲା—ଏକ ଭୟଙ୍କର ପୂର୍ବତନ ବନ୍ଦୀ ପାଖରେ ସେ ଏତେ ଗୁଡ଼ାଏ ଟଙ୍କା ପାଇଁ ଧାରୁଆ ହୋଇଯାଇଛି । ଏହା ଭାବି ସେ ଚମକି ପଡ଼ିଲା । ଏତେଦିନ ପରେ ସେ ଜାଣିବାକୁ ପାଇଲା ଏହାଙ୍କ ନାଁ ହେଉଛି ଆବେଲ ମାଗୱିଚ । ଆବେଲ କହିଲେ ବହୁବର୍ଷ ପୂର୍ବେ ମୋତେ ଏକ ଦୂର ଉପନିବେଶକୁ ପଠାଇ ଦିଆଯାଇଥିଲା । ସେଠାକୁ ଯାଇ ମୁଁ ଖୁବ୍ ଧନ ସମ୍ପତ୍ତିର ଅଧିକାରୀ ହୋଇପାରିଛି । ମୋର ଇଚ୍ଛା, ଜୀବନରେ ତୁ ଯେଉଁ ସମସ୍ତ ସୁଖ ସୁବିଧା ପାଇପାରିନାହୁଁ ଏବେ ତାହା ସବୁ ଉପଭୋଗ କର । ତୋତେ ହିଁ ମୁଁ ମୋର ପୋଷ୍ୟପୁତ୍ର ଭାବେ ମନେ ମନେ ଗ୍ରହଣ କରିଛି । କିପରି ଲଣ୍ଡନରେ ଚଳୁଛୁ ତାହା ଦେଖିବା ଲାଗି ହିଁ ମୁଁ ଏତେ ଦୂରରୁ ଏଠିକି ଆସିଛି । ତାପରେ ସେ ତାକୁ ଚୁପ୍‌କରି ଆଉ ଗୋଟିଏ ବିଷୟ କହିଲେ । ଏହା ଶୁଣି ପିପ୍‌ର ଭୟ ବିସ୍ମୟ ମଧ୍ୟ ବଢ଼ିଗଲା । ସେ କହିଲେ—"ମୁଁ ଏବେ ଖୁବ୍ ବିପଦରେ ପଡ଼ିଛି । ମୁଁ ଏଠିକି ଆସିଛି ବୋଲି ଜଣା ପଡ଼ିଲେ ମୋର ଆଉ ରକ୍ଷା ନାହିଁ । ମୋତେ ଝଷ୍ଟପ୍ପ ମାରି ଦିଆଯିବ । କାରଣ ଉପନିବେଶରୁ ପଠାଇ ଦିଆଯାଇଥିବା ବନ୍ଦୀଙ୍କର ଲଣ୍ଡନକୁ ଫେରିବା ଏକ ଗୁରୁତର ଅପରାଧ । ଏହାର ଏକମାତ୍ର ଶାସ୍ତି ହେଉଛି ମୃତ୍ୟୁଦଣ୍ଡ । ଏଣୁ ମୋର ଏଠିକି

ଆସିବା ବିଷୟ ଯେପରି କେହି ଜାଣି ନ ପାରନ୍ତି ।" ତାଙ୍କର ଏପରି ବିପଦ କଥା ଶୁଣି ପିପ୍ ସଙ୍କୁଚିତ ବୋଧ କଲା ।

ଏଥର ସେ ବୁଝିପାରିଲା ତା ଜୀବନର ବିରାଟ ଆଶାକୁ ସଫଳ କରାଇବାରେ ମିସ୍ ହାଭିସମ୍ଙ୍କ କୌଣସି ହାତ ନାହିଁ । ମାତ୍ର ତାର ପ୍ରକୃତ ଉପକାରୀ ଏହି ବନ୍ଦୀଠାରୁ ସେ ଏବେ କିପରି ରକ୍ଷା ପାଇବ ତାହା ହିଁ ତା' ପକ୍ଷେ ଚିନ୍ତାର ବିଷୟ ହୋଇ ପଡ଼ିଲା । ସେ ଚିନ୍ତା କଲା କିପରି ସେ ତାହାଙ୍କ ଋଣରୁ ମୁକ୍ତ ହୋଇପାରିବ । ମନେ ମନେ ସେ ଏଇ ଲୋକଟିକୁ ପସନ୍ଦ କରି ପାରୁନଥାଏ; ତଥାପି ସେ ସ୍ଥିର କଲା, ତାର ହିତାକାଙ୍କ୍ଷୀ ଓ ଉପକାରୀ ସାଧନକାରୀଙ୍କୁ ସେ ପାରୁପର୍ଯ୍ୟନ୍ତ ସନ୍ତୁଷ୍ଟ କରିବ । ମାଗଉଇଚ୍‌ଠାରୁ ଶୁଣିଲା ସେ ନିଜର ପରିଚୟ ଗୋପନ ରଖିବା ଲାଗି ପ୍ରୋଭିସ ଛଦ୍ମନାମ ଗ୍ରହଣ କରିଛନ୍ତି । ପ୍ରୋଭିସ ପୁଣି ପିପ୍‌କୁ କହିଲେ ତୋର ମନେଥିବ ବହୁବର୍ଷ ପୂର୍ବେ ସେଇ ସନ୍ତସନ୍ତିଆ ଜାଗାରେ ଜଣେ ବ୍ୟକ୍ତି ସଙ୍ଗେ ମୋର ବିବାଦ ଓ ସଂଘର୍ଷ ହୋଇଥିଲା । ସେ ହେଉଛି ମୋର ପ୍ରଧାନ ଶତ୍ରୁ । ତା ନାଁ ହେଉଛି କମ୍ପେସନ । ମୋର ସର୍ବନାଶ କରିବାକୁ ସେ ପ୍ରତିଜ୍ଞା କରିଛି ।

କମ୍ପେସନ ନାଁ ଶୁଣି ପିପ୍ ଚମକି ପଡ଼ିଲା । ହାଭିସମ୍ଙ୍କ ଦୂର ସମ୍ପର୍କୀୟ ଭାଇ ହର୍ବର୍ଟପକେଟଙ୍କଠାରୁ ପିପ୍ ଶୁଣିଥିଲା ଯେ ହାଭିସମ୍‌ଙ୍କୁ ଯେଉଁ ପ୍ରେମିକଟି ବିବାହ ଦିନ ନ ଆସି ତାଙ୍କୁ ପ୍ରତାରିତ କରିଥିଲା ତାର ନାଁ ହେଉଛି ଆର୍ଥର କମ୍ପେସନ ।

ପିପ୍ ହାଭିସମ୍‌ଙ୍କୁ ଦେଖା କରିବାକୁ ଗଲା । ସେ ତାକୁ ସାହାଯ୍ୟ କରୁଛନ୍ତି ବୋଲି ମିଥ୍ୟା ଧାରଣା ଦେଇଥିବାରୁ ତାଙ୍କୁ ଦି'ପଦ କଡ଼ା କଥା ଶୁଣାଇଦେବା ଥିଲା ତାର ଅଭିପ୍ରାୟ । ହାଭିସମ୍ଙ୍କ ଘରେ ପହଞ୍ଚି ଶୁଣିଲା ଏଷ୍ଟେଲା ନେଣ୍ଟଲଡ୍ରମଲେଙ୍କୁ ବିବାହ କରିବ ବୋଲି ସ୍ଥିର ହୋଇଯାଇଛି । ପିପ୍ ଭାବିଲା, ଜଣେ ଲୋକ ଦ୍ୱାରା ନିଜେ ପ୍ରତାରିତ ହୋଇଥିବାରୁ ଏଷ୍ଟେଲା ମଧ୍ୟ ଜୀବନରେ ସେହିପରି ଅନ୍ୟମାନଙ୍କୁ ଆଘାତ ଦେଉ ଏ ବୋଧହୁଏ ହାଭିସମ୍ ଇଚ୍ଛା କରୁଥିଲେ । ସେଥିପାଇଁ ସେ ଏଷ୍ଟେଲାର ଅନ୍ୟତ୍ର ବିବାହକୁ ସମର୍ଥନ କରୁଛନ୍ତି । ଏଷ୍ଟେଲା ମଧ୍ୟ ପିପ୍‌କୁ ସ୍ମରଣ

କରାଇଦେଇଛୁ ଯେ, ସେ ଯେପରି ତା' ପ୍ରେମରେ ନପଡେ଼ । କାରଣ କେଉଁ ମଣିଷ ପାଇଁ ତା' ହୃଦୟରେ ଦୟା ନାହିଁ । ଏଷ୍ଟ୍ରେଲାର ବାହାଘର ହୋଇଗଲା । ପିପ୍ ଏଷ୍ଟ୍ରେଲା ବାହାହୋଇଗଲାପରେ ମିସ୍ ହାଭିସାମ୍‌ଙ୍କୁ ଦେଖାକରିବା ଲାଗି ଆଜଥରେ ଆସିଛି । ସେତିକବେଳେ ସେଇ ପୁରାତନ ଧୂଳିଧୂସରିତ ଅଟ୍ଟାଳିକାରେ ଏକ ଦୁର୍ଘଟଣା ଘଟିଗଲା । ସେଠାରେ ହଠାତ୍ ନିଆଁ ଲାଗିଗଲା । ପିପ୍ ବୁଢ଼ୀଙ୍କୁ ନିଆଁରୁ ଉଦ୍ଧାର କରିବାକୁ ଚେଷ୍ଟା କରିଛି; ମାତ୍ର ଅଗ୍ନିରେ ପୋଡ଼ି ହୋଇ ସେ ମରିଗଲେ । ଘରର ମଧ୍ୟ ବହୁ ଅଂଶ ନଷ୍ଟ ହୋଇଗଲା ।

ତାହାଙ୍କର କମ୍ପେସନ ସହ ହାଭିସମ୍‌ଙ୍କ ସମ୍ପର୍କ ବିଷୟରେ ପିପ୍ ପ୍ରୋଭିସଙ୍କଠାରୁ ଯାହା ଶୁଣିଥିଲା ଓ ଅନ୍ୟ ଯେଉଁ ସବୁ ପ୍ରମାଣ ପାଇଥିଲା ସେଥିରୁ ସେ ବୁଝିପାରିଥିଲା ଯେ, ପ୍ରୋଭିସ ହେଉଛି ଏଷ୍ଟ୍ରେଲାର ବାପା; କିନ୍ତୁ ଏକଥା ସେ ଜାଗର୍ସ ଛଡ଼ା ଆଉ କାହାକୁ କହି ନଥିଲା । ଏଷ୍ଟ୍ରେଲାର ମା ତା ହେଲେ ହେଉଛି ଏଇ ଗୃହରକ୍ଷାକାରୀ । ପିପ୍ ମଧ୍ୟ ଜାଣିପାରିଲା, କମ୍ପେସନ ବର୍ତ୍ତମାନ ଲଣ୍ଡନରେ ରହିଛି ଓ ପ୍ରୋଭିସକୁ ମାରିଦେବାକୁ ଚକ୍ରାନ୍ତ କରୁଛି । ଆପଣାର ପାଳକ ପିତାକୁ ରକ୍ଷା କରିବା ଲାଗି ପିପ୍ ହର୍ବର୍ଟ ପକେଟଙ୍କ ସହାୟତାରେ ପ୍ରୋଭିସକୁ ଇଂଲଣ୍ଡ ଛାଡ଼ିଲେ ବାଟେ ଫ୍ରାନ୍‌ସକୁ ପଠାଇଦେବାକୁ ଉଦ୍ୟମ କଲା । ପିପ୍‌ର ବ୍ୟବସ୍ଥା ଅନୁଯାୟୀ ସେ ଫ୍ରାନ୍‌ସରେ ଯାଇ ବୁଡୀଙ୍କ ସଙ୍ଗେ ଦେଖା କରିବ । ଗୋପନରେ ଖୁବ୍ ସାବଧାନରେ ରହି ଏହି ବିଷୟଟି କାର୍ଯ୍ୟକାରୀ କରିବାରେ ସେ ଲାଗିଥାଏ । ମାତ୍ର ପ୍ରୋଭିସକୁ ବୋଟରେ ବସାଇବା ବେଳକୁ କମ୍ପେସନ ଆସି ହାଜର ହୋଇଗଲା । ପ୍ରୋଭିସ ଓ କମ୍ପେସନଙ୍କ ମଧ୍ୟରେ ଶେଷ ଲଢ଼େଇ ଆରମ୍ଭ ହୋଇଗଲା ପାଣିଭିତରେ । ମାତ୍ର ଶେଷରେ ପ୍ରୋଭିସ ହିଁ କମ୍ପେସନକୁ ମାରିଦେଲା । ପ୍ରୋଭିସକୁ ତା'ପରେ ଜେଲକୁ ନିଆଗଲା । ତାର ବିଚାର ଆରମ୍ଭ ହେବା ପୂର୍ବରୁ ହିଁ ସେ ସେଇ ବନ୍ଦୀଶାଳାରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲା ।

ଏହାପରେ ପିପ୍‌ର ଦେହ ଅସୁସ୍ଥ ହେଲା । ଏହା ଶୁଣି ଜୋ ଲଣ୍ଡନକୁ ଆସି ତାର ସେବା ଶୁଶ୍ରୂଷା କଲା । ଜୀବନରେ ବହୁ ଅଭିଜ୍ଞତା ଲାଭ କରି ପିପ୍ ହୋଇଛି ପ୍ରବୀଣ । ସେ ଏବେ ବୁଝିପାରିଛି ପିଲାଟି

ଦିନରୁ ଯିଏ ତା' ପାଇଁ ଏତେ କଷ୍ଟ ସହି ତାକୁ ସ୍ନେହ କରି ଆସିଛନ୍ତି ସେ ହେଉଛନ୍ତି ତାର ଏଇ ମଉସା । ତାଙ୍କ ପାଇଁ ଯେ ସେ ଲଜ୍ଜାବୋଧ କରି ଆସିଛି ଏହା ଏକ ବିରାଟ ଭୁଲ । ଇତି ମଧ୍ୟରେ ତା ଭଉଣୀଙ୍କ ମୃତ୍ୟୁ ହୋଇଗଲା । ସେ ଆଉ ଜଣକୁ ବିବାହ କଲେ । ତାଙ୍କର ଏହି ବିବାହ ସୁଖକର ହୋଇଥିଲା । ପିପ୍ ତାଙ୍କ ଘରକୁ କେତେଦିନ କଟାଇବା ପାଇଁ ଆସିଛି । ଏଷ୍ଟେଲାକୁ ହରାଇ ଥିବାରୁ ତାର ମନ ବିଷଣ୍ଣ ଓ ସେ ନିଃସଙ୍ଗ ବୋଧ କରୁଥାଏ । ପରେ ହର୍ବର୍ଟ ପକେଟ ଓ ପିପ୍ ମିଶି ଲଣ୍ଡନରେ ବ୍ୟବସାୟ ଆରମ୍ଭ କଲେ ।

ଏଗାର ବର୍ଷ ବିତିଗଲା ପରେ ପିପ୍ ଥରେ ମଉସା ଯୋଙ୍କୁ ଦେଖା କରିବାକୁ ଯାଇଥିଲା । କୌତୂହଳବଶତଃ ସେ ମଧ୍ୟ ମିସ୍ ହାଭିସମ୍‌ଙ୍କ ପୂର୍ବ ପରିଚିତ ଅଟ୍ଟାଳିକା ଦେଖିବାକୁ ଗଲା । ସେଇଠି ସେ ଏଷ୍ଟେଲାକୁ ବିଧବା ରୂପରେ ଦେଖିବାକୁ ପାଇ ବିସ୍ମିତ ହୋଇଗଲା । ସେଇ ଆର୍ଦ୍ର ଅଞ୍ଚଳରେ ବୁଲି ତାର ଅହଂକାର ବହୁ ପରିମାଣରେ ଥଣ୍ଡା ପଡ଼ିଯାଇଥାଏ । ସେ ହୋଇଯାଇଥାଏ ବହୁତ ନରମ । ସେ ପିପ୍‌କୁ କହିଲା—ମୋର ତୁମ କଥା ଅନେକଥର ମନେପଡ଼େ । ମାତ୍ର ମୁଁ ନିରୁପାୟ" । ପିପ୍ ଦେଖିପାରିଛି ବୋଧହୁଏ ସେ ଆଉ ଏଷ୍ଟେଲା ପରସ୍ପରଠାରୁ ଦୂରେଇ ରହିବେନି । ଦୁହେଁଯାକ ହାତ ଧରାଧରି ହୋଇ ସେଠାରୁ ବାହାରି ପଡ଼ିଲେ । ଯାହା ଦୁହିଁଙ୍କ ଜୀବନରେ ବିପୁଳ ପ୍ରଭାବ ପକାଇଥିଲା ।



# କାଉଣ୍ଟ ଲିଓ ଟଲଷ୍ଟୟ

ବିଶ୍ୱ ସାହିତ୍ୟର ମହାନ୍ ଔପନ୍ୟାସିକ ଓ କଥାଶିଳ୍ପୀମାନଙ୍କ ମଧ୍ୟରୁ ଟଲଷ୍ଟୟ ଅନ୍ୟତମ । ଋଷଦେଶରେ ଜନ୍ମ ଗ୍ରହଣ କରି ଓ ଋଷ ଭାଷାରେ ସାହିତ୍ୟ ସାଧନା କରିଥିଲେ ହେଁ ତାହାଙ୍କ ଖ୍ୟାତି କେବଳ ଋଷିଆରେ ସୀମାବଦ୍ଧ ରହି ନାହିଁ । ପ୍ରାଚ୍ୟ ପାଶ୍ଚାତ୍ୟ ଉଭୟ ଭୂଖଣ୍ଡରେ ତାହାଙ୍କ ରଚନାବଳୀ ବହୁ ଜନପ୍ରିୟ ଓ ଉଚ୍ଚ ପ୍ରଶଂସିତ । ଏପରି ସୌଭାଗ୍ୟ ପୃଥିବୀର ଖୁବ୍ କମ୍ ଲେଖକ ଲାଭ କରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଟଲଷ୍ଟୟଙ୍କ ଜୀବନ ଥିଲା ତାହାଙ୍କ ସାହିତ୍ୟ ସୃଷ୍ଟି ଭଳି ମହାନ ଓ ଆଦର୍ଶ ସ୍ଥାନୀୟ । ସେ ଥିଲେ ଏକାଧାରରେ ମାନବପ୍ରେମୀ, ତ୍ୟାଗୀ, ସମାଜ ସଂସ୍କାରକ, ନୀତିବାଦୀ, ଭାବୁକ ଓ ଧର୍ମ ପ୍ରଚାରକ । ସେ ଯାହା ଉପଲବ୍‌ଧି କରିଥିଲେ ତାହାକୁ ନିର୍ଭୀକ ଭାବେ ସାହିତ୍ୟ ମାଧ୍ୟମରେ ପ୍ରଚାର କରିବା ସଙ୍ଗେ ସଙ୍ଗେ ନିଜ ଜୀବନରେ ମଧ୍ୟ ପ୍ରତିପାଳନ କରିଯାଇଛନ୍ତି । ଏଣୁ ତାହାଙ୍କ ଜୀବନ ଓ ସାହିତ୍ୟ ସୃଷ୍ଟି ମଧ୍ୟରେ ଥିଲା ସାମଞ୍ଜସ୍ୟ ଓ ସଙ୍ଗତି । ଏହା ହିଁ ଟଲଷ୍ଟୟଙ୍କ ମହାନ୍ ବୈଶିଷ୍ଟ୍ୟ ।

ଖ୍ରୀ: ୧୮୨୮ ମସିହାରେ ଋଷିଆର ୟାସନୟା ପୋଲିୟାନା ନାମକ ଗ୍ରାମରେ ଏକ ଅତି ସମ୍ଭ୍ରାନ୍ତ ସାମନ୍ତ ପରିବାରରେ ଟଲଷ୍ଟୟ ଭୂମିଷ୍ଠ ହୋଇଥିଲେ । ଶୈଶବରେ ତାଙ୍କ ପିତାମାତାଙ୍କ ମୃତ୍ୟୁ ହୋଇଥିଲା । ବୟଃପ୍ରାପ୍ତ ହେବା ପରେ ସେ କାଜାନ ବିଶ୍ୱବିଦ୍ୟାଳୟ ଓ ସେଣ୍ଟ ପିଟର୍ସ ବୁର୍ଗରେ ଅଧ୍ୟୟନ କରିଥିଲେ । ମାତ୍ର ଅମନୋଯୋଗୀ ଓ ବିଳାସ ପ୍ରିୟ ହେବା ଯୋଗୁ ସେ ଏଠାରୁ ଉପାଧି ଲାଭ କରିବାକୁ ସମର୍ଥ ହୋଇପାରି ନଥିଲେ । ଏହାପରେ ନିଜ ଜମିଦାରୀରେ ସେ

ଆସି ରହିଲେ । ଏହି ସମୟରେ ଦୁର୍ଗତ କୃଷକମାନଙ୍କ ଅବସ୍ଥା ଦେଖି ତାହାଙ୍କ ହୃଦୟ ବିଗଳିତ ହୋଇଗଲା ଓ ସେ ସେମାନଙ୍କ ଉନ୍ନତି ଲାଗି ବିବିଧ ଉଦ୍ୟମ କଲେ । ମାତ୍ର କୃଷକମାନେ ତାଙ୍କୁ ସନ୍ଦେହ କରିବାକୁ ଲାଗିଲେ । ୧୮୫୧ରେ ସେ କକେସସ୍ ଓ କ୍ରିମିଆ ଯୁଦ୍ଧରେ ସୈନ୍ୟ ବାହିନୀରେ ଯୋଗଦେଇଥିଲେ । ଏହି ସମୟରୁ ତାଙ୍କର ସାହିତ୍ୟିକ ଜୀବନର ସୂତ୍ରପାତ ହେଲା । ତାଙ୍କର ପ୍ରଥମ ରଚନା 'ସେବା ଷ୍ଟୋପଲର କାହାଣୀ' ଓ 'ଶୈଶବ' (୧୮୫୨) ଏହି ସମୟରେ ପ୍ରକାଶ ପାଇଥିଲା । କହିବା ଅନାବଶ୍ୟକ, ତାହାଙ୍କ ଏହି ପ୍ରାଥମିକ ରଚନା ଦୁଇଟି ପ୍ରଶଂସା ଅର୍ଜନ କରିଥିଲା ଟଲଷ୍ଟୟଙ୍କ ମନୋବୃତ୍ତି ଭିନ୍ନ ଉପାଦାନରେ ଗଠିତ । ଏଣୁ ରୁଷିଆର ତତ୍କାଳୀନ ସାହିତ୍ୟିକ ଗୋଷ୍ଠୀ ଓ ସେମାନଙ୍କ ସୃଷ୍ଟିକୁ ଟଲଷ୍ଟୟ ଯେ ପସନ୍ଦ କରୁନଥିବା ସ୍ୱାଭାବିକ । ଏହାପରେ ସେ ୟୁରୋପର ପଶ୍ଚିମାଞ୍ଚଳ ପରିଭ୍ରମଣ କରିଥିଲେ । ଏହା ତାହାଙ୍କ ଦୃଷ୍ଟିକୋଣକୁ ଅଧିକ ପରିବର୍ତ୍ତିତ କରିଥିଲା । ବସ୍ତୁବାଦୀ ସଭ୍ୟତାକୁ ସେ ଘୃଣା କରିବାକୁ ଆରମ୍ଭ କଲେ—ରୁଷିଆ ତାହାର ଅନ୍ଧ ଅନୁକରଣ କରୁ ଏହା ତାଙ୍କର ଅଭିପ୍ରାୟ ନଥିଲା ।

ବିଦେଶ ଭ୍ରମଣ ପରେ ସେ ପୁଣି ନିଜ ଜମିଦାରିକୁ ଫେରିଆସିଲେ । ଏହି ସମୟରେ ରୁଷିଆର କୃଷକମାନେ ଦରିଦ୍ର, ଭୂ-ସତ୍ତ୍ୱହୀନଭାବେ କାଳକାଟୁଥିଲେ । ଏହା ଦେଖି ତାହାଙ୍କ ମନରେ ଭାବାନ୍ତର ସୃଷ୍ଟି ହେଲା ଓ ସେ ନିଜେ ଜମିଦାରୀର କୃଷକ ଓ ଶ୍ରମଜୀବୀମାନଙ୍କୁ ସ୍ୱାଧୀନତା ଅର୍ପଣ କରିଥିଲେ । କୃଷକ ସନ୍ତାନମାନଙ୍କ ଲାଗି ବାରଗୋଟି ବିଦ୍ୟାଳୟ ସ୍ଥାପନ କରି ସେ ନିଜେ ଶିକ୍ଷକତା କରିବାକୁ ଲାଗିଲେ । ତାଙ୍କର ଶିକ୍ଷାଦାନ ପଦ୍ଧତି ଥିଲା ଅଭିନବ । ବିଦ୍ୟାଳୟର ପାଠ୍ୟଭାବେ ସେ ଯେଉଁ ସାହିତ୍ୟ ଓ ଗଣିତ ପୁସ୍ତକ ଲେଖିଥିଲେ ତାହା ଖୁବ୍ ଆଦୃତ ହୋଇଥିଲା । କୃଷକମାନଙ୍କୁ ଉନ୍ନତ କରିବା ଲାଗି ସେ ଯଥାସମ୍ଭବ ଚେଷ୍ଟା କରିଥିଲେ ହେଁ ଉପଯୁକ୍ତ କର୍ମୀର ଅଭାବ ଓ ଲୋକମାନଙ୍କ ଅସହଯୋଗ ଯୋଗୁଁ ତାହା ସଫଳ ହୋଇ ପାରିଲା ନାହିଁ । ବିଦ୍ୟାଳୟଗୁଡ଼ିକ ମଧ୍ୟ ତାଙ୍କୁ ବନ୍ଦ କରିଦେବାକୁ ପଡ଼ିଲା ।

ଚଉତିରିଶ ବର୍ଷ ବୟସରେ ସେ ସୋନ୍ୟା ନାମକ ଏକ ରୂପବତୀ ମହିଳାଙ୍କୁ ବିବାହ କରି ନିଜ ଜମିଦାରୀରେ ଅବସ୍ଥାନ କରିବାକୁ ଲାଗିଲେ ।

ତାଙ୍କର ଦାମ୍ପତ୍ୟ ଜୀବନ ସୁଖକର ହୋଇଥିଲା ଏବଂ ସେ ନିଶ୍ଚିନ୍ତଭାବରେ ସାହିତ୍ୟ ରଚନାରେ ମନୋନିବେଶ କରିଥିଲେ । ଏହି ସମୟରେ ସେ ରଚନା କରିଥିଲେ ପୃଥିବୀ ସାହିତ୍ୟର ଦୁଇଟି ଅବିନଶ୍ୱର ଉପନ୍ୟାସ 'ଯୁଦ୍ଧ ଓ ଶାନ୍ତି' (War and Peace) (୧୮୬୨-୬୯) ଏବଂ 'ଅନାକାରେନିନା' (୧୮୭୫-୭୭) । ଯୁଦ୍ଧ ଓ ଶାନ୍ତି ଏକ ଐତିହାସିକ ଉପନ୍ୟାସ । ଶେଷୋକ୍ତ ଉପନ୍ୟାସଟି ସମକାଳୀନ ସାମାଜିକ ଆଚରଣକୁ ଉପଜୀବ୍ୟ କରି ରଚିତ । ଏହି ଦୁଇଟି ଉପନ୍ୟାସରେ ଋଷିପ୍ରବୀଣ ଟଲଷ୍ଟୟଙ୍କ ବ୍ୟକ୍ତିତ୍ୱର ଆଦ୍ୟ ସୂଚନା ମଧ୍ୟ ନିହିତ । କେତେକ ଆଲୋଚକଙ୍କ ମତରେ 'ଯୁଦ୍ଧ ଓ ଶାନ୍ତି' ପୃଥିବୀର ସର୍ବଶ୍ରେଷ୍ଠ ଉପନ୍ୟାସ । ସମାଜର ସମ୍ଭ୍ରାନ୍ତ ଓ ବୁଦ୍ଧିଜୀବୀଗୋଷ୍ଠୀଙ୍କ ଜୀବନର ଅଧୋଗତି ଓ ନିରର୍ଥକତା, ସେମାନଙ୍କ ଉଦ୍‌ଭ୍ରାନ୍ତ କାମନା, ସମକାଳୀନ ସମସ୍ୟା ସମାଧାନ କରିବାରେ ସେମାନଙ୍କ ବ୍ୟର୍ଥତା, କୃଷକଙ୍କ ପ୍ରତି ଅତ୍ୟାଚାର ମନୋବୃତ୍ତିକୁ 'ଟଲଷ୍ଟୟ' ଅନାକାରେନିନା ଉପନ୍ୟାସରେ ଅତ୍ୟନ୍ତ ସରସ ଓ ଜୀବନ୍ତ ଭାବରେ ରୂପଦେଇ ଅଛନ୍ତି ।

ଏହାପରେ ତାଙ୍କ ଜୀବନର ଗତିପଥ ପରିବର୍ତ୍ତିତ ହୋଇଗଲା । ଜୀବନର ଲକ୍ଷ୍ୟ, ଉଦ୍ଦେଶ୍ୟ ବିଷୟ ନେଇ ସେ ଗଭୀର ଭାବେ ଚିନ୍ତା କରି ଅବଶେଷରେ ଏକ ନୂତନ ଜୀବନାଦର୍ଶ ଉପଲବ୍ଧି କରିପାରିଲେ ସଂସାରରେ ରହି ମଧ୍ୟ ସେ ଅନାସକ୍ତ ଓ ସନ୍ନ୍ୟାସୀ ଭଳି ତ୍ୟାଗପୂତ ସରଳ ଜୀବନ ଯାପନ କରିବାକୁ ଲାଗିଲେ । ଏହି ସମୟରେ ଓ ଏହାପରେ ସେ ଯାହା କିଛି ରଚନା କରିଥିଲେ; ତହିଁରେ ତାଙ୍କର ନୂତନ ଜୀବନ ଦର୍ଶନ ଓ ନୈତିକ ବିଶ୍ୱାସଧାରା ପ୍ରତିଫଳିତ ହୋଇଥିଲା । ନିଜର ସମସ୍ତ ସମ୍ପତ୍ତି ସେ ପତ୍ନୀ ଓ ପୁତ୍ରକନ୍ୟାଙ୍କୁ ଅର୍ପଣ କରି ସାଧାରଣ କୃଷକ ଭାବେ ଜୀବନ ଯାପନ କରିବାକୁ ଲାଗିଲେ । କୃଷକର ପରିଧେୟ ପରିଧାନ କରି କୃଷିକ୍ଷେତ୍ରରେ କାମ କରିବାରେ ସେ ପରମ ଆନନ୍ଦ ଲାଭ କରୁଥିଲେ । ତଥାପି ସେ ସାହିତ୍ୟ ସୃଷ୍ଟିରୁ ବିରତ ହୋଇ ନ ଥିଲେ । ଏହି ସମୟରେ ହିଁ ସେ ତାଙ୍କର ସୁପ୍ରସିଦ୍ଧ ଗଳ୍ପଗୁଡ଼ିକ ରଚନା କରିଥିଲେ । ତାହାଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକ ସରଳ ଭାଷାରେ ରଚିତ । ଏହା ଯେପରି ଆଦର୍ଶବ୍ୟଞ୍ଜକ ସେହିପରି ଚିତ୍ତାକର୍ଷକ ଓ ଶିକ୍ଷାପ୍ରଦ ।

୧୮୭୯ ବେଳକୁ କାଉଣ୍ଟ (ଜମିଦାର) ଟଲଷ୍ଟୟଙ୍କ ପ୍ରକୃତ ଋଷିର ବ୍ୟକ୍ତିତ୍ୱଟି ସୁପରିସ୍ଫୁଟ ହୋଇଯାଇଥିଲା । ସାହିତ୍ୟ ରଚନା ପ୍ରତି ସେ ଆଉ ମନଯୋଗୀ ହୋଇ ନଥିଲେ । ଜନସମାଜକୁ ଉପଦେଶାତ୍ମକ ବାର୍ତ୍ତା ଦେବାକୁ ହିଁ ସେ ଆପଣାର ଲକ୍ଷ୍ୟରୂପେ ଗ୍ରହଣ କରିନେଇଥିଲେ । ଧର୍ମ, ସାମାଜିକ ସମସ୍ୟା, କଳା ପ୍ରଭୃତି ସମ୍ପର୍କରେ ତାହାଙ୍କ ବିଚାରଧାରାକୁ ହିଁ ସେ ଜନସାଧାରଣଙ୍କ ନିକଟରେ ଉପସ୍ଥାପିତ କରିବାକୁ ଲାଗିଲେ । 'ସ୍ୱୀକାରୋକ୍ତି' (୧୮୭୯) ନାମକ ପୁସ୍ତକରେ ତାହାଙ୍କ ନୂତନ ଭାବନା ଓ ବିଚାରଧାରା ଅଭିବ୍ୟକ୍ତ । ଶାରୀରିକ ଶ୍ରମକୁ ସେ ଏଥିରେ ଉଚ୍ଚସ୍ଥାନ ଦେଇଛନ୍ତି । ଏହାପରେ ସେ ଆପଣାର ଧର୍ମବିଶ୍ୱାସ ଓ ନୈତିକ ଧାରଣା ପ୍ରଚାର କରିବାକୁ ଲାଗିଲେ । ଆନୁଷ୍ଠାନିକ—ବିଧିବିଧାନ ବିମୁକ୍ତ, ଦେବମନ୍ଦିର—ଅନୁଷ୍ଠାନ—ନିରପେକ୍ଷ ଓ ପୌରୋହିତ୍ୟ ରହିତ ଧର୍ମାଚରଣ ହିଁ ତାଙ୍କ ପ୍ରଚାରର ମୂଳମନ୍ତ୍ର ଥିଲା । ମନୁଷ୍ୟ ମନୁଷ୍ୟଙ୍କ ପ୍ରେମକରୁ ଏହା ହିଁ ଥିଲା ତାଙ୍କ ପ୍ରଚାର ଓ ଧାର୍ମିକ ଜୀବନଚର୍ଯ୍ୟାର ମୂଳ ଉଦ୍ଦେଶ୍ୟ । ଏହି ଦୃଷ୍ଟିରୁ ବୁଦ୍ଧଦେବଙ୍କ ଧର୍ମମତ ସହ ତାହାଙ୍କ ଧାର୍ମିକ ଧାରଣାର ସାମଞ୍ଜସ୍ୟ ଥିଲା । ତାହାଙ୍କ ରଚିତ 'କଣ କରିବାକୁ ହେବ' (୧୮୮୪) ରେ ସେ ଧନସମ୍ପଦର କୁପରିଣାମ ଦର୍ଶାଇ ଆଳସ୍ୟ ଓ ସୁଖ ସ୍ୱାଚ୍ଛନ୍ଦ୍ୟରେ ରହୁଥିବା ଧନୀଗୋଷ୍ଠୀ ଜନସାଧାରଣଙ୍କ ଗଳଗ୍ରହ ହେବାରୁ ବିରତ ହେବାକୁ ଆହ୍ୱାନ କରିଛନ୍ତି । କଳାକଣ' (୧୮୯୭) ପୁସ୍ତକରୁ କଳାସୃଷ୍ଟିର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସମ୍ପର୍କରେ ତାହାଙ୍କର ଅଭିମତ ଉତ୍ତମରୂପେ ଜଣାଯାଏ । ଏଥିରେ ସେ 'କଳା ପାଇଁ କଳାର ସୃଷ୍ଟି' ଧାରଣାକୁ ବିରୋଧ କରି ପୃଥିବୀର ବହୁ ବିଶିଷ୍ଟ ଲେଖକ ଓ ସେମାନଙ୍କ କୃତିର ନ୍ୟୂନତା ପ୍ରତିପାଦନ କରିଛନ୍ତି । ଧର୍ମବୋଧକୁ ଜାଗ୍ରତ କରିବା ଓ ସାମାଜିକ ଉଦ୍ଦେଶ୍ୟ ସାଧନରେ ସହାୟତା କରିବା କଳାର ଲକ୍ଷ୍ୟ ହେବା ଉଚିତ, ଏହା ହିଁ ଥିଲା ତାଙ୍କର ଦୃଢ଼ ମତ । ଏହି ଦୃଷ୍ଟିରୁ ସେ ସ୍ୱରଚିତ କେତେକ ମହାନ ଗ୍ରନ୍ଥର ମଧ୍ୟ ନିନ୍ଦା କରିଛନ୍ତି । ଏତଦ୍ ସତ୍ତ୍ୱେ ସେ ଏହି ସମୟରେ ଦୁଇଟି ଉପନ୍ୟାସ ରଚନା କରିଥିଲେ । ଏହି ଦୁଇଟି ରଚନା ହେଉଛି 'କ୍ରୁଇଜର ସୋନାଟା' (୧୮୮୯) ଓ ପୁନର୍ଜନ୍ମ (୧୯୦୦) ।

ତାହାଙ୍କ ନିଷ୍ଠାପର ଜୀବନ ଯାପନ ଓ ଆଧ୍ୟାତ୍ମିକ ଜୀବନର ବିକାଶ ଫଳରେ ପ୍ରସ୍ତୁତ ହୋଇଥିବା ତାଙ୍କ ଯୋଗୁ ଅନେକେ ତାଙ୍କର ବୈଶିଷ୍ଟ୍ୟକୁ ସ୍ୱୀକାର କରିଥିଲେ । ତାଙ୍କର ବହୁ ପ୍ରବନ୍ଧ ଓ ରଚନାକୁ ତତ୍କାଳୀନ ଜାର ସରକାର ବାଜ୍ୟାପ୍ତ କରିଥିଲେ ହେଁ ତାଙ୍କୁ ଶାରୀରିକ କଠୋର ଦଣ୍ଡରେ ଦଣ୍ଡିତ କରିପାରି ନଥିଲେ, କାରଣ ସେତେବେଳକୁ ଟଲଷ୍ଟୟଙ୍କ ନାମ ବିଶ୍ୱବିଖ୍ୟାତ ହୋଇ ଯାଇଥିଲା ।

ଖ୍ରୀ: ୧୮୮୧ରେ ସେ ସପରିବାର ଆସି ମସ୍କୋରେ ଅବସ୍ଥାନ କଲେ । ନଗରବାସୀ କାରଖାନା ଶ୍ରମିକମାନଙ୍କ ଦୁର୍ଦ୍ଦଶା ଏଠାରେ ତାଙ୍କୁ ଅତ୍ୟନ୍ତ ବ୍ୟଥିତ ଓ ଚିନ୍ତିତ କରିଥିଲା । ଆପଣାର ସମୁଚ ଆଦର୍ଶ ଓ ଉଦାରନୈତିକ ଧାରଣାକୁ ତାଙ୍କ ପରିବାରବର୍ଗ ସମର୍ଥନ କରୁନଥିବାରୁ ତାଙ୍କର କ୍ଷୋଭର ସୀମା ନଥିଲା । ଇତ୍ୟବସରରେ ସେ ନିଜର ସମସ୍ତ ସମ୍ପତ୍ତି ତ୍ୟାଗ କରିଦେଲେ ଓ ତାଙ୍କର ପ୍ରକାଶିତ ପୁସ୍ତକାବଳୀକୁ ସର୍ବ-ସାଧାରଣଙ୍କର ସମ୍ପତ୍ତି ବୋଲି ଏକ ଘୋଷଣା ପ୍ରଚାର କରିଦେଲେ । ଏହାଫଳରେ ସ୍ତ୍ରୀଙ୍କ ସହିତ ତାଙ୍କର ପ୍ରବଳ ଦ୍ୱନ୍ଦ୍ୱ ଓ ମତଭେଦ ସୃଷ୍ଟି ହେଲା । ନିଜର ସମ୍ପତ୍ତି ଓ ରଚନାବଳୀକୁ ସର୍ବସାଧାରଣଙ୍କୁ ଦାନ କରିବାରେ ସ୍ତ୍ରୀ ବାଧା ଦେଇଥିବାରୁ ସେ ତାଙ୍କୁ କ୍ଷମା କରି ପାରି ନ ଥିଲେ । ପାରି-ବାରିକ ଜୀବନ କ୍ରମେ ତାଙ୍କୁ ଅସହ୍ୟ ହେଲା ।

ଅବଶେଷରେ ସେ ଦିନେ ହଠାତ୍ ଗୃହତ୍ୟାଗ କରି ଅଜ୍ଞାତ ସ୍ଥାନ ଉଦ୍ଦେଶ୍ୟରେ ଯାତ୍ରା କଲେ । ମାତ୍ର ପଥ ମଧ୍ୟରେ ସେ ହଠାତ୍ କଠିନ ପୀଡ଼ାଗ୍ରସ୍ତ ହୋଇପଡ଼ିଲେ । ରେଳରେ ଯାଉ ଯାଉ ତାଙ୍କର ଅସୁସ୍ଥତା ଆହୁରି ବଢ଼ିଗଲା । ଆସ୍ତାପୋଭୋ ନାମକ ଏକ ରେଳ ଷ୍ଟେସନରେ ୧୯୧୦ ମସିହା ନଭେମ୍ବର ସାତ ତାରିଖ ଦିନ ୮୨ ବର୍ଷ ବୟସରେ ଏହି ଅମର କଥାକାରଙ୍କ ଦେହାନ୍ତ ହୋଇଥିଲା । ଆଧୁନିକ ସାହିତ୍ୟ ତଥା ଚିନ୍ତାରାଜ୍ୟକୁ ତାଙ୍କ ପରି ପ୍ରଭାବିତ କରୁଥିବା ବ୍ୟକ୍ତି ଜଗତରେ ବିରଳ । ସମାଜ ସମ୍ପର୍କୀୟ ତାହାଙ୍କ ବିଚାରଧାରା ପୃଥିବୀର ସକଳ ରାଜ୍ୟରେ ପ୍ରଭାବ ବିସ୍ତାର କରିଅଛି । ମହାତ୍ମାଗାନ୍ଧି ମଧ୍ୟ ଟଲଷ୍ଟୟଙ୍କ ସାହିତ୍ୟ ତଥା ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ।

ରୁଷିଆରେ ସାମ୍ୟବାଦୀ ଶାସନ ପ୍ରବର୍ତ୍ତିତ ହେବା ପରେ ମଧ୍ୟ ଟଲଷ୍ଟୟଙ୍କ ପ୍ରଭାବ କ୍ଷୁଣ୍ଣ ହୋଇନଥିଲା । ଟଲଷ୍ଟୟ ସମାଜ ସଂସ୍କାର ପାଇଁ ହିଂସା ଓ ବିପ୍ଳବର ଆବଶ୍ୟକତାକୁ ଅସ୍ୱୀକାର କରିଛନ୍ତି ଓ ଅର୍ଥନୀତି ଦୃଷ୍ଟିରୁ ସାମାଜିକ ସମସ୍ୟାର ବ୍ୟାଖ୍ୟାକୁ ସେ ସ୍ୱୀକାର କରିପାରି ନାହାନ୍ତି । ଏହା ସାମ୍ୟବାଦୀ ଚିନ୍ତାଧାରା ବିରୋଧୀ । ତଥାପି ରୁଷିଆର ନୂତନ ଶାସକଗୋଷ୍ଠୀ ଟଲଷ୍ଟୟଙ୍କ ସ୍ମୃତି ଓ ରଚନାବଳୀ ପ୍ରତି ପ୍ରଚୁର ସହାନୁଭୂତି ଦର୍ଶାଇଛନ୍ତି ।

କଳାର ଲକ୍ଷ୍ୟ, ଉଦ୍ଦେଶ୍ୟ ସମ୍ପର୍କରେ ଟଲଷ୍ଟୟଙ୍କ ମତ କିପରି ସ୍ୱତନ୍ତ୍ର ଥିଲା ତାହା ତାହାଙ୍କ ନିମ୍ନୋକ୍ତ ଉକ୍ତିରୁ ଅନୁମେୟ ।

୧—କଳା ଚିତ୍ତ ବିନୋଦନର, ଅଥବା ଆସ୍ୱାଦନାର ବିଷୟ ନୁହେଁ । କଳା ଏହାଠାରୁ ମହାନ୍ । ଏହା ମନୁଷ୍ୟ ଜୀବନର ଅଙ୍ଗ ଓ ଏହା ତାହାର ସୁବିବେଚିତ ଅଭିଜ୍ଞତାକୁ ଅନୁଭୂତିରେ ସଞ୍ଚାରିତ କରିଥାଏ ।

୨—ଉତ୍କୃଷ୍ଟ, ମହାନ୍ ଓ ବିଶ୍ୱଜନୀନ ଧାର୍ମିକ କଳାକୃତି ଅଳ୍ପ ସଂଖ୍ୟକ ଭ୍ରମ ଜନସାଧାରଣଙ୍କ ପକ୍ଷେ ଦୁରଧିଗମ୍ୟ ହୋଇପାରେ; ମାତ୍ର ବହୁ ସଂଖ୍ୟକ ସରଳ ଜନସାଧାରଣଙ୍କ ପକ୍ଷେ ହେବ ନାହିଁ ।

୩—ହୃତ୍‌ପିଣ୍ଡ ଓ ଫୁସ୍‌ଫୁସ୍ ଭଳି କଳା ଓ ବିଜ୍ଞାନ ଅତ୍ୟନ୍ତ ଘନିଷ୍ଠ ଭାବେ ପରସ୍ପର ସହ ଜଡ଼ିତ ।

୪—ବିଶୁଦ୍ଧ ସ୍ୱାମୀର ପତ୍ନୀ ଅଳଙ୍କାର ଦ୍ୱାରା ବିମଣ୍ଡିତ ହେବାକୁ ନିଷ୍ପ୍ରୟୋଜନ ଭଳି ପ୍ରକୃତ କଳା ପାଇଁ ଅଳଙ୍କାରର ଆବଶ୍ୟକ ହୁଏ ନାହିଁ ।

୫—ମାନବ ଜୀବନରେ ଭ୍ରାତୃତ୍ୱର ସଂଯୋଗ ସଂପାଦନ ହିଁ କଳାର ଉଦ୍ଦେଶ୍ୟ କରିବା ଉଚିତ ।

ଯୁଦ୍ଧ ଓ ଶାନ୍ତି—

# ଐତିହାସିକ ପ୍ରେମୋପାଖ୍ୟାନ

**ମୁଖ୍ୟ ଚରିତ୍ର—**

ପାଇର ବେଜୁହୋଭ—ଧନୀ କାଉଣ୍ଟ (ଜମିଦାର) ଙ୍କ ସନ୍ତାନ ।

ନାତାସା ରୋଷ୍ଟଭ—ମସ୍କୋ ଓ ରୋଷ୍ଟଭ ପରିବାରର ସୁନ୍ଦରୀ କନ୍ୟା ।

ନିକୋଲ ରୋଷ୍ଟଭ—ନାତାସାର ଭାଇ ।

ଆନ୍ଦ୍ରେ ବଲକୋନସ୍କି—ରୁଷର ଧନୀ ରାଜକୁମାର ।

ହେଲେନ କୁରାଜିନ ବେଜୁହୋଭ—ପାଇରଙ୍କ ସୁନ୍ଦରୀ ନଷ୍ଟଚରିତ୍ରା ସ୍ତ୍ରୀ ।

ଅନାତୋଲେ କୁରାଜିନ—ହେଲେନର ଭାଇ ।

ମାରିୟା ବଲକୋନସ୍କି—ଆନ୍ଦ୍ରେର ଭଉଣୀ ।

ବୃଦ୍ଧ ବଲକୋନସ୍କି—ଆନ୍ଦ୍ରେଙ୍କ ଅତ୍ୟାଚାରୀ ପିତା ।

କୁତୁଜୋଭ—ରୁଷ ସେନାର ଅଧ୍ୟକ୍ଷ ।

ନେପୋଲିଅନଙ୍କ ସହ ଯୁଦ୍ଧ ଯେ ଆସନ୍ନ ଏହା ଖ୍ରୀ: ୧୮୦୫ ବେଳକୁ ରୁଷିଆର ଅଧିକାଂଶ ଲୋକ ଜାଣି ପାରିଥିଲେ । ଅଷ୍ଟରଲିଜ ଯୁଦ୍ଧରେ ରୁଷିଆ ଓ ଅଷ୍ଟ୍ରିୟାର ସମ୍ମିଳିତ ସୈନ୍ୟଙ୍କୁ ଫ୍ରାନ୍ସ ପରାଜିତ କରିଦେଲା । ମାତ୍ର ରୁଷିଆର ଉଚ୍ଚ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଉପରେ ଏହାର କୌଣସି ପ୍ରଭାବ ପଡ଼ିନଥିଲା । ନେପୋଲିଅନଙ୍କ ସେନା ରୁଷ ପର୍ଯ୍ୟନ୍ତ ଆସିବେ ଏହା ସେମାନେ ବିଶ୍ୱାସ କରି ପାରୁ ନଥିଲେ । ଏଣୁ ସେମାନଙ୍କ ମଧ୍ୟରେ ପୂର୍ବପରି ଭୋଜି, ବଲନାଚ ପ୍ରଭୃତି ହେଉଥିଲା, ବୁଢ଼ୀମାନେ ଖୁସିଗପ କରି ଓ ତରୁଣୀମାନେ ପ୍ରେମକରି କାଳ କଟାଉଥିଲେ । ଯୁଦ୍ଧ ସୁନିଶ୍ଚିତ ହେଲେ ହେଁ ଏହା ବହୁ ଦୂରରେ ସଂଘଟିତ ହେଉଥିବାରୁ ସେ ବିଷୟରେ କେହି ବିଶେଷ ଗୁରୁତ୍ୱ ଦେଉ ନ ଥିଲେ ।

ଋଷିଆର ଉଚ୍ଚାଭିଳାଷୀ ତରୁଣ ସମ୍ଭ୍ରାନ୍ତ (Noble) ମାନଙ୍କ ପକ୍ଷେ ଯୁଦ୍ଧରେ ଯୋଗଦେବା ଥିଲା ଏକ ମର୍ଯ୍ୟାଦାର ବିଷୟ । ସେମାନଙ୍କ ମଧ୍ୟରୁ ଅନେକ ଏହି କ୍ଷେତ୍ରରେ ଆପଣାର ଶକ୍ତି ଓ କୃତିତ୍ୱ ଦର୍ଶାଉଥିଲେ । ଗତାନୁଗତିକ ଜୀବନଧାରାରେ ସନ୍ତୁଷ୍ଟ ନ ହୋଇ ତରୁଣ ସାମନ୍ତ ନିକୋଲେ ରୋଷ୍ଟଭ ଯୁଦ୍ଧରେ ଯୋଗ ଦେବାକୁ ପ୍ରସ୍ତୁତ ହେଉଥା'ନ୍ତି । ତାଙ୍କ ପରିବାରର ଲୋକେ ଏଥିପାଇଁ ବେଶ୍ ଆନନ୍ଦିତ । ସମ୍ରାଟ (ଜାର) ପ୍ରତି ତାଙ୍କର ଆନୁଗତ୍ୟ ଓ ସାହସ ପାଇଁ ସମସ୍ତଙ୍କ ମୁହଁରେ ତାଙ୍କର ପ୍ରଶଂସା । ଯୁଦ୍ଧ ପୋଷାକରେ ସେ ଖୁବ୍ ସୁନ୍ଦର ଦିଶୁଥିଲେ । ଭଉଣୀ ନାତାସା ତାଙ୍କୁ ବିଦାୟ ଦେଲାବେଳେ କାନ୍ଦି ପକାଇଲା । ତାଙ୍କ ମାଉସୀ ଝିଅ ତାଙ୍କ ପ୍ରତି ପ୍ରେମାଶକ୍ତ ହୋଇପଡ଼ିଲା ।

ସେଣ୍ଟପିଟର୍ସବର୍ଗର ଶିକ୍ଷିତ ଗୋଷ୍ଠୀ ତରୁଣ ନିକୋଲେଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ । ରୋଷ୍ଟଭ ପରିବାରର ବନ୍ଧୁ ହେଉଛନ୍ତି ପାଇର ବେଜୁହୋଭ । ତାହାଙ୍କ ବୁଦ୍ଧିହୀନତା ଯୋଗୁଁ ଲୋକେ ତାଙ୍କୁ ଆଦୌ ପସନ୍ଦ କରୁ ନ ଥିଲେ । ସେ ବିଶ୍ୱବିଦ୍ୟାଳୟରେ ପଢ଼ି ନିଜ ପ୍ୟାରିସ ଦେଶକୁ ସଦ୍ୟ ଫେରିଥା'ନ୍ତି । କଣ କରିବେ କିଛି ସ୍ଥିର କରିନଥା'ନ୍ତି । ଯୁଦ୍ଧରେ ସେ ଯୋଗଦେବାକୁ ଆଦୌ ପସନ୍ଦ କରୁନଥିଲେ । ଯୁଦ୍ଧବୃତ୍ତିକୁ ବରଂ ସେ ଘୃଣା କରୁଥିଲେ । ବାପା ତାଙ୍କୁ ଚଳିବା ଲାଗି ଯଥେଷ୍ଟ ଟଙ୍କା ଦେଉଥିଲେ । ଏଣୁ ମନଇଚ୍ଛା ମଉଜରେ ଚଳି ଜୁଆଖେଳ ସେ କାଳ କାଟି ଆସିଛନ୍ତି । ତାଙ୍କ ଉପସ୍ଥିତିରେ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ବୈଠକଖାନା, ତାହାଙ୍କ ଉଚ୍ଚ କଣ୍ଠର ଯୁକ୍ତିତର୍କରେ ମୁଖରିତ ହୋଇଯାଏ । ମାତ୍ର ହଠାତ୍ ସେ ପୁଣି ସମ୍ପୂର୍ଣ୍ଣ ଶାନ୍ତ ହୋଇଯା'ନ୍ତି । ଏଣୁ ସମ୍ଭ୍ରାନ୍ତ ଲୋକେ ଏଭଳି ଜଣେ ବ୍ୟକ୍ତିଙ୍କୁ ପସନ୍ଦ ନ କରିବା ସ୍ୱାଭାବିକ । ପାଇର ଏହିପରି ଭାବେ କାଳ କଟାଉଥିବା ବେଳେ ଦିନେ ତାଙ୍କ ପିତାଙ୍କର ମୃତ୍ୟୁ ହୋଇଗଲା । ସେ ହେଲେ ପ୍ରଚୁର ଧନସମ୍ପତ୍ତିର ଅଧିକାରୀ । ଏହା ପରେ ତାଙ୍କ ପ୍ରତି ଜନସାଧାରଣଙ୍କ ମନୋଭାବ ବଦଳିଗଲା । ହଠାତ୍ ଦେଖାଗଲା, ସେ ଖୁବ୍ ଜନପ୍ରିୟ ହୋଇ ଉଠିଛନ୍ତି । ସେ ଭାବିଲେ, ବୋଧହୁଏ ତାଙ୍କ ଭିତରେ ଏକ ନୂତନ ବ୍ୟକ୍ତିତ୍ୱର ଆବିର୍ଭାବ ହୋଇଛି । ସେଥିପାଇଁ ଲୋକେ ତାଙ୍କୁ ଏପରି ପସନ୍ଦ କରୁଛନ୍ତି । ସେ ସମସ୍ତଙ୍କୁ ଭଲ ପାଇବାକୁ ଲାଗିଲେ । ତାଙ୍କ ମନର ବିଷଣ୍ଣତା ମଧ୍ୟ

ଦୂର ହୋଇଗଲା । ଲୋକେ ମଧ୍ୟ ପ୍ରକୃତରେ ତାଙ୍କୁ ଭଲପାଇଲେ । ରାଜକୁମାର ଭାସିଲି କୁରାଜିନଙ୍କ ସଙ୍ଗେ ତାଙ୍କର ସବୁଠାରୁ ଭଲ ପଡ଼ୁଥିଲା । ସେ ଥିଲେ ତାଙ୍କର ଏକନିଷ୍ଠ ଅନୁଗାମୀ । କୁରାଜିନଙ୍କ ଝିଅର ନାମ ଇଲେନ ଥିଲା । ସେ ସୁନ୍ଦରୀ ଓ ଅବିବାହିତ । ଭାସିଲି ଯେ ସେଣ୍ଟ୍ ପିଟର୍ସ ଦୁର୍ଗର ଶ୍ରେଷ୍ଠନେତା ଏହା ସମସ୍ତେ ଜାଣିଥିଲେ । ଭାସିଲି ଥିଲେ ଖୁବ୍ ଚତୁର ଓ କୌଶଳୀ । ଆପଣାର ଝିଅଲାଗି ପାଇରଙ୍କ ଭଳି ସତ୍‌ପାତ୍ରଟିକୁ ହାତ କରିନେବା ତାଙ୍କପକ୍ଷେ କଷ୍ଟକର ହେଲା ନାହିଁ । ପାଇର ବାଧ୍ୟହେଲେ ତାଙ୍କ କନ୍ୟାକୁ ବିବାହ କରିବାକୁ । ମାତ୍ର ଏଇ ବିବାହ ସୁଖକର ହୋଇ ନଥିଲା ।

ପାଇର ବେଜୁହୋଭଙ୍କ ଘନିଷ୍ଠ ବନ୍ଧୁଥିଲେ ରାଜକୁମାର ଆଣ୍ଡ୍ରେ ବଲକୋନସ୍କି । ସେ ଥିଲେ ଉଦ୍ଧତ । କାହାରିକୁ ସେ ବିଶ୍ୱାସ କରୁନ ଥିଲେ, ଏପରିକି ନିଜ ସ୍ତ୍ରୀ ଲିସିଙ୍କୁ ମଧ୍ୟ ସେ ଘୃଣା କରୁଥିଲେ । ଲିସି ଥାଏ ଗର୍ଭବତୀ; ଅଥଚ ପ୍ରିନ୍‌ସ୍ ଆଣ୍ଡ୍ରେ ଘରର ଦାୟିତ୍ୱ କିଛି ବୁଝୁ ନଥାନ୍ତି । ଏହି ସମୟରେ ସେ ସେନାବାହିନୀରେ ଏକ କମିଶନର ପଦ ପାଇଲେ । ଆପଣା ସ୍ତ୍ରୀର ଓ ଘରର କିଛି ବ୍ୟବସ୍ଥା ନକରି ସେ ସଙ୍ଗେ ସଙ୍ଗେ ନିଜ ଯୁଦ୍ଧକ୍ଷେତ୍ରକୁ ଚାଲିଗଲେ । ନିଜ ଜମିଦାରୀ ବ୍ଲକ୍ ହିଲ୍‌ସରେ ଆପଣା ଭଉଣୀ ମାରିୟା ଓ ତାଙ୍କ ଅତ୍ୟାଚାରୀ ବୃଦ୍ଧ ପିତାଙ୍କ ଦାୟିତ୍ୱରେ ଲିସି ରହିଲା ।

ଆଣ୍ଡ୍ରେ ଯୁଦ୍ଧକ୍ଷେତ୍ରରେ ଥିବା ସମୟରେ ଲିସି ପୁତ୍ର ସନ୍ତାନଟିଏ ଜାତକରି ମୃତ୍ୟୁ ମୁଖରେ ପଡ଼ିଲା । ଅଷ୍ଟରଲିଜ ଯୁଦ୍ଧ ପରେ ଆଣ୍ଡ୍ରେ ଘରକୁ ଫେରିଲେ । ସ୍ତ୍ରୀର ମୃତ୍ୟୁପରେ ସେ ନିଜକୁ ବେଶ୍ ସ୍ୱାଧୀନ ଓ ମୁକ୍ତବୋଧ କଲେ । ମାତ୍ର ଏହି ସ୍ୱାଧୀନତା ଓ ଦାୟିତ୍ୱହୀନତା ତାଙ୍କୁ ବେଶୀ ଦିନ ଶାନ୍ତି ଦେଇପାରି ନଥିଲା । ନିଃସଙ୍ଗତା ଓ ନୈରାଶ୍ୟରୁ କିପରି ରକ୍ଷା ପାଇବେ ଏଥିପାଇଁ ସେ ବନ୍ଧୁ ପାଇରଙ୍କ ନିକଟରେ ଯାଇ ପହଞ୍ଚିଲେ ।

ପାଇର ଏହା ମଧ୍ୟରେ ଏକ ଭାବୁକ ଗୋଷ୍ଠୀରେ ଯୋଗ ଦେଇ-ଥା'ନ୍ତି । ଏଇ ଅନୁଷ୍ଠାନରେ ଦୀକ୍ଷା ଗ୍ରହଣ କରି, ଏହାର ଚିନ୍ତାଧାରାକୁ ଅନୁସରଣ କରି ସେ ଏହି ଜୀବନଦର୍ଶନକୁ ଏକମାତ୍ର ସତ୍ୟବୋଲି ବିଚାର

କରୁଥା'ନ୍ତି । ମାତ୍ର ତାହାଙ୍କ ସମ୍ମତି ଲାଗି ଯେ ଏହି ଅନୁଷ୍ଠାନର କର୍ତ୍ତା-ମାନେ ତାଙ୍କୁ ଏପରି ପ୍ରଭାବିତ କରାଇବାରେ ଆଗ୍ରହୀ ଏକଥା ପୂର୍ବରୁ ସେ ଜାଣିପାରି ନଥିଲେ । ଏହା ଜାଣିଥିଲେ ହୁଏତ ଏଇ ଅନୁଷ୍ଠାନରେ ସେ କଦାପି ଯୋଗ ଦେଇ ନଥାନ୍ତେ । ଯାହା ହେଉ ଏଇ ଅନୁଷ୍ଠାନରେ ଯୋଗ ଦେବା ଫଳରେ ଆଲେକ୍ସଜାଣ୍ଡ୍ରଙ୍କ ବହୁ ପ୍ରଶ୍ନର ସମାଧାନ ହୋଇଥିଲା ଓ ସେ କେତେକ ପରିମାଣରେ ଉଦ୍ଧାର ବୋଧ କରୁଥିଲେ ।

ସେ ନିଃସ୍ୱାର୍ଥପର, ମୁକ୍ତ ଆତ୍ମା—ଏଇ ବିଶ୍ୱାସର ବଶବର୍ତ୍ତୀ ହୋଇ ସେ ତାହାଙ୍କ ଜମିଦାରୀର କୃଷକମାନଙ୍କୁ ସ୍ୱାଧୀନତା ଦେଇ ଦେଲେ । ସେମାନେ ମୁକ୍ତ ବୋଲି ଘୋଷଣା କରିଥିଲେ । ନିଜ ଜମିଦାରୀର ବିବିଧ ଉନ୍ନତି ସାଧନରେ ମନୋନିବେଶ କରିଥିଲେ । ମାତ୍ର ଏହା କରିବାକୁ ଯାଇ ବୈଷୟିକ ଜ୍ଞାନ ଅଭାବରୁ ତାଙ୍କର ବିପୁଳ ଆର୍ଥିକ କ୍ଷତି ହେଲା । ଜମିଦାରୀର ଅବସ୍ଥା ଘୋର ବିଶୃଙ୍ଖଳ ହୋଇ ପଡ଼ିଲା । ଏଣୁ ଶେଷରେ ସେ ଜଣେ ତତ୍ତ୍ୱାବଧାରକଙ୍କ ଜିମାରେ ଜମିଦାରୀକୁ ଛାଡ଼ିଦେବାକୁ ବାଧ୍ୟ ହୋଇଥିଲେ । ଦୁଶ୍ଚିନ୍ତାଗ୍ରସ୍ତ ପାଇରି ଶାନ୍ତିଲାଭ ଆଶାରେ ଥରେ ପ୍ରିନ୍ସ ଆଣ୍ଡ୍ରେଙ୍କ ବାଲ୍ଡହିଲସରେ ଆସି ପହଞ୍ଚିଗଲେ ।

ଏଣେ ନିକୋଲେ ରେସ୍ତଭ ଯୁଦ୍ଧ କ୍ଷେତ୍ରରେ ପ୍ରବଳ ଯୁଦ୍ଧରେ ମାତିରହିଥାନ୍ତି । ପ୍ରୁସିଆ ସୈନ୍ୟଙ୍କୁ ଜୟକରି ନେପୋଲିଅନ ଅକ୍ଟୋବର ମାସରେ ବର୍ଲିନରେ ପହଞ୍ଚିଲେ । ପ୍ରୁସିଆ ସୈନ୍ୟଙ୍କୁ ପୁଣି ସାହାଯ୍ୟ କରିବାକୁ ରୁଷିଆର ସେନା ଆଗେଇଗଲେ । ଉଭୟ ସେନା ମିଳିତ ଭାବେ ୟୁଲାଉ (Eylau) ଠାରେ ଖ୍ରୀ: ୧୮୦୭ ଫେବୃୟାରୀରେ ନେପୋଲିଅନଙ୍କ ସହ ଯୁଦ୍ଧ କଲେ ।

ନିକୋଲେ ଫ୍ରେଡଲାଣ୍ଡଠାରେ ଯୁଦ୍ଧରେ ଲିପ୍ତ ଥାନ୍ତି । ଏହିଠାରେ ରୁଷସେନା ପରାଜିତ ହୋଇଗଲେ । ନେପୋଲିଅନ ଓ ଜାରଙ୍କ ମଧ୍ୟରେ ଟିଲସିଟଠାରେ ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେଲା । ଏଣୁ ନିକୋଲେ ଭାବିଲେ ଯୁଦ୍ଧ ଶେଷ ହୋଇଗଲା । ଏପରି ଭାବିବା ମଧ୍ୟ ସ୍ୱାଭାବିକ । ଦୁଇବର୍ଷପାଇଁ ସେ ସେଠାରେ ସୈନ୍ୟବିଭାଗ ଦାୟିତ୍ୱରେ ରହିଥାନ୍ତି; ମାତ୍ର ତାଙ୍କୁ ବିଶେଷ କିଛି କାମ କରିବାକୁ ପଡ଼ୁନଥାଏ । ନେପୋଲିଅନ ଏହି ସମୟରେ ସ୍ପେନ ଅଧିକାରରେ ବ୍ୟସ୍ତ ଥା'ନ୍ତି ।

ଋଷର ଅନ୍ୟ ଏକ ରଣକ୍ଷେତ୍ରରେ କାମ କରୁଥିଲେ ପ୍ରିନ୍ସ ଆଣ୍ଡ୍ରେ । ତାଙ୍କୁ ଋଷ ସେନାର ମୁଖ୍ୟ ସେନାପତି କୁତୁଜୋଭଙ୍କ ଅଧୀନରେ କାମ କରିବାକୁ ପଡ଼ୁଥିଲା । କାଉଣ୍ଟ ରୋଷ୍ଟଭଙ୍କ ସହ ଆପଣାର କେତେକ ବୈଷୟିକ କାର୍ଯ୍ୟର ସମାଧାନ ଓ ଆଲୋଚନା ପାଇଁ ସେ ଯୁଦ୍ଧକ୍ଷେତ୍ରରୁ କେତେଦିନ ପାଇଁ ନିଜଦେଶକୁ ଫେରିଥିଲେ । ମାତ୍ର କାଉଣ୍ଟଙ୍କ ପରିବାରକୁ ଆସି ସେ ତାହାଙ୍କ ରୂପବତୀ ତରୁଣୀକନ୍ୟା ନାତାସା ପ୍ରେମରେ ପଡ଼ିଗଲେ । ଏହା ପୁଣି ଏତେ ମଧୁମୟ, ତାଙ୍କର ଧାରଣା ହେଲା ଯେପରି ସେ ଆଉ କେବେ ପୂର୍ବରୁ ଭଲପାଇ ନଥିଲେ । ଏ ବିଷୟରେ ପରାମର୍ଶ ପାଇଁ ସେ ବନ୍ଧୁ ପାଇରି ପାଖରେ ପହଞ୍ଚିଲେ । ଦୁର୍ଭାଗ୍ୟକୁ ସେତେବେଳେ ପାଇରି ଓ ତାହାଙ୍କ ସ୍ତ୍ରୀ ଇଲେନ ମଧ୍ୟରେ ଭୀଷଣ କଳହର ସୂତ୍ରପାତ ହୋଇଥାଏ ଓ ଦୁହେଁ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହୁଥାନ୍ତି । ସ୍ତ୍ରୀ ତାଙ୍କୁ ପ୍ରତାରିତ କରି ଆଉ ଜଣଙ୍କ ସହ ସମ୍ବନ୍ଧ ରଖିଛି । ଏହା ସେ ସନ୍ଦେହ କରିଛନ୍ତି ଓ ସେହି ନଗଣ୍ୟ ବ୍ୟକ୍ତିଟି ସଙ୍ଗେ ଦ୍ୱନ୍ଦ୍ୱ ଯୁଦ୍ଧ କରିଛନ୍ତି । ଏହି ସମୟରେ ପ୍ରେମରେ ଜର୍ଜରିତ ଆଣ୍ଡ୍ରେଙ୍କଠାରୁ ତାଙ୍କର ଉପସ୍ଥିତି, ମାନସିକ ଅବସ୍ଥା ବୁଝିବା ପରେ ପାଇରିଙ୍କ ଉଦାର ହୃଦୟ ନରମ ହୋଇଗଲା । ନାତାସାଙ୍କୁ ସେ ପିଲାଦିନୁ ଭଲଭାବରେ ଜାଣନ୍ତି । ତାଙ୍କର ଧାରଣା ହେଲା ନାତାସା ଓ ଆଣ୍ଡ୍ରେଙ୍କ ବିବାହ ହେଲେ ଖୁବ୍ ଭଲ ଓ ମେଳ ହୁଅନ୍ତା । ପ୍ରଣୟମଧୁର ଭାବନାରେ ତାଙ୍କର ହୃଦୟ ପୂରିଯାଇଛି । ସେ ତାଙ୍କ ସ୍ତ୍ରୀକୁ ପୁଣି ପାଖକୁ ଫେରାଇ ଆଣିଛନ୍ତି ଓ ଏହିପରି ମହତ କାର୍ଯ୍ୟ କରିଥିବାରୁ ମନେ ମନେ ସନ୍ତୋଷ ବୋଧ କରିଛନ୍ତି ।

ନାତାସା ପାଇଁ ପୂର୍ବରୁ କେତେ ବିବାହ ପ୍ରସ୍ତାବ ଆସିଛି । ସେ ସବୁଗୁଡ଼ିକ ପ୍ରତ୍ୟାଖ୍ୟାନ କରିଛି । ମାତ୍ର ଆଣ୍ଡ୍ରେଙ୍କ ଭଳି ଜଣେ ସାହସୀ ଓ ଛବିବଶାଳୀ ତରୁଣଙ୍କ ପ୍ରସ୍ତାବକୁ ସେ ସଙ୍ଗେ ସଙ୍ଗେ ସ୍ୱୀକାର କରିନେଲା । ଆଣ୍ଡ୍ରେ ନାତାସାର ବାପା ମାଙ୍କ ପାଖରେ ଏଇ ପ୍ରସ୍ତାବ ଉତ୍ଥାପନ କରିଛନ୍ତି ଓ ସେମାନେ ମଧ୍ୟ ଏଥିରେ ସଙ୍ଗେ ସଙ୍ଗେ ସମ୍ମତି ଜଣାଇ ଦେଇଛନ୍ତି । ଆଣ୍ଡ୍ରେ ଏ ବିଷୟ ଆସି ତାଙ୍କ ବୃଦ୍ଧ ପିତାଙ୍କୁ କହିଲେ । ସେ ଥିଲେ ସହଜେ କଳହପରାୟଣ ଓ ଗର୍ବୀ । ଯାହା ଆଦେଶ ଦେବେ ତାହା କରିବାକୁ ହିଁ ହେବ । ସେ କହିଲେ, "ଏକ ବର୍ଷ ନ ଗଲେ ମୁଁ ଏଇ ବିବାହରେ ମୋର ଆଶୀର୍ବାଦ ଦେଇ ପାରିବି ନାହିଁ ।" ସେ

ଘବୁଥିଲେ ନାତାସା ପାଖରେ ବା ତାଙ୍କ ପରିବାରରେ ବେଶି ଧନ ସମ୍ପତ୍ତି ନାହିଁ । ତେଣୁ ନାତାସା ମଧ୍ୟବିତ୍ତ ସନ୍ତାନ ଓ ଆନ୍ଦ୍ରେ ବିରାଟ ଘରର ଦାୟିତ୍ୱ ନେବାକୁ ମଧ୍ୟ ସେପରି ସମର୍ଥ ହୋଇପାରିବ ନାହିଁ ଏହା ହିଁ ଥିଲା ତାଙ୍କର ଧାରଣା । ଆନ୍ଦ୍ରେଙ୍କ ଭଉଣୀ ମାରିୟା ମଧ୍ୟ ଏହି ପ୍ରସ୍ତାବକୁ ସମର୍ଥନ କରୁ ନ ଥିଲା । ପରନ୍ତୁ ଟଙ୍କା ଧନ ସମ୍ପତ୍ତି ପ୍ରତି ମଧ୍ୟ ତାର ଗୋଟାଏ ଈର୍ଷାଭାବ ଜନ୍ମିଥିଲା ।

ଘଷା ଶ୍ୱଶୁରଙ୍କ ଏଇ ଆଦେଶ କଠୋର । ନାତାସା ବର୍ଷେ ଅପେକ୍ଷା କରିବାକୁ ରାଜି । ତଥାପି ଏଥିରେ ତାର ହୃଦୟ ଦୁଃଖରେ ଭାଙ୍ଗିପଡୁଥାଏ । ଆନ୍ଦ୍ରେ ଓ ନାତସା ଏଇ ପ୍ରସ୍ତାବକୁ ଗୋପନ ରଖିଲେ । ଆନ୍ଦ୍ରେଙ୍କ ଇଚ୍ଛା, ନାତାସା ଏଇ ବର୍ଷକ ସ୍ୱାଧୀନ କୁମାରୀ ଭାବେ ଚଳୁଥାଉ ।

ଆନ୍ଦ୍ରେ ଯୁଦ୍ଧକ୍ଷେତ୍ରକୁ ଫେରିଗଲେ । କିଛିଦିନ ପରେ ନାତାସା ମଧ୍ୟ ମସ୍କୋରେ ତାଙ୍କର ଜଣେ ବନ୍ଧୁଙ୍କ ଘରକୁ କେତେଦିନ ପାଇଁ ଯାଇଥିଲା । ସେଠି ଦିନେ ରାତିରେ ଥିଏଟର ହଲରେ ପାଇରାର ସ୍ତ୍ରୀ ଇଲେନ ଓ ତାର ଭାଇ ଆନାତୋଲ୍ ସଙ୍ଗେ ଦେଖା ହୋଇଗଲା । ସହରରେ ଆନାତୋଲର କୌଣସି ସୁନାମ ନଥାଏ । ପୂର୍ବରୁ ଜଣେ କୃଷକର ଝିଅକୁ ବିବାହ କରି ସେ ତାର ସର୍ବନାଶ କରିଛି; ମାତ୍ର ଏକଥା ନାତାସାଙ୍କୁ ଜଣା ନଥାଏ । ଆନାତୋଲ ନାତାସାଙ୍କୁ ଦେଖି ପ୍ରେମାସକ୍ତ ହୋଇପଡ଼ିଲା । ସେ ଭାବିଲା କପରି ନାତାସାକୁ କରଗତ କରିବ । ତାର ଦୁଷ୍ଟ ଭଉଣୀ ଇଲେନ ମଧ୍ୟ ଏହି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ ପଛେଇ ନଥିଲା । ନାତାସା ଚକ୍ରାନ୍ତରେ ପଡ଼ିଗଲା । ସେ ଆନ୍ଦ୍ରେଙ୍କୁ ଭୁଲିଯାଏ । ସେ ପୁଣି ଯୁଦ୍ଧକ୍ଷେତ୍ରକୁ ଚାଲି-ଗଲେଣି । ତାଙ୍କ ସହ ନିକଟରେ ଦେଖା ହେବାର ମଧ୍ୟ ଆଶା ନାହିଁ । ଏଣେ ଆନାତୋଲର ଆଶକ୍ତି ଓ ବ୍ୟାକୁଳତା ତାକୁ ଅଭିଭୂତ କରି-ଦେଉଛି । ଯାହାହେଉ ତାହାର କପଟ କଥାରେ ପଡ଼ି ସେ କ୍ରମେ ତାକୁ ଭଲ ପାଇବାକୁ ଲାଗିଲା । ଆନାତୋଲର ପ୍ରଣୟ ବ୍ୟଗ୍ରତା ଦିନକୁ ଦିନ ବଢ଼ି ଚାଲିଥାଏ । ଶେଷରେ ସେ ଆନାତୋଲକୁ ବିବାହ କରି ତା ସଙ୍ଗେ ଚାଲିଯିବାକୁ ସ୍ଥିର କରିପକାଇଲା । ଆନାତୋଲ ମଧ୍ୟ ଏଇ ନକଲି ବାହାଘର ସମ୍ପାଦନ କରିବାକୁ ଜଣେ ଭ୍ରଷ୍ଟ ଓ ନୀତିହୀନ ପୁରୋହିତ

ଯୋଗାଡ଼ କରିଥାଏ । ମାତ୍ର ଯୋଗକୁ ଯେଉଁଦିନ ରାତିରେ ସେମାନେ ଚାଲିଯିବେ ସେହିଦିନ ନାତାସାର ମାଉସୀ ଏକଥା ଜାଣିପାରିଲେ । ଆନାତୋଲର ଚକ୍ରାନ୍ତ ବିଷୟ ଜାଣିପାରି ସେ ନାତାସାଙ୍କୁ ଗୋଟାଏ ଘର ଭିତରେ ବନ୍ଦକରି ରଖିଲେ । ଏଣେ ନାତାସା ଆଣ୍ଡ୍ରେଙ୍କ ସହ ବିବାହ ପ୍ରସ୍ତାବରୁ ତାକୁ ଅବ୍ୟାହତି ମିଳୁ ଏହା ଆଣ୍ଡ୍ରେଙ୍କ ଭଉଣୀଙ୍କ ପାଖକୁ ଚିଠି ଲେଖି ଜଣାଇ ଦେଇଥାଏ ।

ଏହି ବଦନାମର ବିଷୟଟି ଜଣାପଡ଼ିଗଲା । ପିଇର ଏହା ଶୁଣି ଆନାତୋଲ ଉପରେ ରାଗିଗଲା । ତାହାର ଯୋଗୁ ହିଁ ଅନାତୋଲ ସହର ଛାଡ଼ି ଚାଲିଯିବାକୁ ବାଧ୍ୟ ହେଲା । ତା' ପରେ ସେ ଯାଇ ନାତାସାକୁ ଦେଖାକଲା । ବିଚିତ୍ର କଥା, ନାତାସା ଏକମାତ୍ର ପିଇରକୁ ହିଁ ବିଶ୍ୱାସ କଲା ଓ ତା ଆଗେ ଆପଣାର ମନକଥା ଖୋଲି କହି ଦେଇଛି । ସେ ଭାବିଲା ପିଇର ଯେପରି ତାର ବୁଢ଼ା ବାବା । ପିଇର ମଧ୍ୟ ନାତାସାର କଥା ଜାଣିବା ପରେ ତାହାପ୍ରତି ଏକ ଆକର୍ଷଣ ଅନୁଭବ କରିଛି । ଏହା ମଧ୍ୟ ସେ ସୂଚନାକ୍ରମେ ନାତାସାକୁ ଜଣାଇ ଦେଇଛି । ନାତାସା ଏଥିରେ ଆନନ୍ଦ ଅନୁଭବ କରିଛି । କ୍ରମେ ସବୁବିଷୟ ସୁଧୁରିଯାଇଛି । ନାତାସାର ଚପଳତା ମଧ୍ୟ ଦୂର ହୋଇଯାଇଛି ।

ନାତାସା ଆଉଜଣଙ୍କୁ ବିବାହ କରି ଚାଲିଯିବାକୁ ଚାହୁଁଥିଲା, ଏହି ସମ୍ବାଦ ଶୁଣି ପ୍ରିନ୍‌ସ ଆଣ୍ଡ୍ରେ ଦୁଃଖିତ ହେଲେ । ଏହା ତାଙ୍କ ଆତ୍ମ ସମ୍ମାନ ପ୍ରତି ଥିଲା ଏକ ଆଘାତ; ମାତ୍ର ଯୁଦ୍ଧକ୍ଷେତ୍ରର ନାନା ଗୁରୁତ୍ୱ-ପୂର୍ଣ୍ଣ ପରିସ୍ଥିତିରେ ଆତ୍ମନିମଗ୍ନ ରହି ସେ ଏଇ ଲଜ୍ଜାଜନକ ତଥା ଦୁଃଖପ୍ରଦ ବିଷୟଟିକୁ ଭୁଲିଗଲେ ।

ଖ୍ରୀ: ୧୮୧୦ ବେଳକୁ କ୍ରମେ ଫ୍ରାନ୍‌ସ ଋଷିଆ ସନ୍ଧି ଏକ ପ୍ରକାର ଅକାମୀ ହୋଇଗଲା । ପୋଲାଣ୍ଡ ସହ ରୁଷ ସମ୍ପର୍କ ଛିନ୍ନ କରିଦେଇ, ଫ୍ରାନ୍‌ସ ଏଥିପାଇଁ ଋଷିଆ ଉପରେ ଚାପ ପକାଇବାକୁ ଆରମ୍ଭ କଲା । ନେପୋଲିଅନଙ୍କ ଚୁକ୍ତି କରିବାର ନିରର୍ଥକତା ଜାର ଏଥିରୁ ବୁଝି ପାରିଲେ । ନେପୋଲିଅନ ମେରିଲୁଇସକୁ ବିବାହ କଲାପରେ ଅଷ୍ଟ୍ରିଆ ଲାଗି ଋଷିଆକୁ ଛାଡ଼ିବାକୁ ସେ ଥିଲେ ପ୍ରସ୍ତୁତ । ମସ୍କୋ ଅଧିକାର କରିବା ଅଭିପ୍ରାୟରେ ସେ ଖ୍ରୀ: ୧୮୧୨ରେ ଆପଣା ସୈନ୍ୟମାନଙ୍କୁ ନଇମାନ

ନଦୀ ପାର କରାଇ ଦେଇଥିଲେ । ଜୁନ୍ ମାସରୁ ଅଗଷ୍ଟ ମାସ ପର୍ଯ୍ୟନ୍ତ ନେପୋଲିଅନଙ୍କ ସେନା ଅପ୍ରତିହତ ଗତିରେ ସ୍ମୋଲେନସ୍କ ଆଡ଼କୁ ଆଗେଇ ଚାଲିଲେ ।

ସ୍ମୋଲେନସ୍କରେ ପହଞ୍ଚି ନେପୋଲିଅନ ବିସ୍ମିତ ହୋଇଗଲେ । ସେଠାରେ ସେ କେବଳ ଦେଖିବାକୁ ପାଇଲେ ଅଗ୍ନିଦଗ୍ଧ ଓ ଧ୍ୱସ୍ତ ବିଧ୍ୱସ୍ତ ଗୃହସମୂହ । ନଗରୀର ସମସ୍ତ ଅଧିବାସୀ ନଗରୀକୁ ପରିତ୍ୟାଗ କରି ଚାଲିଯାଇଥିଲେ । ଏହା ପରଠାରୁ ନେପୋଲିଅନଙ୍କୁ ପ୍ରବଳ ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼ିଥିଲା । ରୁଷିଆର ବୃଦ୍ଧ ସେନାପତି କୁଟୁଜୋଭ ଥିଲେ ପୂର୍ବାଞ୍ଚଳର ସେନାଧ୍ୟକ୍ଷ । ଏବେ ସେ ସମଗ୍ର ରୁଷ ସେନାବାହିନୀର ଅଧ୍ୟକ୍ଷ ଭାବେ ନିଯୁକ୍ତ ହୋଇଥିଲେ । ନେପୋଲିଅନଙ୍କ ସେନାର ଅଗ୍ରଗତିକୁ ପ୍ରତିହତ କରିଦେବାକୁ ସେ ଦୃଢ଼ ସଂକଳ୍ପ କରିଥାନ୍ତି । ନେପୋଲିଅନଙ୍କ ସେନାକୁ ଆଗେଇବାକୁ ନ ଦେଇ ରୁଷସେନାକୁ ଜୟଯୁକ୍ତ କରିବାରେ ସେ ଏକପ୍ରକାର ସଫଳକାମ ହେଲେ । ମାତ୍ର ଫରାସୀ ସେନାର ଅଗ୍ରଗତିକୁ ବ୍ୟାହତ ନ କରି ସେମାନଙ୍କୁ ରୁଷ ରାଜ୍ୟ ଭିତରେ ବହୁଦୂର ଯିବାକୁ ଛାଡ଼ିଦେଇଥିଲେ ସେମାନଙ୍କୁ ପରସ୍ପରଠାରୁ ସହଜରେ ବିଚ୍ଛିନ୍ନ କରିହୋଇଥାନ୍ତା । ଫଳରେ ରୁଷସେନା ଆହୁରି ଶୀଘ୍ର ଜୟଯୁକ୍ତ ହୋଇ ପାରିଥାନ୍ତେ । ଯାହାହେଉ ନେପୋଲିଅନ ମଧ୍ୟ ଆପଣା ସେନାକୁ ରୁଷ ରାଜ୍ୟ ଭିତରେ ବହୁଦୂର ଅଗ୍ରସର ହୋଇ ଆପଣା ବିଜୟ ଲାଭର ସମ୍ଭାବନାକୁ କ୍ଷୁଣ୍ଣ କରିଦେଲେ ।

ବିଭିନ୍ନ ସ୍ଥାନରୁ ଏଇ ଦୁଇ ବିପକ୍ଷ ଦଳ ମଧ୍ୟରେ ଯୁଦ୍ଧ ହୋଇଥିଲା ଓ ଉଭୟ ପକ୍ଷରୁ ପ୍ରଚୁର କ୍ଷତି ହେଉଥିଲା । ନେପୋଲିଅନ ଶେଷକୁ ବୋରୋ ଡିନୋ ସହର ଆଡ଼କୁ ଆପଣା ସେନାକୁ ଚଳେଇ ନେଲେ । ଯୁଦ୍ଧର ସବୁଠାରୁ ପ୍ରଚଣ୍ଡତମ ସଂଘର୍ଷ ଏଇଠି ସଂଘଟିତ ହେଲା । ଏଠାରୁ ମସ୍କୋର ଦୂରତା ଅଳ୍ପ । ରୁଷ ଜନସାଧାରଣ ମସ୍କୋକୁ ରକ୍ଷା କରିବା ଲାଗି ପ୍ରଚୁର କଷ୍ଟ ସ୍ୱୀକାର କରିଥିଲେ । ସେମାନଙ୍କର ଗୋଟାଏ ବିରାଟ ସୈନ୍ୟଦଳ ଏଇଠାରେ ବିନଷ୍ଟ ହୋଇଗଲା । ଫରାସୀ ସୈନ୍ୟଙ୍କ ସଂଖ୍ୟା ମଧ୍ୟ କ୍ରମେ କମି ଆସିଥିଲା ମାତ୍ର ରୁଷର ଯେ ଅଧିକ କ୍ଷତି ସାଧିତ ହୋଇଥିଲା ଏହା ଥିଲା ଅତ୍ୟନ୍ତ ସ୍ପଷ୍ଟ । ସେନାପତି କୁଟୁଜୋଭ ଅତୀବ ଶାନ୍ତ, ରଣକ୍ଳାନ୍ତ ହୋଇ ପଡ଼ିଥାନ୍ତି । ଅନିଚ୍ଛା ସତ୍ତ୍ୱେ ସେ ଭାବିଲେ ଆଉ

ବୋଧହୁଏ ଆମ ସୈନ୍ୟ ମସ୍କୋକୁ ରକ୍ଷା କରିପାରିବେ ନାହିଁ । ବିଜୟ ଗର୍ବରେ ମତ୍ତହୋଇ ନେପୋଲିଅନ ଓ ତାହାଙ୍କ ସେନାଯାଇ ପୁଣି ଏକ ଧ୍ୱସ୍ତ ଓ ପରିତ୍ୟକ୍ତ ନଗରୀରେ ପହଞ୍ଚିଲେ ।

ବୋରୋଦିନୋ ଯୁଦ୍ଧ କ୍ଷେତ୍ରରେ ପ୍ରିନ୍ସ ଆଣ୍ଡ୍ରେ ଏକ ସାଂଘାତିକ ଆଘାତ ପାଇ ଆହତ ହୋଇ ପଡ଼ିଲେ । ରୋଷ୍ଟୋଭ ପରିବାରର ଲୋକେ ତାଙ୍କ ଜମିଦାରୀ ଘରଦ୍ୱାର ପରିତ୍ୟାଗ କରି ରାଜ୍ୟଭିତରକୁ ପଳାଇ ଯିବାକୁ ବସିଥାନ୍ତି । ଏହି ସମୟରେ ବହୁ ଆହତ ସୈନ୍ୟଙ୍କୁ ନେଇ ଅନେକଗୁଡ଼ିଏ ଗାଡ଼ି ଆସି ସେମାନଙ୍କ ଉଆସ ପାଖେ ପହଞ୍ଚିଲା । ସେଇଠି ସେମାନଙ୍କୁ ଆଶ୍ରୟ ନେବାକୁ ପଡ଼ିବ । ଏହିମାନଙ୍କ ଭିତରେ ଥିଲେ ପ୍ରିନ୍ସ ଆଣ୍ଡ୍ରେ । ନାତାସା ତାଙ୍କର ସେବାଶୁଶ୍ରୂଷା କରିଛି । ଆଣ୍ଡ୍ରେଙ୍କ ଭଉଣୀ ମାରୟା ଓ ତାଙ୍କ ପୁଅ ନିକୋଲୁସ୍କାକୁ ସେଠାକୁ ଶୀଘ୍ର ଆସିବା ଲାଗି ଡକେଇ ପଠେଇଛି । ଫରାସୀ ସୈନ୍ୟ ତାଙ୍କ ଘର ପାଖେ ପହଞ୍ଚି ଗଲେଣି । ଏହା ଶୁଣି ବୃଦ୍ଧ ବଲକୋନସ୍କିଙ୍କର ହୃତ୍‌ପିଣ୍ଡ କ୍ରିୟା ବନ୍ଦହୋଇ ଯାଇଛି । ନିକୋଲେ ମାରୟା ଓ ଆଣ୍ଡ୍ରେଙ୍କ ପୁଅକୁ ଏକ ନିରାପଦ ସ୍ଥାନକୁ ନେଇ ଯାଇଛି । ଭଉଣୀ ଆସିବାରୁ ଆଣ୍ଡ୍ରେ ମନେ ମନେ ଖୁସି ହେଲେ । ମାତ୍ର ସେ ବୁଝିପାରିଲେ ତାଙ୍କର ଆରୋଗ୍ୟ ହେବାର ଆଶା କ୍ଷୀଣ । ନାତାସା ମନପ୍ରାଣ ଦେଇ ତାଙ୍କର ସେବା କରୁଥାଏ । ଦୁହେଁ ପରସ୍ପରକୁ ଯେ ପୂର୍ବପରି ଭଲ ପାଇଥାନ୍ତି ଏହା ସ୍ୱୀକାର କଲେ । ତାଙ୍କର କ୍ଷତ ସେତେବେଳକୁ ବିଷର୍ପି ଯାଇଥାଏ । ଆଣ୍ଡ୍ରେ ଶେଷରେ ବୁଝିପାରିଲେ ତାଙ୍କର ଜୀବନକାଳ ଶେଷ ହୋଇ ଆସୁଛି । ଶୋଇବା ଅବସ୍ଥାରେ ହିଁ ଦିନେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଏହିଭଳି କରୁଣ ପରିବେଶରେ ଏକତ୍ର ହୋଇ ମାରୟା ଓ ନାତସା ଖୁବ୍ ଅନ୍ତରଙ୍ଗ ହୋଇ ଗଲେ । ମାରୟା ପ୍ରତି ତରୁଣ ନିକୋଲ ମୁଗ୍ଧ ହୋଇ ପଡ଼ିଥିଲେ ଆକୃଷ୍ଟ ।

ଇତ୍ୟବସରରେ ପାଇର ମସ୍କୋରେ ରହିବାକୁ ସ୍ଥିର କରିଥା'ନ୍ତି । ଜାତିପ୍ରୀତିର ହେବାର ଗୌରବ ଲାଭ ଆକାଂକ୍ଷାରେ ସେ ହୋଇଥାନ୍ତି ଆତ୍ମହରା । ସେଥିପାଇଁ ନେପୋଲିଅନଙ୍କୁ ସେ କିପରି ହତ୍ୟା କରିବେ ତାହା ହିଁ ଚିନ୍ତା କରୁଥା'ନ୍ତି । ଫରାସୀ ସୈନ୍ୟମାନଙ୍କ କବଳରୁ ଜଣେ ଧର୍ଷିତା ରୁଷିୟ ମହିଳାଙ୍କୁ ରକ୍ଷା କରିବାକୁ ଯାଇ ସେ ଫରାସୀ ସୈନ୍ୟମାନଙ୍କ ଦ୍ୱାରା ବନ୍ଦୀ ହେଲେ ।

ମସ୍କୋଠାରେ ନେପୋଲିଅନଙ୍କ ସେନା ଛତ୍ରଭଙ୍ଗ ହୋଇଗଲେ । ଜାରଙ୍କ ସଙ୍ଗେ ମିତ୍ରତା ସ୍ଥାପନ ପାଇଁ ବହୁଚେଷ୍ଟା କରି ସେ ହେଲେ ବିଫଳ । ମସ୍କୋ ପରିତ୍ୟାଗ କରି ସେ ଫ୍ରାନ୍ସକୁ ଫେରିଯିବାକୁ ନିଷ୍ପତ୍ତି କଲେ । ଜଗତର ମହାଶକ୍ତିଶାଳୀ ଓ ବିଜୟପ୍ରମତ୍ତ ଭାବେ ଆସିଥିବା ତାଙ୍କର ସେନା ସେତେବେଳକୁ ଛିନ୍ନବସ୍ତ୍ର, ବୁଭୁକ୍ଷୁ । ସେମାନେ ସ୍ୱଦେଶ ଆଡ଼କୁ ବାହୁଡ଼ି ଚାଲିଲେ । ଏଇ ସମୟରେ ଶୀତଋତୁ ଆସିଗଲା । ସୌଭାଗ୍ୟବଶତଃ ପାଇର ଥିଲେ ସୁସ୍ଥ ସବଳ ବଳିଷ୍ଠ ଓ ମଜଭୁତ । ଅନ୍ୟ ଯୁଦ୍ଧବନ୍ଦୀମାନଙ୍କ ସହ ସେ ଯାଉଥିଲା ବେଳେ ଆପଣା ଅନୁଭବରୁ ସେ ଜାଣିପାରିଥିଲେ ଦେହକୁ ଉଷ୍ମ ରଖିବା ଓ ଖାଇବାକୁ ଯଥେଷ୍ଟ ପାଇବା ହେଉଛି ଜୀବନରେ ଏକମାତ୍ର ସୁଖ । ଆପଣା ଦୁଃଖାନୁଭୂତିରୁ ହିଁ ସେ ଅନେକ ଅଭିଜ୍ଞତା ଲାଭ କରିଥିଲେ । ତାଙ୍କର ଦାୟିତ୍ୱଜ୍ଞାନ ଓ ସାହସ ବଢ଼ିଯାଇଥିଲା । ଆପଣା ଦୁଃଖରେ ସେ ହସିବାକୁ ଶିଖି ପାରିଥିଲେ । ଆପଣାର ସରଳ ବ୍ୟବହାର ଯୋଗୁଁ ସେ ଫରାସୀ ଓ ରୁଷୀୟ ଉଭୟଙ୍କର ପ୍ରିୟପାତ୍ର ହୋଇପାରିଥିଲେ ।

ସ୍ମଲେନସ୍କ ଯିବା ବାଟରେ ଫରାସୀ ସୈନ୍ୟମାନଙ୍କର ଶୃଙ୍ଖଳବଳ ସମ୍ପୂର୍ଣ୍ଣ ଭାଙ୍ଗିଯାଇଥିଲା । ବାଟରେ କୋସାକମାନେ ସେମାନଙ୍କୁ ଆକ୍ରମଣ କରି ସେମାନଙ୍କୁ ଛିନ୍ନଭିନ୍ନ କରିଦେଲେ । ବହୁ ଯୁଦ୍ଧବନ୍ଦୀଙ୍କୁ ନେଇଯାଇ-ଥିଲେ ଓ ରୁଷୀୟ ବନ୍ଦୀଙ୍କୁ ଉଦ୍ଧାର କରିଥିଲେ । ବହୁ ଫରାସୀ ସେନା ଛତ୍ରଭଙ୍ଗ ଦେଇ ପଳାଇଗଲେ । ଅନ୍ୟମାନେ ଅସୁସ୍ଥ ହୋଇ ପଡ଼ିଲେ ଓ ରାସ୍ତାରେ ମରିଗଲେ ।

ପାଇର ଶେଷରେ ମୁକ୍ତି ପାଇଲେ ଓ ଅରେଲ ସହରକୁ ଫେରିଆସିଲେ । ସେଠାରେ ମହଣ୍ଣ ସେ ଅସୁସ୍ଥ ହୋଇ ପଡ଼ିଲେ । ଏଇଠି ସେ ଆପଣା ସ୍ତ୍ରୀ ଇଲେନ ଓ ଆଣ୍ଡ୍ରେଙ୍କର ମୃତ୍ୟୁ ହେବା ଖବର ଶୁଣିବାକୁ ପାଇଲେ । ଅଳ୍ପ କେତେଦିନ ଜର ଭୋଗିଲା ପରେ ସେଣ୍ଟ୍ ପିଟରସ ଦୁର୍ଗରେ ତାଙ୍କ ସ୍ତ୍ରୀ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । ଏପରି ଦୁଃସମ୍ବାଦ ସହ ଫରାସୀ ସେନାର ପରାଜୟ ବିଷୟ ଶୁଣି ତାଙ୍କର ଅନୁଭବ ଶକ୍ତି ଏକ ପ୍ରକାର ଗୋଳମାଳିଆ ହୋଇଗଲା । କ୍ରମେ ସେ ସମ୍ପୂର୍ଣ୍ଣ ଭଲ ହୋଇଗଲେ । ଏହାପରେ ସେ ଆପଣା ଆତ୍ମାର ମୁକ୍ତିକୁ ଆସ୍ୱାଦନ କରି-ପାରିଲେ । ଯଥାର୍ଥତଃ ସେ ତାର ଆତ୍ମୋପଲବ୍ଧି କରିପାରିଛନ୍ତି ।

ବୁଝିପାରିଛନ୍ତି ଜୀବନର ଉଦ୍ଦେଶ୍ୟ । ସେ ହୋଇଛନ୍ତି ବିନମ୍ର । କୃତଜ୍ଞତାରେ ତାଙ୍କର ଅନ୍ତର ପୂରିଯାଇଛି । ଈଶ୍ୱରଙ୍କ ସତ୍ତା ସେ କେବେ ଅନୁଭବ କରି ନ ଥିଲେ । ମାତ୍ର ଏହାପରେ ତାହାଙ୍କ ହୃଦୟ ଗଭୀର ଈଶ୍ୱର ବିଶ୍ୱାସରେ ପୂରି ଉଠିଛି ।

ପାଇରି ମସ୍କୋକୁ ଫେରି ଆସୁଛନ୍ତି । ମାରିୟା ଓ ରୋଷ୍ଟୋଭ ପରିବାର ଲୋକଙ୍କ ସହ ତାଙ୍କର ବନ୍ଧୁତ୍ୱ ସ୍ଥାପିତ ହୋଇଛି । ନାତାସାକୁ ଦେଖି ସେ ମୁଗ୍ଧ ହୋଇ ଯାଇଛନ୍ତି । ହଠାତ୍ ତାର ଧାରଣା ହୋଇଛି ନାତାସା ଆଉ ପିଲା ନୁହେଁ । ପୂର୍ବପରି ସେ ତାକୁ ପୁଣି ଭଲ ପାଇଲେ । ଯଥା ସମୟରେ ସେ ତାର ବାପାଙ୍କ ନିକଟରେ ତାକୁ ବିବାହ କରିବାକୁ ଇଚ୍ଛା କରୁଛନ୍ତି ବୋଲି ଜଣାଇଛନ୍ତି । ନିକୋଲେ ରୋଷ୍ଟଭ ମଧ୍ୟ ମାରିୟାକୁ ବିବାହ କରିବାକୁ ଇଚ୍ଛା କରୁଥା'ନ୍ତି । ନାତାସା ଓ ପାଇରିଙ୍କ ବିବାହ ହୋଇଗଲା । ଦୁହେଁ ଆନନ୍ଦରେ ରହିଲେ । ନାତାସା ହୋଇପାରିଥିଲା ସୁଗୃହିଣୀ—ସ୍ୱାମୀ ଥିଲେ ତାର ବଶମ୍ବଦ । ନାତାସା ସବୁ ଦାୟିତ୍ୱ ଭଲଭାବେ ବହନ କରିପାରୁଥିବାରୁ ଏପରିକି ଜମିଦାରୀ ବିଷୟ ବୁଝିଶୁଝି କରୁଥିବାରୁ ପାଇରି ତାକୁ ଖୁବ୍ ସମ୍ମାନଜନକ ଦୃଷ୍ଟିରେ ଦେଖୁଥିଲେ ।

ନିକୋଲେ ଭାବୁଥିଲେ ମାରିୟାକୁ ବିବାହ କରିବା ତାଙ୍କ ପକ୍ଷେ ବୁଦ୍ଧିମାନର କାର୍ଯ୍ୟ । ରୋଷ୍ଟଭ ପରିବାର ଏବେ ଗରିବ ହୋଇ ଯାଇ-ଥାନ୍ତି । ବୁଢ଼ା କାଉଣ୍ଟଙ୍କ ଯୋଗୁ ଜମିଦାରୀର ଅବସ୍ଥା ସମ୍ପୂର୍ଣ୍ଣ ଶୋଚନୀୟ ହୋଇପଡ଼ିଥାଏ । ମାଆଙ୍କ ନିର୍ଦ୍ଦେଶରେ ନିକୋଲେ ମାରିୟାକୁ ବିବାହ କରିବାକୁ ପ୍ରସ୍ତାବ କଲେ । ଦୁହିଁଙ୍କର ବିବାହ ହୋଇଗଲା ଓ ଦୁଇ ପରିବାର ମଧ୍ୟରେ ବନ୍ଧୁତ୍ୱ ପ୍ରତିଷ୍ଠିତ ହୋଇଥିଲା । ଏଇ ବିବାହ ମଧ୍ୟ ହୋଇଥିଲା ସୁଖପ୍ରଦ । ଆନ୍ଦ୍ରେଙ୍କ ପୁଅକୁ ସେମାନେ ପୋଷ୍ୟପୁତ୍ର ଭାବେ ଗ୍ରହଣ କରିଛନ୍ତି ।

ବୈବାହିକ ଜୀବନର ଆଠବର୍ଷ ପରେ ପାଇରି ଓ ନାତାସାଙ୍କ କେତୋଟି ସୁନ୍ଦର ସନ୍ତାନ ଜାତ ହୋଇଛନ୍ତି । ଏଇ ପିଲାମାନଙ୍କ ଯୋଗୁ ସେମାନେ ଗର୍ବବୋଧ କରନ୍ତି । ନାତାସା ତାର ସନ୍ତାନ ଓ ସ୍ୱାମୀଙ୍କୁ ନେଇ ବେଶ୍ ନିଶ୍ଚିନ୍ତରେ ଥାଏ । ନାତାସା ଓ ପାଇରିଙ୍କ ସମସ୍ତ ସ୍ୱପ୍ନ ଯେପରି ଚରିତାର୍ଥ ହୋଇଯାଇଥିଲା ।

●

# ମହାକବି ଭର୍ଜିଲ

ଜାନକୀ ବଲ୍ଲଭ ମହାନ୍ତ (ଭରଦ୍ୱାଜ)

ଇଟାଲୀୟ ବା ରୋମାନ୍ କବି ଭାବରେ ଭର୍ଜିଲ ସର୍ବଶ୍ରେଷ୍ଠ ବିବେଚିତ ହୁଅନ୍ତି । ବିଶ୍ୱସାହିତ୍ୟର ମଧ୍ୟ ଅନ୍ୟତମ ମହାକବି ଭାବେ ସେ ସ୍ୱୀକୃତ । ତାହାଙ୍କର ସମ୍ପୂର୍ଣ୍ଣ ନାମ ହେଉଛି ପୁବ୍ଲିଅସ ଭର୍ଜିଲିଅସ ମାରୋ । ଖ୍ରୀ: ପୂ: ୭୦ରେ ଇଟାଲୀର ଉତ୍ତରାଞ୍ଚଳରେ ମନଟୁଆ ନାମକ ଏକ ସହରର ଉପକଣ୍ଠରେ ଏକ ସମ୍ଭ୍ରାନ୍ତ ପରିବାରରେ ସେ ଜନ୍ମ ଗ୍ରହଣ କରିଥିଲେ । କ୍ରିମୋନା, ମିଲାନ ଓ ରୋମର କେତେକ ଶିକ୍ଷାନୁଷ୍ଠାନରେ ତାଙ୍କର ଛାତ୍ର ଜୀବନ ଅତିବାହିତ ହୋଇଥିଲା । ମାତ୍ର ଆପଣାର ଦୁର୍ବଳ ସ୍ୱାସ୍ଥ୍ୟ, ଅଳସ ଓ ଭାବପ୍ରବଣ ପ୍ରକୃତି ଏବଂ ବିଚିତ୍ର ଗାଉଁଲି ଆଚରଣ ଯୋଗୁଁ ଉଚ୍ଚଶିକ୍ଷା ସତ୍ତ୍ୱେ ସେ କୌଣସି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ପାଇଁ ଯୋଗ୍ୟ ବିବେଚିତ ହୋଇ ପାରି ନ ଥିଲେ । ଏଣୁ ବିଦ୍ୟାଳୟ ଶିକ୍ଷା ଶେଷ ହେବା ପରେ ସେ ଆପଣାର ପୈତୃକ ବାସଗୃହକୁ ଫେରିଗଲେ । ଗ୍ରାମର ଶସ୍ୟ ସବୁଜ ପରିବେଶରେ ସେ କବିତା ରଚନାରେ ହିଁ ମନୋନିବେଶ କରିଥିଲେ । ଏହି ସମୟରେ ଇଟାଲୀୟ ଅନ୍ତର୍ଯୁଦ୍ଧ ଆରମ୍ଭ ହୋଇଗଲା । ଫିଲିପ୍ ଯୁଦ୍ଧ ( ଖ୍ରୀ ପୂ ୪୨ ) ଶେଷ ହୋଇଯିବା ପରେ ତାହାଙ୍କ ସମସ୍ତ ଭୂସମ୍ପତ୍ତି ସମେତ ଇଟାଲୀର ଉତ୍ତରାଞ୍ଚଳର ଏକ ବିସ୍ତୀର୍ଣ୍ଣ ଭୂଖଣ୍ଡ ସରକାରଙ୍କ ଖାସଅଧିକାରଭୁକ୍ତ ହୋଇଗଲା । ସର୍ବସ୍ୱ ହରାଇବା-ପରେ ଭର୍ଜିଲଙ୍କ ଅବସ୍ଥା କଣ ହୋଇଥିଲା ତାହାର ବିଶଦ ବିବରଣୀ ଜଣା ଯାଇନାହିଁ ।

ଖ୍ରୀ: ପୂ: ୪୨ରୁ ଖ୍ରୀ: ପୂ: ୩୭ ମଧ୍ୟରେ ଭର୍ଜିଲ ଦଶଗୋଟି ଗ୍ରାମ୍ୟ ଗୀତି (Pastoral poem) ସମ୍ବଳିତ ଏକ କାବ୍ୟ ରଚନା କରିଥିଲେ । ଏହି ଧରଣର କାବ୍ୟକୁ ଏକଲୋଗ୍ ବା ବିକୋଲିକ କୁହାଯାଏ । ସିସିଲି

ଦେଶୀୟ କବି ଥିଓକ୍ରିଟସଙ୍କ ଗ୍ରୀକ୍ ଭାଷାରେ ରଚିତ ଇଡ଼ିଲ (Idyls) କବିତା ଅନୁସରଣରେ ଏହା ରଚିତ ହୋଇଥିଲା । ଏହି ଧରଣର କବିତାରେ ପର୍ବତ, ଝରଣା ଓ ଉପବନର ସ୍ନିଗ୍ଧ ପରିବେଶରେ ଅତିବାହିତ ଗ୍ରାମ୍ୟ ମେଷପାଳକର ଆଦର୍ଶ ଜୀବନ କାହାଣୀ ବର୍ଣ୍ଣିତ ହୋଇଥାଏ । ଏହି ଦୃଷ୍ଟିରୁ ଭର୍ଜିଲଙ୍କ ଇକ୍‌ଲୋଗ୍ ଏକ ଅପୂର୍ବ ସୌନ୍ଦର୍ଯ୍ୟ-ସମ୍ପନ୍ନ କାବ୍ୟ । ମାତ୍ର ଏଥିରେ ବର୍ଣ୍ଣିତ ସୌନ୍ଦର୍ଯ୍ୟ ବହୁ ପରିମାଣରେ ବାସ୍ତବ ସୌନ୍ଦର୍ଯ୍ୟଠାରୁ ଭିନ୍ନ । କୌଣସି ମେଷପାଳକ ଭର୍ଜିଲଙ୍କ ରଚନା ପରି ଗୀତ ଗାଏ ନାହିଁ କିମ୍ବା କୌଣସି ଦେଶର ଗ୍ରାମ୍ୟ ଦୃଶ୍ୟ ତାହାଙ୍କ ବର୍ଣ୍ଣନାର ଅନୁରୂପ ନୁହେଁ । ଏହାସତ୍ତ୍ୱେ ଏହି କବିତାଗୁଡ଼ିକରେ ପ୍ରକୃତି ପ୍ରତି ଗଭୀର ଅନୁରାଗ, ମାନବସମାଜ ପ୍ରତି ସୁଗଭୀର ସମବେଦନାର ଅଭିବ୍ୟକ୍ତି ଦେଖିବାକୁ ମିଳେ । ଏହି ରଚନାମାନଙ୍କ ମଧ୍ୟରୁ କେତେକ ଗୀତ ଜଣେ ଜଣେ ମେଷପାଳକର ବ୍ୟକ୍ତିଗତ ଉକ୍ତିଭାବରେ ଓ କେତେକ ଗୀତ ଆକସ୍ମିକ ଭାବେ ଦେଖା କୌଣସି ମେଷପାଳକ ସହ ସଂଳାପମୂଳକ ଭାବରେ ଲିଖିତ ହୋଇଅଛି । କେତେକ ଗୀତରେ ପୁରସ୍କାର ଆଶାରେ ବନ୍ଧୁତ୍ୱପୂର୍ଣ୍ଣ ପ୍ରତିଯୋଗିତାମୂଳକ ବିଷୟ ମଧ୍ୟ ବର୍ଣ୍ଣିତ । ପାରଂପରିକ ଭାବରେ ଏହି ଗୀତଗୁଡ଼ିକରେ ପ୍ରଣୟାନୁଭୂତି, କବରଦେବାବେଳେ ମୃତ ବ୍ୟକ୍ତି ପାଇଁ କ୍ରନ୍ଦନ, ଗ୍ରାମ୍ୟବ୍ୟକ୍ତିମାନଙ୍କ ପରିହାସପୂର୍ଣ୍ଣ ଛନ୍ଦୋକ୍ତିକୁ ରୂପ ଦିଆଯାଇଥିଲେହେଁ କବି କେତେକ ସଙ୍ଗୀତରେ ସମକାଳୀନ ଘଟଣା ଓ ତାହାଙ୍କ ବ୍ୟକ୍ତିଗତ ଅନୁଭୂତିକୁ ମଧ୍ୟ ରୂପ ଦେଇଅଛନ୍ତି । ଉଦାହରଣ ସ୍ୱରୂପ, ଭର୍ଜିଲଙ୍କ ପ୍ରଥମ ଓ ନବମ ଇକ୍‌ଲୋଗରେ ମନଚୁଆ ନିକଟବର୍ତ୍ତୀ ଭୂମି ବାଜ୍ୟାପ୍ତ ହେବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଟିଟାଇରସ ଓ ମେନାଲକସ ନାମକ ଦୁଇଜଣ କାଳ୍ପନିକ ବ୍ୟକ୍ତିଙ୍କ ମାଧ୍ୟମରେ କବି ଆପଣା ବିଷୟକୁ ହିଁ ଏଥିରେ ବର୍ଣ୍ଣନା କରିଅଛନ୍ତି ।

ଚତୁର୍ଥ ଇକ୍‌ଲୋଗଟି ଭର୍ଜିଲଙ୍କ ପୂର୍ବତନ ପୃଷ୍ଠପୋଷକ ପୋଲିଓ ନାମକ ଜନୈକ ବ୍ୟକ୍ତିଙ୍କୁ ସମ୍ବୋଧନ ଛଳରେ ରଚିତ ହୋଇଅଛି । ଏହାକୁ ବିଶ୍ୱସାହିତ୍ୟର ଏକ ସୁବିଖ୍ୟାତ କବିତା ଭାବେ ଗ୍ରହଣ କରାଯାଇ-ଥାଏ । ଏକ ଶିଶୁର ଜନ୍ମୋତ୍ସବକୁ ଉପଜୀବ୍ୟକରି ଏହା ରଚିତ । ଏହି ଶିଶୁଟିର ଜୀବନ କାଳରେ ଜଗତରେ ଶାନ୍ତି ଓ ସରଳତାର ସ୍ୱର୍ଣ୍ଣଯୁଗ

ପୁନଶ୍ଚ ପ୍ରତିଷ୍ଠିତ ହେବ ଓ ଜଗତ ହେବ ଆନନ୍ଦ ଉତ୍ଫୁଲ୍ଲ । ଏହା ହିଁ ଏଥିରେ ଅତ୍ୟନ୍ତ ଚମତ୍କାରଭାବେ ବର୍ଣ୍ଣିତ ହୋଇଅଛି । କେଉଁ ଶିଶୁକୁ ଲକ୍ଷ୍ୟକରି ଭର୍ଜିଲ ଏହି କବିତାଟି ରଚନା କରିଥିଲେ; ତାହା ନିର୍ଦ୍ଧାରଣ କରିବା ସମ୍ଭବ ନୁହେଁ । ଯୀଶୁଖ୍ରୀଷ୍ଟଙ୍କ ଆବିର୍ଭାବକୁ ହିଁ କବି ଏଥିରେ ସୂଚାଇ ଅଛନ୍ତି ବୋଲି ଶହ ଶହ ବର୍ଷ ଧରି ଏହା ଗୃହୀତ ହୋଇ ଆସୁଅଛି ।

କେତେକ ଆଲୋଚକ ଇକ୍‌ଲୋଗ୍‌ରେ ବର୍ଣ୍ଣିତ କେତେକ ଉକ୍ତିକୁ ଭିତ୍ତିକରି ନିର୍ଦ୍ଧାରଣ କରନ୍ତି ଯେ, ଭର୍ଜିଲଙ୍କ ଆବେଦନ ଫଳରେ ଇଟାଲୀର ସମ୍ରାଟ ଅଗଷ୍ଟସ୍ କବିଙ୍କୁ ତାହାଙ୍କ ଭୂସମ୍ପତ୍ତି ଫେରାଇ ଦେଇଥିଲେ ଓ କବି ତାହାଙ୍କ କୃଷିକ୍ଷେତ୍ରକୁ ଫେରିଯାଇଥିଲେ । ଏହା କେତେଦୂର ସତ୍ୟ ତାହା କହିବା ସମ୍ଭବ ନୁହେଁ, ମାତ୍ର ଏକଥା ସତ୍ୟ ଯେ ଇକ୍‌ଲୋଗ ପ୍ରକାଶିତ ହେବା ପୂର୍ବରୁ ଭର୍ଜିଲ କବି ଭାବରେ ସମ୍ରାଟଙ୍କ ପ୍ରଧାନମନ୍ତ୍ରୀ ମେସିନାସଙ୍କ ପ୍ରୀତିଭାଜନ ହୋଇପାରିଥିଲେ ଓ ଜନ-ସମାଜରେ ଖ୍ୟାତିଲାଭ କରି ପାରିଥିଲେ । ଇଟାଲୀର ଦକ୍ଷିଣାଞ୍ଚଳରେ ତାଙ୍କୁ ଏକ ଜମିଦାରୀ ମଧ୍ୟ ପ୍ରଦତ୍ତ ହୋଇଥିଲା । ଏହା ଫଳରେ ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହୋଇପାରିଥିଲା । ତାଙ୍କ ପରି ଆତ୍ମବିଶ୍ୱାସ-ଶିଥିଳ ବ୍ୟକ୍ତିଙ୍କୁ ଲେଖାଲେଖି କରିବାକୁ ଅନେକେ ମଧ୍ୟ ଉତ୍ସାହିତ କରିଥିଲେ ।

ଅନ୍ତର୍ଯୁଦ୍ଧ ପରେ ଇଟାଲୀର କୃଷି ବ୍ୟବସ୍ଥା ଶୋଚନୀୟ ହୋଇ ଯାଇଥିଲା, କୃଷିକ୍ଷେତ୍ର ହୋଇପଡ଼ିଥିଲା ବିଧ୍ୱସ୍ତ ଓ ପରିତ୍ୟକ୍ତ । ଏଣୁ ସମ୍ରାଟ ଅଗଷ୍ଟସ୍ ତାହାର ପୁନରୁଦ୍ଧାର କରିବା ଲାଗି ପ୍ରଯତ୍ନଶୀଳ ହୋଇଥିଲେ । ତାହାଙ୍କ ମୁଖ୍ୟମନ୍ତ୍ରୀ ମସିନାସ ସମ୍ରାଟଙ୍କ କୃଷି ବିକାଶ ନୀତି ସପକ୍ଷରେ ଏକ କାବ୍ୟ ଲେଖିବା ଲାଗି ଭର୍ଜିଲଙ୍କୁ ଅନୁରୋଧ ତଥା ଉତ୍ସାହିତ କରିଥିଲେ । ଏହାର ପରିଣାମ ହେଉଛି ଭର୍ଜିଲଙ୍କ ରଚିତ 'ଜର୍ଜିକ୍‌ସ' ବା କୃଷି ସମ୍ପର୍କୀୟ କାବ୍ୟ । ମାତ୍ର ଏହି କାବ୍ୟଟି କୃଷିକାର୍ଯ୍ୟ ଲାଗି ଏକ ସହାୟକ ଗ୍ରନ୍ଥ ଅଥବା ଏକ ଉପଦେଶାତ୍ମକ ରଚନା ନୁହେଁ । ବରଂ ଏହା ଅଧିକ ପରିମାଣରେ ସ୍ୱଦେଶପ୍ରୀତି ଓ ଦାର୍ଶନିକ ଭାବନାରେ ପରିପୂର୍ଣ୍ଣ । ଏଥିରେ କବି ବିଶ୍ୱ ଜୀବନଧାରାରେ ମାନବ ଜୀବନର ଆଦର୍ଶ ସହ ଇଟାଲୀର ସୌନ୍ଦର୍ଯ୍ୟ ଓ ରୋମର ମହତ୍ତ୍ୱରୁ ସମନ୍ୱୟ ସମ୍ପାଦନ କରିଅଛନ୍ତି । ଅବଶ୍ୟ ପ୍ରାସଙ୍ଗିକଭାବେ ଏଥିରେ କୃଷକଙ୍କ ପ୍ରତି ଉପଦେଶ ପରୋକ୍ଷ ଭାବେ ହିଁ

ସୂଚିତ ହୋଇଅଛି । ଏହି କବିତାରୁ ଆମେ କୃଷକର ଶସ୍ୟକ୍ଷେତ୍ର, ଫଳ ଉଦ୍ୟାନ, ଅଙ୍ଗୁର ଉଦ୍ୟାନ, ଗୋ ଗୋଷ୍ଠ, ମେଷପଲ ଓ ମହୁମାଛିମାନଙ୍କ ସମ୍ପର୍କରେ ବିଶଦଭାବେ ଅବହିତ ହୋଇଥାଉ । କାବ୍ୟର ଉପାଦେୟତାକୁ କେବଳ ଏତିକରେ ସୀମାବଦ୍ଧ କରାଯାଇ ନପାରେ । ଏଥିରେ ଦେଖିବାକୁ ମିଳେ ଭର୍ଜିଲଙ୍କ ସୁଗଭୀର ଦେଶାତ୍ମବୋଧ, ପ୍ରକୃତି ପ୍ରେମ, ସମସ୍ତ ପ୍ରାଣୀ ଜଗତ ପ୍ରତି ତାଙ୍କର ଅସୀମ ସମବେଦନା, ସହାନୁଭୂତି ଓ ଜୀବନର ରହସ୍ୟସନ୍ଧାନୀ ମନୋଭାବ । ପ୍ରକୃତି ସହ ସଂଗ୍ରାମରେ ଜୟଯୁକ୍ତ ହେବାଲାଗି ମନୁଷ୍ୟଙ୍କୁ ଯେ କର୍ମପ୍ରବଣ ହେବାକୁ ପଡ଼ିବ ଏହା ମଧ୍ୟ ଭର୍ଜିଲ ଏଥିରେ ଦର୍ଶାଇ ଅଛନ୍ତି । ଏହି କାବ୍ୟଟିକୁ ସଂପୂର୍ଣ୍ଣ କରିବା ଲାଗି ଭର୍ଜିଲଙ୍କୁ ସାତବର୍ଷ ଲାଗିଥିଲା । ବହୁ ଆୟାସ ଓ ପ୍ରଯତ୍ନ ସହକାରେ କବି ଏହାକୁ ସଂସ୍କୃତ ଓ ପରିମାର୍ଜିତ କରିଯାଇଅଛନ୍ତି ।

ଜର୍ଜିକସ କାବ୍ୟ ରଚନା କରୁଥିବା ଅବକାଶରେ କବି ରୋମ ଓ ଓ ସମ୍ରାଟ ଅଗଷ୍ଟସ୍‌ଙ୍କ ମହତ୍ତ୍ୱ ଦର୍ଶାଇବା ଅଭିପ୍ରାୟରେ ଏକ ଜାତୀୟ ମହାକାବ୍ୟ ଲେଖିବାର ପରିକଳ୍ପନା କରିଥିଲେ । ଏହା ହିଁ ପରବର୍ତ୍ତୀ କାଳରେ ଏନିଡ଼ (Aeneid) ବା 'ଏନିୟସଙ୍କ କଥା' ନାମରେ ତାହାଙ୍କ ଲେଖନୀରେ ରୂପାୟିତ ହୋଇଥିଲା । ଖ୍ରୀ: ପୂ: ୧୯ ମଧ୍ୟରେ କବି ଏହାକୁ ସମାପ୍ତ କରିଥିଲେ ଓ ଏହାଥିଲା ତାଙ୍କର ଅନ୍ତିମ ରଚନା । ଏହାକୁ ଉତ୍ତମ ରୂପେ ପରିମାର୍ଜିତ ଓ ପରିଶୋଧିତ କରିବା ଥିଲା କବିଙ୍କ ଅଭିଳାଷ ଓ ଏଥିପାଇଁ ପ୍ରାୟ ତିନିବର୍ଷ ଲାଗିବ ବୋଲି ସେ ଅନୁମାନ କରିଥିଲେ । ଏନିଡ଼ରେ ବର୍ଣ୍ଣିତ କେତେକ ଘଟଣା ଗ୍ରୀସ୍ ଓ ଏସିଆ ମାଇନର ସହ ସଂପୃକ୍ତ ଥିବାରୁ କବି ଉକ୍ତ ଦୁଇ ସ୍ଥାନକୁ ଯିବାଲାଗି ମନସ୍ଥ କରିଥିଲେ । ଯୋଗକୁ ଏଥେନସ୍ ସହରରେ ସମ୍ରାଟଙ୍କ ସହ ତାଙ୍କର ସାକ୍ଷାତ ହୋଇଗଲା । ଅଗଷ୍ଟସ୍ କବିଙ୍କୁ ସାଥିରେ ନେଇ ରୋମକୁ ଫେରିଲେ । ଜଳ ପଥରେ ଫେରୁଥିବା ବେଳେ ମେଗରା ନାମକ ସ୍ଥାନରେ ଭର୍ଜିଲ ଅସୁସ୍ଥ ହୋଇପଡ଼ିଲେ । ତାଙ୍କର ଅସୁସ୍ଥତା ବଢ଼ିବାକୁ ଲାଗିଲା । ଇଟାଲୀ ଉପକୂଳରେ ଜାହାଜ ଲାଗିବାର ଅଳ୍ପ କେତେ ଦିନ ପରେ ସେ ମୃତ୍ୟୁବରଣ କରିଥିଲେ । ଖ୍ରୀ: ପୂ: ୧୯ ରେ ତାଙ୍କର ମୃତ୍ୟୁ ହୋଇଥିବା ନିରୂପିତ ହୋଇଅଛି । ନେପଲସ୍ ନିକଟରେ ତାଙ୍କୁ ସମାଧିସ୍ଥ

କରଯାଇଥିଲା । କାଳକ୍ରମେ ଏହି ସମାଧି ଏକ ପୂଜାପୀଠରେ ପରିଣତ ହୋଇଥିଲା । କବିଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜଣାଇବା ଲାଗି ବହୁ ବ୍ୟକ୍ତି ଏଠାକୁ ଆସୁଥିଲେ । ମାତ୍ର ସହସ୍ରାଧିକ ବର୍ଷପରେ ଏହି ସ୍ଥାନଟି ନିର୍ଦ୍ଦିଷ୍ଟ ଭାବେ କେଉଁଠିଥିଲା ତାହା ଏପର୍ଯ୍ୟନ୍ତ ନିରୂପିତ ହୋଇ ପାରିନାହିଁ ।

ଏନିଡ୍ କାବ୍ୟଟିକୁ ପରିଶୋଧିତ କରିପାରି ନଥିବାରୁ କବି ମୃତ୍ୟୁ ପୂର୍ବରୁ ଦୁଃଖ ପ୍ରକାଶ କରିଥିଲେ ଓ ଏହାକୁ ପୋଡ଼ି ନଷ୍ଟ କରିଦେବାକୁ ଇଚ୍ଛା କରିଥିଲେ । ମାତ୍ର ଅଗଷ୍ଟସ୍ ଏଥିପାଇଁ ଅନୁମତି ଦେଇ ନଥିଲେ । କବିଙ୍କ ମୃତ୍ୟୁର ଦୁଇବର୍ଷ ପରେ ସାମାନ୍ୟ ସଂଶୋଧନ ସହ ଏହା ମୁଦ୍ରିତ ହୋଇଥିଲା ।

ଇକଲଗସ୍ ପ୍ରକାଶିତ ହେବା ପରେ କବିଭାବେ ତାହାଙ୍କର ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପି ଯାଇଥିଲା । ସମ୍ରାଟଙ୍କ ଦରବାର ବ୍ୟତୀତ ସେ ଯୁଗର ବହୁ ଜ୍ଞାନୀ, ଗୁଣୀ ବ୍ୟକ୍ତିଙ୍କଠାରୁ କବି ଏହି କାବ୍ୟପାଇଁ ଉଚ୍ଛ୍ୱସିତ ପ୍ରଶଂସା ଲାଭ କରିଥିଲେ । ପୃଷ୍ଠପୋଷକମାନଙ୍କ ବଦାନ୍ୟତା ଫଳରେ ସେ ସ୍ୱଚ୍ଛଳ ଭାବରେ କାଳଯାପନ କରିଥିବା ଜଣାଯାଏ । କବିଙ୍କ ରଚନାବଳୀ ତାହାଙ୍କ ପରବର୍ତ୍ତୀ ରୋମୀୟ ଲେଖକମାନଙ୍କୁ ଯେ ବିପୁଳ ପରିମାଣରେ ପ୍ରଭାବିତ କରିଥିଲା ଏହା କହିବା ଅନାବଶ୍ୟକ । ମଧ୍ୟ ଯୁଗରେ ତାହାଙ୍କ ରଚନା ବିପୁଳ ଜନପ୍ରିୟତା ଲାଭକରିଥିଲା । ଲାଟିନ ହେକ୍ସାମିଟର ଛନ୍ଦରେହିଁ ସେ ତାହାଙ୍କ କାବ୍ୟଗୁଡ଼ିକ ରଚନା କରିଅଛନ୍ତି । ଏହି ଛନ୍ଦର ସାର୍ଥକ ପ୍ରୟୋଗକାରୀଭାବେ ସେ ସ୍ୱନାମଧନ୍ୟ । ତାହାଙ୍କ ରଚନା ମାଧ୍ୟମରେ 'ପ୍ୟାଷ୍ଟୋରାଲ' ବା ପଲ୍ଲୀ କବିତା ସର୍ବୋତ୍କୃଷ୍ଟ ରୂପଲାବଣ୍ୟସମ୍ପନ୍ନ ହେବା ସଙ୍ଗେ ସଙ୍ଗେ ଉଚ୍ଚକୋଟୀକୁ ଉନ୍ନୀତ ହୋଇପାରିଥିଲା । ଜର୍ଜିକସ୍ କାବ୍ୟଟି ତାଙ୍କର ଏକ ମୌଳିକ କଳ୍ପନା ପ୍ରସୂତ କାବ୍ୟ ଭାବେ ସ୍ୱୀକୃତ ।

ଏନିଡ୍ କାବ୍ୟରେ ଇଟାଲୀର ଜାତୀୟ ଆଶାଆକାଙ୍କ୍ଷା କେବଳ ରୂପାୟିତ ହୋଇନାହିଁ । ମାନବ ଜୀବନର ବ୍ୟଥା ବେଦନାର ବହୁ ରହସ୍ୟ ମଧ୍ୟ ଏଥିରେ ଅପୂର୍ବ ଭାବରେ ଉଦ୍‌ଘାଟିତ ହୋଇଅଛି । ଇକଲଗ୍,

ଜର୍ଜିକସ୍ ଓ ଏନଡ଼ ବ୍ୟତୀତ ବହୁ କ୍ଷୁଦ୍ର କାବ୍ୟର ରଚୟିତା ରୂପେ କବି ପରମ୍ପରାକ୍ରମେ ଗୃହୀତ ହୋଇ ଆସୁଅଛନ୍ତି ।' ଏନଡ଼ ମହାକାବ୍ୟର କଥାବସ୍ତୁ ସଂକ୍ଷେପରେ ଏହିପରି—

ଟ୍ରୟର ଜନୈକ ରାଜକୁମାର ହେଉଛନ୍ତି ଏନିଅସ (Aeneas) । ଭବିଷ୍ୟତରେ ସେ ରାଜା ହେବେ, ଏହା ହିଁ ତାଙ୍କର ଭାଗ୍ୟଲିପି ବୋଲି ଗଣକମାନେ କହିଥିଲେ । ଟ୍ରୟଯୁଦ୍ଧରେ ସେ ସାହସର ସହିତ ଯୁଦ୍ଧ କରିଥିଲେ । ଟ୍ରୟ ନଗରୀର ପତନ ପରେ ତାଙ୍କ ସ୍ତ୍ରୀ କ୍ରିଉସାଙ୍କର ମୃତ୍ୟୁ ହେଲା । କୌଣସିମତେ ସେ ତାଙ୍କର ବୃଦ୍ଧ ପିତା ଅଙ୍କିଶେଷ ଓ ପୁତ୍ର ୟୁଲସ୍‌ଙ୍କୁ ଏକ ନିରାପଦ ସ୍ଥାନ ଟ୍ରୟ ନିକଟବର୍ତ୍ତୀ ଏକ ପାହାଡ଼ ନିକଟକୁ ନେଇ ଆସିପାରିଥିଲେ । ଟ୍ରୟର ବହୁ ବ୍ୟକ୍ତି ଏଠାକୁ ଆସି ତାଙ୍କ ସହ ଯୋଗଦେଲେ । ସେମାନଙ୍କ ସହାୟତାରେ ସେ କୋଡ଼ିଏ ରଣତରୀ ନିର୍ମାଣ କରାଇଲେ । ଆଗାମୀ ଗ୍ରୀଷ୍ମ ଋତୁରେ ଦଳବଳ ସହ ସେ ଏକ ନୂତନ ବାସସ୍ଥଳୀ ସନ୍ଧାନରେ ବହିର୍ଗତ ହେବେ ବୋଲି ମନସ୍ଥ କରିଥିଲେ । ସେଠାରୁ ସମୁଦ୍ର ଅତିକ୍ରମ କରି ଇଟାଲୀ ଯିବା ସ୍ଥିର ହେଲା । ଯଥାସମୟରେ ସେମାନଙ୍କ ନୌଯାତ୍ରା ଆରମ୍ଭ ହେଲା । ଦୀର୍ଘପଥବ୍ୟାପୀ ଏହି ଯାତ୍ରାଥିଲା ଅତୀବ ବିପଦସଙ୍କୁଳ । ଟ୍ରୟବାସୀଗଣ ଦୀର୍ଘ ସାତ ବର୍ଷ ଗୋଟିଏ ଦ୍ୱୀପରୁ ଆଉ ଗୋଟିଏ ଦ୍ୱୀପ ଓ ବହୁ ବିପଦ ଅତିକ୍ରମକରି ଆଗେଇ ଚାଲିଲେ । ସିସିଲିରେ ପହଞ୍ଚିବା ପରେ ପିତା ଆଙ୍କିଶେଷଙ୍କର ମୃତ୍ୟୁ ହେଲା । ଏହି ଦୁଃଖରେ ନୌଯାତ୍ରୀ ଦଳ ସାମୟିକ ଭାଙ୍ଗି ପଡ଼ିଲେ । ମାତ୍ର ସେମାନଙ୍କ ଯାତ୍ରା ଶେଷ ହୋଇ ଆସୁଛି ଓ ଇଟାଲୀ ରାଜ୍ୟ ନିକଟବର୍ତ୍ତୀ-ଏହି ଆଶାରେ ସେମାନଙ୍କ ଡଙ୍ଗା ସମୁଦ୍ରରେ ଆଗେଇ ଚାଲିଲା ।

ଏହି ଅଭିଯାତ୍ରୀଦଳ ଉପରେ ଦେବୀ ଯୁନୋ ଥିଲେ ଅସନ୍ତୁଷ୍ଟ । ତାହାଙ୍କ କ୍ରୋଧଯୋଗୁ ବାତ୍ୟାର ପ୍ରାଦୁର୍ଭାବ ସୃଷ୍ଟି ହୋଇଗଲା । ସେମାନଙ୍କ ଡଙ୍ଗା ସବୁ ଆଫ୍ରିକା ଉପକୂଳର କାର୍ଥେଜ ସହର ନିକଟରେ ଆଘାତ ପାଇ ଧ୍ୱଂସ ହୋଇଗଲା । ଅଭିଯାତ୍ରୀଗଣ କୌଣସିମତେ ବଂଚିଗଲେ ଓ ବାଧ୍ୟ ହୋଇ ସ୍ଥଳଭାଗରେ ଆଶ୍ରୟ ନେଲେ । ସେମାନେ ଯେଉଁ ରାଜ୍ୟରେ ଓହ୍ଲାଇଥିଲେ ତାହା ଥିଲା, ରାଣୀ ଡିଡୋଙ୍କ ରାଜ୍ୟ ।

ପରବର୍ତ୍ତୀ କାଳରେ ରୋମ୍‌ର ମହାନ ପ୍ରତିଦ୍ୱନ୍ଦ୍ୱୀ କାର୍ଥେଜ୍ ନଗରୀର ସେ ଥିଲେ ପ୍ରତିଷ୍ଠାତ୍ରୀ । ଡ଼ିଡ଼ୋ ତାଙ୍କ ରାଜ୍ୟରେ ଆଶ୍ରୟ ନେଇଥିବା ଟ୍ରୟ୍‌-ବାସୀଙ୍କୁ ଏକ ଭୋଜିକୁ ନିମନ୍ତ୍ରଣ କରିଥିଲେ ଓ ସେମାନଙ୍କୁ ଆବଶ୍ୟକ ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଏନିଅସଙ୍କୁ ଦେଖି ସେ ଅତ୍ୟନ୍ତ ମୁଗ୍‌ଧ ହୋଇଗଲେ । ତାହାଙ୍କ ସମ୍ପର୍କରେ ଆସିବା ପରେ ତାଙ୍କ ପ୍ରତି ଏକ ଦୁର୍ଦ୍ଦମନୀୟ ଆକର୍ଷଣ ଡ଼ିଡ଼ୋଙ୍କ ମନରେ ଜାତ ହେଲା । କ୍ରମେ ରାଜକୀୟ କାର୍ଯ୍ୟରେ ସେ ଅବହେଳା କରିବାକୁ ଲାଗିଲେ ଓ ରାଣୀ ଭାବରେ ମାନସମ୍ମାନକୁ ଭୁଲିଗଲେ । କେତେ ଦିନ ପରେ କାର୍ଥେଜରୁ ଟ୍ରୟ୍‌ବାସୀଙ୍କର ବିଦାୟ ନେବା ସ୍ଥିର ହେଲା । ଏନିଅସ୍‌ଙ୍କଠାରୁ ବିଦାୟର ବେଳ ନିକଟ ହୋଇଆସିଲା । ରାଣୀ ଡ଼ିଡ଼ୋ ପ୍ରଚଣ୍ଡ ଆବେଗର ବଶବର୍ତ୍ତୀ ହୋଇ କ୍ରନ୍ଦନ କରିବାକୁ ଲାଗିଲେ ଓ ଅବଶେଷରେ ଆତ୍ମଘାତୀ ହୋଇ ମୃତ୍ୟୁବରଣ କଲେ ।

ଟ୍ରୟ୍‌ବାସୀଗଣ ଉତ୍ତରଦିଗକୁ ଗତି କରି ଇଟାଲୀର ପଶ୍ଚିମ ଉପକୂଳ କୁମେ ନିକଟରେ ଅବତରଣ କଲେ । ଏଇଠି ଏକ ପର୍ବତ ଗୁମ୍ଫାରେ ରହୁଥିବା ବୃଦ୍ଧା ସନ୍ନ୍ୟାସିନୀ ସିବିଲଙ୍କୁ ଏନିଅସ ଯାଇ ସାକ୍ଷାତ କରିଥିଲେ । ତାହାଙ୍କ ସହାୟତାରେ ସେ ମୃତ ବ୍ୟକ୍ତିଙ୍କ ରାଜ୍ୟରେ ଯାଇ ଉପସ୍ଥିତ ହେଲେ । ସେଠାରେ ସେ ପୁଣ୍ୟାତ୍ମାମାନଙ୍କ ଗହଣରେ ଆପଣାର ପିତା ଅଙ୍କିଶେସଙ୍କୁ ଦେଖିବାକୁ ସମର୍ଥ ହେଲେ । ଅଙ୍କିଶେସ ଏନିଅସଙ୍କୁ ଟ୍ରୟ୍‌ବାସୀଙ୍କ ଗୌରବର କାହାଣୀ କହିବା ସଙ୍ଗେ ସଙ୍ଗେ ରୋମର ଭବିଷ୍ୟତର ମହାନ୍ ବ୍ୟକ୍ତିଙ୍କ ଆତ୍ମାଙ୍କୁ ଦର୍ଶନ କରାଇ ଦେଇ-ଥିଲେ । ଜନ୍ମ ମୃତ୍ୟୁର ରହସ୍ୟ, ଜୀବନର ଉଦ୍ଦେଶ୍ୟ ଓ ପୁର୍ନଜନ୍ମ ବିଷୟରେ ବହୁ ଦାର୍ଶନିକ ତତ୍ତ୍ୱ ଉପଦେଶ ସେ ତାଙ୍କଠାରୁ ଶୁଣିବାକୁ ପାଇଥିଲେ ।

କୁମେରୁ ବାହାରି ସେମାନେ ଇଟାଲୀ ରାଜ୍ୟର କୂଳେ କୂଳେ ଯାଇ ଟାଇବର ନଦୀର ମୁହାଣ ପାଖେ ଲାଟିଅମ୍‌ଠାରେ ଲଙ୍ଗର ପକାଇଲେ । ସେଇ ଅଞ୍ଚଳର ରାଜାଙ୍କ ନାମ ଲାଟିନସ୍ । ତାଙ୍କର ଗୋଟିଏ ବୋଲି ଝିଅ ଲାଭିନା । ଜଣେ ଚାର ଭବିଷ୍ୟତ ଗଣନା କରି କହିଥିଲେ, ସିଏ ଜଣେ ବିଦେଶୀ ରାଜକୁମାରକୁ ବିବାହ କରିବ ।

ଏନିଅସଙ୍କୁ ଦେଖି ଲାଟିନସ ଭାବିଲେ ଏହି ହେଉଛନ୍ତି ସେହି ବିଦେଶୀ ରାଜକୁମାର । ଏନିଅସଙ୍କ ସହ କନ୍ୟାର ବିବାହ ଲାଗି ସେ ଆୟୋଜନ କରିବାକୁ ଲାଗିଲେ । ମାତ୍ର ଏହି କ୍ଷେତ୍ରରେ ଏକ ବିଘ୍ନ ସୃଷ୍ଟି ହେଲା । ଏହା ପୂର୍ବରୁ ରୁଟୁଲିଆନସ୍‌ର ରାଜା ଟର୍ଣ୍ଣସ୍ ରାଜକୁମାରୀ ଲାଭିନାଙ୍କୁ ବିବାହ କରିବାକୁ ପ୍ରସ୍ତାବ ପଠାଇଥିଲେ । ମାତ୍ର ଲାଟିନ୍‌ସ ତାଙ୍କୁ ସମ୍ମତି ସୂଚକ ପତ୍ର ଦେଇଥିଲେ । ଯାହାହେଉ ଯୁନୋଙ୍କ ପ୍ରରୋଚନାରେ ଟର୍ଣ୍ଣସ୍ ଆପଣାର ସୈନ୍ୟସାମନ୍ତଙ୍କୁ ଆଣି ଏନିଅସଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରିଦେଲେ । ଏନିଅସଙ୍କ ଦଳକୁ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ ଗ୍ରୀକ୍ ଉପନିବେଶକାରୀଙ୍କ ଦଳପତି ଇଭାଣ୍ଡର ।

ଟର୍ଣ୍ଣସ ଓ ଏନିଅସଙ୍କ ମଧ୍ୟରେ ଅନେକ ଦିନ ପର୍ଯ୍ୟନ୍ତ ଭୟଙ୍କର ଯୁଦ୍ଧ ହେଲା । ଅବଶେଷରେ ଏନିଅସଙ୍କ ଦ୍ୱାରା ଟର୍ଣ୍ଣସ ନିହତ ହେଲେ । ଲାଭିନାଙ୍କ ସହ ଏନିଅସଙ୍କ ବିବାହ ଅନୁଷ୍ଠିତ ହେଲା । ଏହାପରେ ଏନିଅସ ଆପଣାର ଅନୁଗାମୀମାନଙ୍କୁ ଇଟାଲିରେ ସ୍ଥାୟୀଭାବେ ବସବାସ କରାଇବାର ସୁବ୍ୟବସ୍ଥା କରିଦେଲେ । ଆପଣାର ପତ୍ନୀଙ୍କ ନାମରେ ସେ ଲାଭିନିୟମ ନାମକ ଏକ ନଗରୀ ପ୍ରତିଷ୍ଠା କଲେ । ଏଠାରେ ତିନିବର୍ଷ ରାଜତ୍ୱ କଲାପରେ ସେ ସଶରୀରରେ ସ୍ୱର୍ଗକୁ ଯାଇଥିଲେ । ତାଙ୍କ ପରେ ୟୁଲୁସ ରାଜା ହେଲେ । ସେ ପ୍ରତିଷ୍ଠା କଲେ ଆଲବାଲଙ୍ଗା ବୋଲି ଏକ ସହର । ଆପଣାର ଲୋକଙ୍କୁ ନେଇ ସେ ସେଠାରେ ରାଜ୍ୟ ଶାସନ କଲେ । ଏଇଠାରେ ତାଙ୍କର ଦୁଇଟି ପୁଅ, ରେମୁଲସ୍ ଓ ରେମସ୍ ଜନ୍ମ ହୋଇଥିଲେ । ଏହି ପୁତ୍ରଦ୍ୱୟ ରୋମ ନଗରୀ ପ୍ରତିଷ୍ଠା କରିଥିଲେ । ଏନିଡ କାବ୍ୟର ଶେଷ ପର୍ଯ୍ୟାୟରେ ଏହି ଘଟଣାକୁ ଗୁରୁତ୍ୱ ଦିଆ-ଯାଇନାହିଁ । ରୋମ ରାଜ୍ୟ ପ୍ରତିଷ୍ଠାର ପ୍ରଧାନ ପ୍ରତିବନ୍ଧକ ଟର୍ଣ୍ଣସଙ୍କ ମୃତ୍ୟୁ ବର୍ଣ୍ଣନା ପରେ ଏହି ମହା କାବ୍ୟଟି ପରିସମାପ୍ତ ହୋଇଅଛି ।

ମହାକାବ୍ୟଟି ହୋମରଙ୍କ ଓଡେସୀ ମହାକାବ୍ୟ ଆଦର୍ଶରେ ଲିଖିତ । ଏଥିରେ ଅତୀତର ଘଟଣା ବର୍ଣ୍ଣନା ଛଳରେ ଟ୍ରୟ ଯୁଦ୍ଧର କାହାଣୀ ଏବଂ ଏନିଅସଙ୍କ ଭ୍ରମଣ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ଡିଡୋଙ୍କ ନିକଟରେ ଏନିଅସ ତାହା ବର୍ଣ୍ଣନା କରିଅଛନ୍ତି । ଏନିଅସଙ୍କ ଚରିତ୍ରରେ କବି ଫୁଟାଇଛନ୍ତି ଅପୂର୍ବ ନିଷ୍ଠା, ଧୈର୍ଯ୍ୟ, ତ୍ୟାଗ ଓ ଦୃଢ଼ମନାସ୍କ

ସାହସର ଜ୍ୱଳନ୍ତ ଦୃଷ୍ଟାନ୍ତ । ଭବିଷ୍ୟତ ରୋମ ସାମ୍ରାଜ୍ୟ ପ୍ରତିଷ୍ଠାର ଗୁରୁ ଦାୟିତ୍ୱ ଯେପରି ତାହାଙ୍କ ସ୍କନ୍ଧରେ ନ୍ୟସ୍ତ ଥିଲା । ଦୈବ ପ୍ରେରିତ ହୋଇ ଓ ଦୈବୀ ଅନୁଗ୍ରହରୁ ସେ ଏହି କର୍ତ୍ତବ୍ୟ ସଫଳତାର ସହ ସମ୍ପାଦନା କରିଥିବା ଏଥିରେ ଚିହ୍ନିତ ହୋଇଅଛି । ତଥାପି ତାହାଙ୍କ ଚରିତ୍ରରେ ମାନବିକ ପ୍ରାଣର ଉଷ୍ମତା ଓ କମନୀୟତାର ଅଭାବ ରହିଛି ବୋଲି ସମାଲୋଚକମାନେ ଦର୍ଶାଇ ଥାଆନ୍ତି । ଡିଡୋଙ୍କ ସହ ତାହାଙ୍କ ସମ୍ପର୍କରୁ ଏହା ପ୍ରମାଣିତ । ଦୈବ ନିର୍ଦ୍ଦେଶରେ ସେ ଡିଡୋଙ୍କୁ ପ୍ରତ୍ୟାଖ୍ୟାନ କରି ଆସିଥିଲେହେଁ ତାହାଙ୍କ ହୃଦୟରେ ଦ୍ୱନ୍ଦ୍ୱ ଦେଖା ଦେଇନାହିଁ । କବି ଡିଡୋଙ୍କୁ ପ୍ରଚୁର ସମବେଦନା, ନାରୀ ସୁଲଭ ଆବେଗପ୍ରବଣତା, କୋମଳତା ଓ ସୌନ୍ଦର୍ଯ୍ୟ ବିମଣ୍ଡିତାରୂପେ ଚିତ୍ରଣ କରିଥିଲେହେଁ ଏନିଅସ ଥିଲେ ଏହାର ବିପରୀତ । ତାହାଙ୍କ ଚରିତ୍ରରେ କୋମଳତା ଅନୁଭୂତି ଓ ସମବେଦନାର ଅଭାବ ଅନୁଭୂତ ହୋଇଥାଏ । ମହାକବି ଡିଡୋଙ୍କୁ କାରୁଣ୍ୟର ଏକ ସାର୍ବଜନୀନ ପ୍ରତିମୂର୍ତ୍ତିରୂପେ ଅପୂର୍ବ ଦକ୍ଷତାର ସହିତ ଚିତ୍ରଣ କରିଅଛନ୍ତି ।

ଜାତୀୟ ଭାବୋଦ୍ଦୀପକ ରଚନା ଭାବରେ ତଥା ନାଟକୀୟ କଳାପାଟବ ଓ ବର୍ଣ୍ଣନାର ଚମତ୍କାରିତା ଦୃଷ୍ଟିରୁ ଏହା ଏକ ଅନୁପମ ଓ ମହାନ୍ ସୃଷ୍ଟି । ୟୁରୋପୀୟ ସାହିତ୍ୟର ଏହା ପ୍ରାଚୀନତମ ସାହିତ୍ୟିକ ମହାପୁରାଣ 'ଏପିକ', ମହାକବି ଦାନ୍ତେଙ୍କ କାବ୍ୟ ପ୍ରେରଣାର ଉତ୍ସ ଓ ଲାଟିନ ଭାଷାରେ ରଚିତ ସର୍ବାଧିକ ପ୍ରଭାବସମ୍ପନ୍ନ ଗ୍ରନ୍ଥଭାବେ ଗୌରବାନ୍ୱିତ ।